# ଶିକ୍ଷା ବିଚାର

ଭାସିଲି ସୁଖୋମ୍ଲିନ୍ସ୍କି



ଅନୁବାଦ

ଅନୀଲ ପ୍ରଧାନ • ପ୍ରଫୁଲ୍ଲ ବେହେରା




ଭୁବନେଶ୍ୱର

ମୂଳ ଇଂରାଜୀ ସଂସ୍କରଣରୁ ଅନୁବାଦ କରିଛନ୍ତି ଅନୀଲ ପ୍ରଧାନ ଏବଂ ପ୍ରଫୁଲ୍ଲ ବେହେରା

## ଅନୀଲ ପ୍ରଧାନ

ଜନ୍ମ, ଜୁଲାଇ ୯, ୧୯୬୯, ଅନୁଗୋଳ ଜିଲ୍ଲାର କିଶୋରନଗର ବ୍ଲକ୍‌ର ରାଇବାହାଳ ଗ୍ରାମରେ । ଶିକ୍ଷା- ଅଙ୍ଗପଡ଼ା ହାଇସ୍କୁଲ, ଜି.ଏମ୍.କଲେଜ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏ. । ଶିକ୍ଷାପ୍ରାପ୍ତି ପରେ ସମାଜସେବା ପ୍ରତି ଆକୃଷ୍ଟ ହୋଇ ରାୟଗଡ଼ା ଜିଲ୍ଲାର ଅଗ୍ରଗାମୀ, ଜାଣାପୁଜ ରେ ପାଞ୍ଚବର୍ଷ ଧରି କାର୍ଯ୍ୟ କରିଥିଲେ । ୧୯୯୫ମସୀହାରୁ ଭୁବନେଶ୍ୱର ସ୍ଥିତ ଶିକ୍ଷାସନ୍ଧାନରେ ଅବସ୍ଥାପିତ ଓ ଏହି ଅନୁଷ୍ଠାନର ସଦସ୍ୟ-ସମ୍ପାଦକ ଦାୟିତ୍ୱ ତୁଲାଇ ଆସୁଛନ୍ତି । ବିଭିନ୍ନ ଦୈନିକ ଖବରକାଗଜରେ ଶିକ୍ଷା, ବିକାଶ, ଅର୍ଥନୀତି ଓ ସମାଜ ପରିବର୍ତ୍ତନ ସମ୍ବନ୍ଧୀୟ ଲେଖା ପ୍ରକାଶନ ପାଇ ଆସୁଅଛି । ଅନୁବାଦ ସାହିତ୍ୟ କ୍ଷେତ୍ରରେ ସେ ଅଧୁନା କାର୍ଯ୍ୟରତ ।

## ପ୍ରଫୁଲ୍ଲ ବେହେରା

ଜନ୍ମ ୧୫ ମାର୍ଚ୍ଚ ୧୯୫୧ ମସିହା ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର ତାଳଚେର ସହରରେ । ସଂପ୍ରତି ଭୁବନେଶ୍ୱରର ଶିକ୍ଷାସନ୍ଧାନରେ କାର୍ଯ୍ୟରତ । ସାହିତ୍ୟ ପ୍ରତି ପିଲାଦିନରୁ ଅନୁରାଗୀ । ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ, ପ୍ରବନ୍ଧ, ଅନୁବାଦ ସାହିତ୍ୟ ଉପରେ ଅନେକ ଲେଖା ପ୍ରକାଶିତ । ସେ ସଂପ୍ରତି ଦେଶ, ବିଦେଶର ବିଭିନ୍ନ ପୁସ୍ତକର ଅନୁବାଦ କାର୍ଯ୍ୟରେ ନିୟୋଜିତ । ଏତଦ୍ ବ୍ୟତୀତ ଓଡ଼ିଶାର ଅନେକ ଦୈନିକ ଖବରକାଗଜ ପୃଷ୍ଠାରେ ଶିକ୍ଷା ସମ୍ବନ୍ଧୀୟ ଲେଖା ସେ ଲେଖି ଆସୁଛନ୍ତି ।

ଶିକ୍ଷାବିଚାର

On Education

ଲେଖକ :
ଭାସିଲି ସୁଖୋମ୍‌ଲିନ୍‌ସ୍କି

Author :
Vasily Sukhomlinsky

ଭାଷାନ୍ତର :
ଅନୀଲ ପ୍ରଧାନ
ପ୍ରଫୁଲ୍ଲ ବେହେରା

Translation:
Anil Pradhan
Prafulla Behera

ପ୍ରକାଶକ :
ଶିକ୍ଷାସନ୍ଧାନ
ଏ-୧୨, ହାଉସିଂ ବୋର୍ଡ଼
କଲୋନୀ, ବରମୁଣ୍ଡା,
ଭୁବନେଶ୍ୱର - ୭୫୧ ୦୦୩
ଦୂରଭାଷ: ୨୫୫୬୧୦୯

Publiched by:
Sikshasandhan
A-12, H.B.Colony
Baramunda,
Bhubaneswar - 751 003
Ph: (0764) 2556109

ପ୍ରକାଶନ କାଳ :
ସେପ୍ଟେମ୍ବର ୫, ୨୦୦୩

First Edition:
5th September, 2003

ମୁଦ୍ରଣ :
ସ୍ୟାକ୍ରେଡ୍ ପ୍ରେସ୍ ସର୍ଭିସ୍
ଏନ୍-୩/୩୫୫, ନୟାପଲ୍ଲୀ
ଭୁବନେଶ୍ୱର - ୭୫୧ ୦୧୫

Printed at:
Sacred Press Service
N 3/355, Nayapalli
Bhubaneswar - 751 015

ମୂଲ୍ୟ : ୭୫/-

Price: 75/-

# ମୁଖବନ୍ଧ

ଜଣେ ଶିକ୍ଷକ ଭାବରେ ସାରା ଜୀବନ କଟାଇ ଦେବାକୁ ଚାହୁଁଥିବା ଲୋକମାନଙ୍କର ସଂଖ୍ୟା ବହୁତ କମ୍ । ଶିଖିବା ଓ ଶିଖାଇବା ଯେ ଏକ ଆନନ୍ଦମୟ ଅନୁଭୂତି ହୋଇପାରେ, ଏକ ନୂତନ ସମାଜ ରହିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରେ ଏକଥା ବିଶ୍ୱାସ କରୁଥିବା ଲୋକମାନଙ୍କର ସଂଖ୍ୟା ମଧ୍ୟ କମିଯାଉଥିବା ଭଳି ଲାଗୁଛି । ବଡ଼ ହେଲେ କ'ଣ କରିବ ? ଏ ପ୍ରଶ୍ନ ପରୀକ୍ଷାରେ ଭଲ କରିଥିବା ପିଲାମାନଙ୍କୁ ପ୍ରତ୍ୟେକ ବର୍ଷ ପଚରା ଯାଉଛି । କିନ୍ତୁ ସେମାନଙ୍କ ଭିତରୁ କେବେ କମିତି ଜଣେ ଦିଜଣ ବଡ଼ହେଲେ ଶିକ୍ଷକ ହେବାକୁ ଚାହାଁନ୍ତି ବୋଲି କହନ୍ତି । ଶିକ୍ଷକର ଜୀବନ ନୀରସ, ଶୁଷ୍କ, ସେଥିରେ କୌଣସି ଉନ୍ମାଦନା ନାହିଁ, ଏହିପରି ଏକ ଧାରଣା ଆମମାନଙ୍କ ଭିତରେ ବଦ୍ଧମୂଳ ହେବାକୁ ଲାଗିଛି ।

ସମାଜର ପରିବର୍ତ୍ତନ ପାଇଁ ଏକ ନୂଆ ଭବିଷ୍ୟତ ଗଢ଼ିବା ପାଇଁ ଶିକ୍ଷାର ଭୂମିକା ବିଶେଷ କରି ଶିକ୍ଷକମାନଙ୍କର ଭୂମିକା ଧୀରେ ଧୀରେ ଗୌଣ ହୋଇଯିବା ପରି ମନେ ହେଉଛି ।

ଆମ ଦେଶରେ ଓ ପୃଥିବୀର ଅନ୍ୟାନ୍ୟ ଦେଶରେ ଅନେକ ଶିକ୍ଷକ ଶିକ୍ଷାଦାନକୁ ଜୀବନର ବ୍ରତ ଭାବରେ ନେଇଛନ୍ତି ଓ ଶିକ୍ଷାକ୍ଷେତ୍ରରେ ନୂତନ ଚେତନାର ଉଦ୍ରେକ କରାଇଛନ୍ତି । ଶିକ୍ଷାସନ୍ଧାନ ଏହିଭଳି କେତେକ ଶିକ୍ଷାନାୟକ ମାନଙ୍କର ଚିନ୍ତାଧାରା ସହ ଓଡ଼ିଆ ପାଠକମାନଙ୍କୁ ପରିଚିତ କରାଇବାର ପ୍ରୟାସ କରିଆସୁଅଛି । ବିଶିଷ୍ଟ ଶିକ୍ଷାବିତ୍ ଓ ସାହିତ୍ୟିକ ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କ ପ୍ରେରଣା ଓ ସହଯୋଗରେ ଏ ଯାବତ୍ ପାଞ୍ଚଟି ଶିକ୍ଷା ସଂପର୍କିତ ପୁସ୍ତକର ଅନୁବାଦ ଶିକ୍ଷାସନ୍ଧାନ ପ୍ରକାଶ କରିଛି ଓ ସେଗୁଡ଼ିକ ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଛି । ଆଗରୁ ଶିକ୍ଷାସନ୍ଧାନ ଆନୁକୂଲ୍ୟରେ ଋଷିଆର ବରେଣ୍ୟ ଶିକ୍ଷାବିତ୍ ସୁଖୋମ୍ଲିନ୍ସ୍କିଙ୍କର "ମୋ' ହୃଦୟ ପିଲାଙ୍କ ପାଇଁ" ପୁସ୍ତକର ଅନୁବାଦ ପ୍ରକାଶିତ ହୋଇଥିଲା । ବହିଟିର ଅନୁବାଦକ ପ୍ରଫେସର ଚିତ୍ତରଞ୍ଜନ ଦାସ । ସୁଖୋମ୍ଲିନ୍ସ୍କିଙ୍କର ଆଉ ଗୋଟିଏ ଉପାଦେୟ ପୁସ୍ତକ ଶିକ୍ଷାବିଚାରର ପ୍ରକାଶନ ଆନନ୍ଦର ବିଷୟ । ଶିକ୍ଷା ସମ୍ପର୍କରେ ସୁଖୋମ୍ଲିନ୍ସ୍କିଙ୍କର ମତ ସମ୍ବଳିତ ଏହି

ପୁସ୍ତକର ଅନୁବାଦ କରିଛନ୍ତି ଶ୍ରୀ ଅନାଲ ପ୍ରଧାନ ଓ ଶ୍ରୀ ପ୍ରଫୁଲ୍ଲ ବେହେରା । ବହିଟିର ଦୀର୍ଘ ମୁଖବନ୍ଧର ଅନୁବାଦକ ନିଜେ ପ୍ରଫେସର ଚିତ୍ତରଞ୍ଜନ ଦାସ । ତାଙ୍କର ଅକୁଣ୍ଠ ସହଯୋଗ, ପରାମର୍ଶ ଓ ପ୍ରେରଣା ବିନା ଏ ପୁସ୍ତକଟି ପ୍ରକାଶିତ ହୋଇପାରି ନଥାନ୍ତା । ଶିକ୍ଷାସନ୍ଧାନ ତାଙ୍କ ନିକଟରେ କୃତଜ୍ଞ । ଭବିଷ୍ୟତରେ ଏହିପରି ଆଉ କେତେକ ପୁସ୍ତକ ପ୍ରକାଶନ କରିବାର ଯୋଜନା ଶିକ୍ଷାସନ୍ଧାନର ରହିଛି । ଆମେ ପାଠକମାନଙ୍କର ସାହାଯ୍ୟ ଓ ସହଯୋଗ ପାଇବୁ ବୋଲି ଆଶା ।

ଯତୀନ୍ଦ୍ର କୁମାର ନାୟକ
ସଭାପତି, ଶିକ୍ଷାସନ୍ଧାନ

# ସୂଚୀପତ୍ର





# ସୁଖୋମ୍ଲିନ୍‌ସ୍କି : ଏକ ବିରୋଧାଭାସ

ସାଂପ୍ରତି ବିଦ୍ୟାଳୟର ଶିକ୍ଷା ପୃଥିବୀଯାକ କ୍ରମେ ଅଧିକରୁ ଅଧିକ ମନୁଷ୍ୟଙ୍କର ଦୃଷ୍ଟି ଆକର୍ଷଣ କରୁଛି । ବହୁତ ବ୍ୟକ୍ତି ବିଦ୍ୟାଳୟମାନଙ୍କରେ ଅନୁସୃତ ହେଉଥିବା ପ୍ରଣାଳୀଗୁଡ଼ିକର ସମାଲୋଚନା କରୁଛନ୍ତି ଏବଂ ବହୁତ ଦେଶରେ ବିଦ୍ୟାଳୟର ଶିକ୍ଷାରେ ସଂସ୍କାରମାନ ଆଣିବା ହିଁ ଏକ ଜାତୀୟ ଅଭ୍ୟାସରେ ପରିଣତ ମଧ୍ୟ ହେଲାଣି । ତଥାପି, ବିଦ୍ୟାଳୟ ମାନଙ୍କରେ କ'ଣସବୁ ନହେବା ଉଚିତ, ଅଧିକତର ସମାଲୋଚନା ମୁଖ୍ୟତଃ ତାହାରି ବିଷୟରେ କରାଯାଉଛି ମାତ୍ର, ସେଗୁଡ଼ିକ ପରିବର୍ତ୍ତେ କ'ଣସବୁ ହେବା ଉଚିତ, ସେ ବିଷୟରେ ନିର୍ଦ୍ଦିଷ୍ଟ ପ୍ରସ୍ତାବମାନ ସେତେ ବେଶୀ ଆଦୌ ଦିଆ ଯାଉନାହିଁ । ଶିକ୍ଷାର କ୍ଷେତ୍ରରେ ଘଟିଥିବା ଏକ ବିସ୍ଫୋରଣ ବିଷୟରେ ବହୁତ କଥା କୁହାଯାଉଛି, ଭବିଷ୍ୟତରେ ଆମପାଇଁ ଅପେକ୍ଷା କରିଥିବା ପୃଥିବୀଟି ନିମନ୍ତେ ବର୍ତ୍ତମାନର ପିଲାମାନଙ୍କୁ ପ୍ରସ୍ତୁତ କରିବା ବିଷୟରେ କେତେ କ'ଣ କୁହାଯାଉଛି, - କିନ୍ତୁ ବର୍ତ୍ତମାନ ସତକୁ ସତ କ'ଣ କରିବାକୁ ହେବ, ସେବିଷୟରେ ବିଶେଷ କିଛି କୁହା ଯାଉନାହିଁ । ହଁ, 'ସୃଜନାତ୍ମକ' ଭାବରେ ବିଦ୍ୟାଶିକ୍ଷା କରିବା ଏବଂ ପାଠଗୁଡ଼ାକୁ 'ମୁଖସ୍ଥ କରି' ପଇଟାଇ ରଖିବା, - ଦୁହିଁଙ୍କ ମଧ୍ୟରେ ରହିଥିବା ପାର୍ଥକ୍ୟଗୁଡ଼ିକ ବିଷୟରେ ମଧ୍ୟ ବହୁତ ଆଲୋଚନା ହେଉଛି । ପୃଥିବୀଯାକ ପ୍ରାୟ ସର୍ବତ୍ର ସୃଜନାତ୍ମକତାକୁ ଏକ ଧର୍ମମାର୍ଗ ପରି ଗ୍ରହଣ କରିବା ନିମନ୍ତେ କୁହାଗଲାଣି ଏବଂ, ଯେଉଁମାନେ ସବୁଠାରୁ ଅଧିକ ପରିମାଣରେ ସେହି ଆଦର୍ଶଟିର ଗୁଣଗାନ କରୁଛନ୍ତି, ସୃଜନାତ୍ମକତାର ବାସ୍ତବ ଅର୍ଥଟି ସମ୍ପର୍କରେ ସମ୍ଭବତଃ ଆଦୌ କୌଣସି ସ୍ପଷ୍ଟ ଧାରଣା ରହିଛି ବୋଲି ଲାଗୁନାହିଁ । କେଉଁସବୁ ଉପାୟରେ ସୃଜନାତ୍ମକତାର ଅଭିବୃଦ୍ଧି ସମ୍ଭବ ହେବ, ସେ କଥାଟିକୁ ମଧ୍ୟ ସେମାନେ ଜାଣିନାହାନ୍ତି ।

ଭବିଷ୍ୟତବାଦୀମାନେ ଏବେ ଆମକୁ ମନୁଷ୍ୟଜୀବନର ପ୍ରାୟ ଯାବତୀୟ କ୍ଷେତ୍ର ବିଷୟରେ ପୂର୍ବଧାରଣାମାନ ବେଶ୍ ପ୍ରଦାନ କରି ପାରୁଛନ୍ତି ସତ, କିନ୍ତୁ ଏହି କୋଡ଼ିଏ ବର୍ଷ ପରେ ଆମ ବିଦ୍ୟାଳୟଗୁଡ଼ିକ ପ୍ରକୃତରେ କିଭଳି କ'ଣ

ହୋଇପାରିବେ, ସେବିଷୟରେ ସେମାନେ ସେତେବେଶୀ ଅନୁମାନ କରି ପାରୁନାହାନ୍ତି । ପ୍ରାୟ ଏକ ଆପେକ୍ଷିକ ନିଶ୍ଚୟତା ସହିତ ସେମାନେ ଅଧ୍ୟାପନାର କ୍ଷେତ୍ରରେ କେତେ କେତେ ମେସିନ୍‌ର ଯୁଗ ଆସି ପହଞ୍ଚିବ ବୋଲି ବର୍ତ୍ତମାନ କହିଦେଇ ପାରୁଛନ୍ତି । ମାତ୍ର, ବିଦ୍ୟାଳୟମାନେ କ'ଣ ଗୋଟିଏ ଗୋଟିଏ କାରଖାନା ହୋଇଛନ୍ତି ଯେ ସେଗୁଡ଼ିକର ସଫଳତା କେତେକ ସରଞ୍ଜାମ ତଥା ଯନ୍ତ୍ରକୌଶଳ ଉପରେ ନିର୍ଭରଶୀଳ ହୋଇ ରହିପାରିବ ? ବସ୍ତୁତଃ ବିଚାର ଉପରେ ସିନା ସବୁକିଛି ନିର୍ଭର ହିଁ କରିବ !

ଏଥିରେ କୌଣସି ସନ୍ଦେହ ନାହିଁ ଯେ, ସଂସାରରେ ଗମ୍ଭୀର ତଥା ଯଥାର୍ଥ ବିଚାରର ବର୍ତ୍ତମାନ ଆଦୌ କୌଣସି ଅଭାବ ହିଁ ନାହିଁ । ଆମର ଏହି ସାଂପ୍ରତିକ ଯୁଗରେ ଗଭୀର ମେଧାଶକ୍ତିସମ୍ପନ୍ନ ବ୍ୟକ୍ତିମାନଙ୍କର ଅଭାବ ମଧ୍ୟ ନାହିଁ । ତଥାପି, ଆମ ପିତାମାତା ତଥା ଶିକ୍ଷାଦାତାମାନେ ସବାଆଗ କେଉଁସବୁ କ୍ଷେତ୍ରରେ ପ୍ରକୃତରେ ଉଦ୍ୟମଶୀଳ ହୋଇ ରହିବେ ? ଏବଂ କେବଳ ସେହିମାନେ ନୁହନ୍ତି, ଅନ୍ୟମାନେ ମଧ୍ୟ ସେହିସବୁ ବିଷୟରେ ଚିନ୍ତା ମଧ୍ୟ କରିବେ ?

ମୁଁ ଥରେ ସୋଭିଏଟ୍ ମହାକାଶ ଗବେଷଣା କେନ୍ଦ୍ର " ଷ୍ଟାର୍ ସିଟି'' ରେ ଗୋଟିଏ ବକ୍ତୃତା ଦେବା ନିମନ୍ତେ ନିମନ୍ତ୍ରଣ ପାଇଥିଲି । ସେଠାରେ ଶ୍ରୋତାମାନଙ୍କୁ ମୁଁ କେଉଁସବୁ ବିଷୟରେ ପ୍ରଶ୍ନ ପଚାରି ପାରିବି ତାହା ମୋତେ ଉତ୍ତମରୂପେ ଜଣାଥିଲା ସତ, ମାତ୍ର, ସେମାନଙ୍କୁ ମୁଁ ସ୍ୱୟଂ କ'ଣ କହିବି, ସେ ବିଷୟରେ ମୁଁ ଆଦୌ ସେହି ଅନୁପାତରେ ସ୍ପଷ୍ଟ ହୋଇ ଜାଣି ପାରୁନଥିଲି । କିନ୍ତୁ ସେଦିନ ସେହିମାନେ ହିଁ ନିଜ ଆଡ଼ୁ ମୋ' ପାଇଁ ବିଷୟଟିଏ ସ୍ଥିର କରି ମୋତେ କହି ଦେଇଥିଲେ, ସେମାନେ ମୋତେ ଭାସଲି ସୁଖୋମ୍‌ଲିନ୍‌ସ୍କିଙ୍କର କୃତି ଉପରେ କହିବା ନିମନ୍ତେ ଅନୁରୋଧ କଲେ ।

ସଂପ୍ରତି ଅଭୂତପୂର୍ବ ଭାବରେ ସୁଖୋମ୍‌ଲିନ୍‌ସ୍କିଙ୍କର କାର୍ଯ୍ୟ ତଥା ଜୀବନ ବିଷୟରେ ଅଧିକରୁ ଅଧିକ ଆଗ୍ରହ ପ୍ରକାଶ ପାଇବାରେ ଲାଗିଛି । ସୁଖୋମ୍‌ଲିନ୍‌ସ୍କି ଉପନ୍ୟାସ ଲେଖିନାହାନ୍ତି, ଗଳ୍ପ ଲେଖିନାହାନ୍ତି, ଏପରିକି ପରିବାରରେ ପିଲାମାନଙ୍କର ତତ୍ତ୍ୱ ନେବା ବିଷୟରେ ସେ କୌଣସି ପରାମର୍ଶ-ପ୍ରଦାନକାରୀ ପୁସ୍ତକ ମଧ୍ୟ ଲେଖିନାହାନ୍ତି । ସେ ସିଧା ଶିକ୍ଷାରେ ଏକାଧିକ ଅବଲୋକନ ତଥା

ଅଧ୍ୟୟନମାନ କରିଛନ୍ତି । ମାତ୍ର ସେହି ବିବରଣୀଗୁଡ଼ିକ ଏବେ ବହୁସଂଖ୍ୟକ ସଂସ୍କରଣରେ ପ୍ରକାଶ ପାଉବାରେ ଲାଗିଛି; ଲକ୍ଷ ଲକ୍ଷ ସଂଖ୍ୟାରେ ବାହାରୁଛି ଓ ସର୍ବଦା ମାତ୍ର କେତୋଟି ଘଣ୍ଟାରେ ବିକ୍ରୀ ହୋଇ ଯାଉଛି ।

ହୁଏତ ଶୁଣିଲେ ଖୁବ୍ ଆଶ୍ଚର୍ଯ୍ୟ ଲାଗିବ ଯେ, ଶ୍ରୀ ସୁଖୋମ୍ଲିନ୍‌ସ୍କିଙ୍କର ପୁସ୍ତକଗୁଡ଼ିକୁ ଏଭଳି ବ୍ୟକ୍ତିମାନେ ପାଠ କରୁଛନ୍ତି ଯେଉଁମାନଙ୍କର କି ଶିକ୍ଷାର ଜଗତଟି ସହିତ ବସ୍ତୁତଃ ଆଦୌ କୌଣସି ସମ୍ବନ୍ଧ ନାହିଁ । ବିଦ୍ୟୁତ୍‌ଶକ୍ତି ବିଭାଗରେ କାର୍ଯ୍ୟ କରୁଥିବା ଜଣେ ଇଞ୍ଜିନିୟର୍ କୁଆଡ଼େ ଗସ୍ତରେ ଗଲାବେଳେ ତାଙ୍କଦ୍ୱାରା ଲିଖିତ ଗୋଟିଏ ବହିକୁ ବାଟରେ ପଢ଼ିବ ବୋଲି ସାଙ୍ଗରେ ନେଇଯାଉଛି; ଚଉଦବର୍ଷର ଇସ୍କୁଲରେ ପାଠ ପଢୁଥିବା ଗୋଟିଏ ଝିଅ ହୁଏତ ତାଙ୍କର ଗୋଟିଏ ବହିକୁ ନେଇ ନିଜର ଶିକ୍ଷକଙ୍କୁ ଦେଉଛି ଏବଂ ଆଶା କରୁଛି ଯେ, ବହିଟିକୁ ପାଠ କରିବାପରେ ତା'ର ଏହି ଶିକ୍ଷକଜଣକ ନିଜ ହେପାଜତରେ ଥିବା ଛାତ୍ରଛାତ୍ରୀମାନଙ୍କୁ ଆଉ ଆଦୌ ଦୁର୍ବ୍ୟବହାର କରିବେ ନାହିଁ । ପିଲାମାନଙ୍କ ସମ୍ବନ୍ଧରେ ତଥା ଶିକ୍ଷା ସମ୍ବନ୍ଧରେ କୌଣସି ନା କୌଣସି ସାମଗ୍ରୀ ପ୍ରକାଶ କରୁଥିବା ପ୍ରତ୍ୟେକ ଖବରକାଗଜରେ କେତେ ନା କେତେ କୃତଜ୍ଞତା ସହିତ ଶ୍ରୀ ସୁଖୋମ୍ଲିନ୍‌ସ୍କିଙ୍କର ବିଚାରଗୁଡ଼ିକର ଉଲ୍ଲେଖ କରାଯାଉଛି ।

\+ + +

ଅତ୍ୟନ୍ତ ଧୀରେ ଧୀରେ ସୋପାନ ପରେ ସୋପାନ ପାର ହୋଇ ଆସିଲି ସୁଖୋମ୍ଲିନ୍‌ସ୍କି ଶିକ୍ଷାର କ୍ଷେତ୍ରରେ ନିଜପାଇଁ ନାମଟିଏ ଅର୍ଜନ କରି ପାରିଛନ୍ତି । ଅବଶ୍ୟ ଥରେ ତାଙ୍କର ଖ୍ୟାତିଟି ପ୍ରତିଷ୍ଠିତ ହୋଇଯିବା ପରେ ଅପ୍ରତିହତ ଭାବରେ ବହୁ ବର୍ଷ ନିମନ୍ତେ ସେ ଲୋକାଗ୍ରହ-କ୍ଷେତ୍ରର ପୁରୋଭାଗରେ ହିଁ ବିଦ୍ୟମାନ୍ ରହି ଆସିଛନ୍ତି । ପିଲାମାନଙ୍କ ସହିତ ସେ ଦୀର୍ଘ ୩୫ ବର୍ଷ କାଳ ରହି କାର୍ଯ୍ୟ କରିଛନ୍ତି ଏବଂ କୋଡ଼ିଏ ବର୍ଷ କାଳୁ ବହୁ ପୁସ୍ତକ ତଥା ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କର ରଚନାଗୁଡ଼ିକ କେବଳ ସୋଭିଏଟ୍ ରୁଷିଆରେ ଯେ ପ୍ରକାଶିତ ହୋଇଛି ତା' ନୁହେଁ, ବହୁ ବିଦେଶୀ ଭାଷାରେ ମଧ୍ୟ ସେଗୁଡ଼ିକର ଅନୁବାଦ କରାଯାଇଛି । ଜଣେ ବିଶେଷ ପ୍ରତିଭା ଓ ସାମର୍ଥ୍ୟଯୁକ୍ତ ଜଣେ ଶିକ୍ଷାବିତ୍‌ଙ୍କୁ ଯେତେ ଯାହା ସମ୍ମାନ ପ୍ରାପ୍ତ ହେବା ଉଚିତ, ତାଙ୍କୁ ସେହି ସବୁକିଛି ହିଁ ପ୍ରାପ୍ତ ହୋଇଛି । ତାଙ୍କ

ବିଦ୍ୟାଳୟଟିର ପ୍ରଖ୍ୟାତି କେତେ ନା କେତେ ଦୂରକୁ ବ୍ୟାପ୍ତ ହୋଇ ଯାଇଛି । ଶେଷରେ ସେହି ଖ୍ୟାତିର ଉଚ୍ଚତମ ଶୀର୍ଷରେ ଥିଲାବେଳେ ୧୯୭୦ ମସିହା ସେପ୍ଟେମ୍ବର ମାସରେ ସେ ମାତ୍ର ଏକାବନ ବର୍ଷ ବୟସରେ ପୃଥିବୀରୁ ବିଦାୟ ନେଇ ଯାଇଛନ୍ତି ।

ସୁଖୋମ୍ଲିନ୍‌ସ୍କି ତିରିଶିଗୋଟି ପୁସ୍ତକ ଲେଖିଛନ୍ତି ଓ ପ୍ରାୟ ପାଞ୍ଚଶହ ପ୍ରବନ୍ଧ ରଚନା ମଧ୍ୟ କରିଛନ୍ତି, - ମାତ୍ର ସେଗୁଡ଼ିକ ଦ୍ୱାରା ସେ ଏକାବେଳେକେ ନୂତନ ବୋଲି କିଛି ବହି ସମସ୍ତଙ୍କୁ ଚମତ୍କୃତ କରି ଦେଇଛନ୍ତି ବୋଲି ଆଦୌ କହି ହେବନାହିଁ । ଶିକ୍ଷାପ୍ରଦାନର ପ୍ରଣାଳୀରେ ସେ ଆଦୌ ଏକ ବିପ୍ଳବର ସୂତ୍ରପାତ ମଧ୍ୟ କରିନାହାନ୍ତି ।

ତଥାପି, ତାଙ୍କୁ ପ୍ରାପ୍ତ ହୋଇଥିବା ଖ୍ୟାତିକୁ କଦାପି ଆକସ୍ମିକ ବୋଲି କହି ହେବନାହିଁ । ତାଙ୍କର ରଚନାଗୁଡ଼ିକ ଖୁବ୍ ଲୋକପ୍ରିୟ; ସେଗୁଡ଼ିକୁ ବହୁତ ଲୋକ ପାଠ କରନ୍ତି, ସେଗୁଡ଼ିକୁ ଉଦ୍ଧୃତି ରୂପେ ମଧ୍ୟ ବ୍ୟବହାର କରନ୍ତି, - କାରଣ ସିଏ ସେମାନଙ୍କୁ ବହୁ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇ ପାରିଥିବା ପରି ସର୍ବଦା ମନେ ହୋଇଥାନ୍ତି: ଶିଶୁ ତଥା କିଶୋରମାନଙ୍କ ମଧ୍ୟରେ କାର୍ଯ୍ୟ କରୁଥିବା ସମସ୍ତେ ସମ୍ମୁଖୀନ ହେଉଥିବା ହଜାର ହଜାର ପ୍ରଶ୍ନର ଉତ୍ତର ସେଥିରୁ ମିଳି ଯିବାପରି ହିଁ ଲାଗିଥାଏ । ଯେକୌଣସି ଅସହଜ ଓ ଅଡୁଆ ପରିସ୍ଥିତିରେ ହୁଏତ ସୁଖୋମ୍ଲିନ୍‌ସ୍କିଙ୍କ ଦ୍ୱାରା ପ୍ରଦତ୍ତ କୌଣସି ପରାମର୍ଶ ସମ୍ପୂର୍ଣ୍ଣ ପ୍ରାସଙ୍ଗିକ ପରି ମନେ ହୋଇଥାଏ । ସେଗୁଡ଼ିକ ଖୁବ୍ ସରଳ ଅଥଚ ସଂବେଦନଶୀଳ ପରି ଲାଗେ ଏବଂ, ପ୍ରକୃତରେ ଫଳପ୍ରଦ ବି ହୋଇଥାଏ ।

ଏବେ ତ ବହୁସଂଖ୍ୟକ ଶିକ୍ଷାବିତ୍ ଏବଂ ଶିକ୍ଷକ ନୂଆ ନୂଆ ମାର୍ଗ ଏବଂ ବିଶ୍ୱଯାକ ସର୍ବଦା ଗୃହୀତ ହୋଇ ପାରୁଥିବା ତତ୍ତ୍ୱମାନଙ୍କର ସନ୍ଧାନରେ ନିଜକୁ ତତ୍ପର କରି ରଖିଛନ୍ତି, ସେମାନେ ବିଦ୍ୟାଳୟରେ ଶିକ୍ଷାଦାନ ବିଷୟରେ ନୂତନ ତଥା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବିଚାରଗୁଡ଼ିକୁ ପାଇଯିବେ ବୋଲି ସ୍ୱପ୍ନମାନ ଦେଖୁଛନ୍ତି; ସେହି ପୃଷ୍ଠଭୂମିରେ ମସ୍କୋ ଏବଂ କିଏଭ୍ ଭଳି ବଡ଼ କୌଣସି ସହରଠାରୁ ବହୁଦୂରରେ ଅବସ୍ଥିତ ମାତ୍ର ତିନି ହଜାର ଲୋକ ବାସ କରୁଥିବା ସେହି ପାଭ୍‌ଲିଶ୍ ଗାଆଁର ଜଣେ ଶିକ୍ଷକ ସମ୍ପୂର୍ଣ୍ଣ ଏକ ନୂଆ କିସମର ଏକ ବିଦ୍ୟାଳୟକୁ ଗଠନ କରି

ଆଣୁଥିବାର ଚିତ୍ରଟିକୁ ଆମେ କଳ୍ପନା କରିବାକୁ ଚେଷ୍ଟା କରିବା । ସେଠାକୁ ଗଲେ ସବାଆଗ ଆମ ଆଖିରେ ସାଧାରଣ କିସମର ଅନ୍ୟ ସାଧାରଣ ସ୍କୁଲଗୁଡ଼ିକ ଠାରୁ ଏଇଟିର ଆଦୌ କୌଣସି ଫରକ ରହିଛି ବୋଲି ଆଦୌ ମନେ ହେବନାହିଁ । କିନ୍ତୁ, କିଛୁତ୍ ସନ୍ନିଧାନକୁ ପ୍ରବିଷ୍ଟ ହେଲେ ଅବଶ୍ୟ ସ୍ପଷ୍ଟ ହୋଇଯିବ ଯେ ଶ୍ରୀଯୁକ୍ତ ସୁଖୋମ୍ଲିନସ୍କିଙ୍କର ଏହି ପାରମ୍ପରିକ ଶିକ୍ଷାଳୟଟି ସମଗ୍ରତଃ ଯେକୌଣସି ନୂତନ ପ୍ରୟାସର ମାନଦଣ୍ଡରେ ବିଚାର କଲେ ମଧ୍ୟ ପ୍ରକୃତରେ ବହୁ ଆଗରେ ଯାଇ ରହିଛି ।

ଆମର ଏହି ବିଂଶ ଶତାବ୍ଦୀରେ କେତେ କେତେ ମୂଳ ସିଦ୍ଧାନ୍ତକୁ ନେଇ ବିଶ୍ଳେଷଣମାନ କରାଯାଉଛି । କ୍ରମେ ସମସ୍ତେ ଅଧିକରୁ ଅଧିକ ପରିମାଣରେ ସ୍ୱୀକାର କରୁଛନ୍ତି ଯେ, ଯେତେବେଳେ ଆମକୁ ଏକତ୍ର ପରସ୍ପର ସହିତ ସମ୍ମିଶ୍ରିତ ହୋଇ ରହିଥିବା ଉପାଦାନଗୁଡ଼ିକର ସମ୍ମୁଖୀନ ହେବାକୁ ପଡ଼ିବ, ସେତେବେଳେ ଏକକ ଉପାଦାନଗୁଡ଼ିକ ଅପେକ୍ଷା ସେଗୁଡ଼ିକ ମଧ୍ୟରେ ଥିବା ସମ୍ବନ୍ଧଗୁଡ଼ିକୁ ହିଁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ଗ୍ରହଣ କରିବାକୁ ହେବ ।

ବସ୍ତୁତଃ, ସୁଖୋମ୍ଲିନ୍ସ୍କିଙ୍କର ପ୍ରଣାଳୀ ମଧ୍ୟରେ ରହିଥିବା ଅସଲ ମର୍ମଟି ହେଉଛି ଯେ, ସିଏ ଶିକ୍ଷାର ସକଳ ଉପାଦାନଗୁଡ଼ିକ ମଧ୍ୟରେ ବିଦ୍ୟମାନ୍ ରହିଥିବା ସମ୍ବନ୍ଧଗୁଡ଼ିକ ଉପରେ ହିଁ ସର୍ବାଧିକ ମନୋନିବେଶ କରିଛନ୍ତି, ସେଗୁଡ଼ିକ ମଧ୍ୟରେ ରହିଥିବା ପରସ୍ପର-ନିର୍ଭରଶୀଳତାଟିକୁ ଠାବ କରିଛନ୍ତି । ବିଦ୍ୟାଳୟସ୍ତରୀୟ ଶିକ୍ଷାରେ ଏପରି ଆଦୌ କିଛିହେଲେ ନାହିଁ, ଯାହାର କି ଏକ ମୁଖ୍ୟ ଅଥବା ଗୌଣ ମହତ୍ତ୍ୱ ରହିଛି ବୋଲି ସେ ଅନୁଭବ କରିଛନ୍ତି । ଶିକ୍ଷାର ସକଳ ପ୍ରକ୍ରିୟାରେ ତାଙ୍କ ପାଇଁ ସବୁ ଉପାଦାନଗୁଡ଼ିକର ସମାନ ମହତ୍ତ୍ୱ ରହିଛି । ଜଣେ ଶିକ୍ଷକ କୌଣସି ଶିକ୍ଷାର୍ଥୀକୁ ଆଦୌ କେବଳ ଜଣେ "ଶିକ୍ଷାର୍ଥୀ'' ବୋଲି କଦାପି ଦେଖିବ ନାହିଁ; ମାତ୍ର, ତାହାଠାରୁ ଅନେକ ଅଧିକ ମହତ୍ତ୍ୱପୂର୍ଣ୍ଣ କଥାଟି ହେଉଛି ଯେ, ତାକୁ ସିଏ ଜଣେ "ବ୍ୟକ୍ତି'' ରୂପେ ଦେଖିବ, - ଯାହାର କି ଉଭୟ ଏକ ଚରିତ୍ରଗଠନ ଏବଂ ଶିକ୍ଷାପ୍ରାପ୍ତିର ଆବଶ୍ୟକତା ରହିଛି ।

କେତେ ପ୍ରକାରର କେତେ କେତେ ଶିକ୍ଷକ ମଧ୍ୟ ଅତୀତରେ ପ୍ରାୟ ଏହିଭଳି ବିଚାରଗୁଡ଼ିକୁ ପ୍ରକଟ କରିଥିଲେ । ଅନ୍ତତଃ ପୂର୍ବପ୍ରାଥମିକ ଏବଂ ତଳ

ଶ୍ରେଣୀର ପିଲାଙ୍କୁ ନେଇ ସେଗୁଡ଼ିକର କେତେ ପରିମାଣରେ ଏକ ପ୍ରୟୋଗ ମଧ୍ୟ ହୋଇଯାଇଛି । ବହୁତ ସଦିଚ୍ଛାର ସହିତ ୧୫-୧୭ ବର୍ଷ ବୟସର ଅପେକ୍ଷାକୃତ ବଡ଼ ପିଲାଙ୍କ ସ୍ତରରେ ମଧ୍ୟ ବେଳେ ବେଳେ ପ୍ରୟୋଗ ହୋଇଛି । ତଥାପି, ବର୍ତ୍ତମାନ ସମୟର ସେହି ବଡ଼ ବଡ଼ ପିଲାଙ୍କୁ ସମ୍ମୁଖୀନ ହେଲାବେଳେ, - ଏମାନେ ଅଧିକାଂଶ ସମୟରେ କୋଳାହଳ ହିଁ କରନ୍ତି, କଥା ଶୁଣନ୍ତି ନାହିଁ, ସହଜ ଭାବରେ ଗ୍ରହଣ କରନ୍ତିନାହିଁ, ସର୍ବଦା ଏକ ଶିଖିବାର ମନ ରହିଥିବାର ପରିଚୟ ଦିଅନ୍ତି ନାହିଁ ବା ଜ୍ଞାନଉପାର୍ଜନ ସକାଶେ ଗ୍ରହଣଶୀଳ ହୋଇ ରହିନଥାନ୍ତି, - ଶିକ୍ଷକମାନଙ୍କର ସେହି ବୃହତ୍ ଉଦ୍ଦେଶ୍ୟ ଏବଂ ଅଭିପ୍ରାୟଗୁଡ଼ିକ ସତକୁସତ ଭାରି ମଉଳି ଯାଇଥାଏ ଓ ସେମାନଙ୍କର ମାନବହିତକାମୀ ଆଦର୍ଶଗୁଡ଼ିକ ମଧ୍ୟ ନିଷ୍ଫଳ ହୁଅନ୍ତି ।

ତତ୍ତ୍ୱସିଦ୍ଧାନ୍ତ ଓ ପ୍ରୟୋଗ ଦୁଇଟିଯାକ କ୍ଷେତ୍ରରେ ଶ୍ରୀ ସୁଖୋମ୍ଲିନସ୍କି ଦର୍ଶାଇଦେଇ ପାରିଥିଲେ ଯେ ଯେକୌଣସି ସୁସ୍ଥ ତଥା କିଶୋର ବୟସର ଗୋଟିଏ ବଡ଼ ପିଲାକୁ ବର୍ତ୍ତମାନ ନିମନ୍ତେ ଫଳଦାୟକ ଏକ ବହୁମୁଖୀ ମାଧମିକ ଶିକ୍ଷା ଅବଶ୍ୟ ଦିଆଯାଇ ପାରିବ ଏବଂ, ପୁନଶ୍ଚ, ଏକ ସାଧାରଣ ବିଦ୍ୟାଳୟରେ ଓ ସାଧାରଣ ବେଶୀ ପିଲା ଥିବା ଶ୍ରେଣୀମାନଙ୍କରେ ମଧ୍ୟ ଦିଆଯାଇ ପାରିବ, ଯେଉଁଠାରେ କି ଶିକ୍ଷକ ବା ଛାତ୍ରମାନେ ବିଶେଷ ଭାବରେ ବଛା ହୋଇ ଆସି ନଥିବେ ବା ସେମାନଙ୍କୁ ଅଲଗା ଅଲଗା ଗୋଷ୍ଠୀରେ ବିଭକ୍ତ ମଧ୍ୟ କରାଯାଇ ନଥିବ ।

ତଥାପି, ସୁଖୋମ୍ଲିନସ୍କିଙ୍କର ଦୃଷ୍ଟି ଅନୁସାରେ, ଜଣେ ଶିକ୍ଷକ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ଏହି କଥାଟିକୁ ସର୍ବଦା ମନେ ରଖିବ ଯେ, ଏକ ବିଦ୍ୟାଳୟ ସାନ ତଥା ବଡ଼ ସବୁ ପିଲାଙ୍କ ନିମନ୍ତେ ଅବଶ୍ୟ ଆନନ୍ଦର ଗୋଟିଏ ମନ୍ଦିର ହୋଇ ହିଁ ରହିବ । ସେହି ରେନେସାଁସ୍ କାଳରୁ ହିଁ ଶିକ୍ଷକମାନେ ସେହି ସ୍ୱପ୍ନଟିକୁ ଦେଖି ଆସିଛନ୍ତି । ହୁଏତ କେହି କେହି ଏଥିରୁ ଅନୁମାନ କରୁଥିବେ ଯେ, କୌଣସି ବାଧବାଧକତାର ସହାୟତା ଗ୍ରହଣ ନକରି ଶିକ୍ଷାଦାନରେ ସଫଳତା ଅର୍ଜନ କରିବାକୁ ହେଲେ ଆମକୁ ନିରନ୍ତର ଖେଳର ସେହି ଏକମାତ୍ର ଉପାୟଟିକୁ ଗ୍ରହଣ କରିବାକୁ ହେବ; ମାତ୍ର ପ୍ରକୃତ କଥା ହେଉଛି ଯେ ବଡ଼ପିଲା ମାନଙ୍କର

ଶ୍ରେଣୀମାନଙ୍କରେ ଖେଳଟାକୁ ହିଁ ଯୋଗାଇ ଦେବାର ସେହି ପଦ୍ଧତିଟିର ଆଦୌ କୌଣସି ଅବକାଶ ହିଁ ରହିବନାହିଁ । ଏବଂ, କେବଳ ସାନ ପିଲାଙ୍କ ସକାଶେ ନୁହେଁ, ବଡ଼ମାନଙ୍କ ପାଇଁ ମଧ୍ୟ କିପରି ଶିକ୍ଷାଗ୍ରହଣର ପ୍ରକୃତ ପ୍ରକ୍ରିୟାଟିକୁ ଆନନ୍ଦମୟ କରି ରଖା ଯାଇପାରେ, ଶ୍ରୀଯୁକ୍ତ ସୁଖୋମ୍ଲିନ୍‌ସ୍କି ସେହି କଥାଟିକୁ ହିଁ ଦର୍ଶାଇ ଦେଇଛନ୍ତି ।

ବିଂଶ ଶତାବ୍ଦୀର ଏହି ପରବର୍ତ୍ତୀ ଦଶକଗୁଡ଼ିକରେ ଯେକୌଣସି ବିଦ୍ୟାଳୟରେ ସେହି ନିର୍ଦ୍ଦିଷ୍ଟ ଲକ୍ଷ୍ୟଟି ହିଁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ହୋଇ ରହିଛି; ଗତ ଶତାବ୍ଦୀର ମଧ୍ୟଭାଗରେ ଶିକ୍ଷାରମ୍ଭର ସେହି ପ୍ରାରମ୍ଭିକ ଶ୍ରେଣୀଗୁଡ଼ିକ ଯେପରି ସାର୍ବଜନୀନ ହୋଇ ରହିଥିଲା, ସମ୍ପ୍ରତି ମାଧମିକ ସ୍ତରର ଶିକ୍ଷା ହିଁ କ୍ରମେ ସେହିପରି ସାର୍ବଜନୀନ ହେବାର ସ୍ୱୀକୃତି ଲାଭ କରି ଆସୁଛି ।

କେତେକ ଶିକ୍ଷକ ଶ୍ରେଣୀଗୃହରେ ଛାତ୍ରମାନଙ୍କୁ ବେଶ୍ ଅନୁକୂଳ ଭାବରେ ଖୁସୀ ଓ ସମ୍ମତ କରି ରଖିପାରନ୍ତି; ମାତ୍ର ଅନ୍ୟ ଏପରି ଶିକ୍ଷକମାନେ ବି ଥାଆନ୍ତି ଯେଉଁମାନେ ଛାତ୍ରମାନଙ୍କର ବିକାଶ ଘଟାଇବାର ନିଜର ଯାବତୀୟ ପ୍ରଚେଷ୍ଟାରେ ଅତିଶୟ କେତେ କ'ଣ ଦାବୀ କରନ୍ତି ଏବଂ ନମନୀୟ ହୋଇ ପାରନ୍ତି ନାହିଁ । ଜ୍ଞାନପ୍ରଦାନ ଦ୍ୱାରା ଛାତ୍ରମାନଙ୍କୁ ଅଧିକ ସମ୍ପନ୍ନତା ଆଣିଦେବାର ସେମାନଙ୍କର ପ୍ରୟାସରେ ନିରନ୍ତର ପରୀକ୍ଷାମାନ କରି ଆକଳନ କରିବା, ଛାତ୍ରମାନଙ୍କୁ ଅଧିକ ଶ୍ରମ ତଥା ଅଧିକ ହାସଲ କରିବାର ଆକାଂକ୍ଷା ଦ୍ୱାରା ମଣ କରିବାର ନାନା ପ୍ରଣାଳୀ ଅବଲମ୍ବନ ନକଲେ ଆଦୌ କିଛି ସମ୍ଭବ ହେବନାହିଁ ବୋଲି ମାନି ନେଇଥାନ୍ତି ।

କିନ୍ତୁ ସୁଖୋମ୍ଲିନ୍‌ସ୍କି ସେହି ଦୁଇଟିଯାକ ଲକ୍ଷ୍ୟକୁ ଏକାଠି ଯୁକ୍ତ କରି ରଖି ମଧ୍ୟ ସବୁକିଛି କରିପାରିଲେ, - ସେଗୁଡ଼ିକ ଆପାତତଃ ପରସ୍ପର ଠାରୁ ଏକାବେଳେକେ ଭିନ୍ନ ବୋଲି ବୋଧ ହେଉଥିଲେ ମଧ୍ୟ ସେ ତାହା କରି ପାରିଥିଲେ ।

\+ \+ \+

କେତେ କେତେ ପିଲାଙ୍କୁ ଶିକ୍ଷାଟା କାହିଁକି ଏତେ ଅଧିକ ପରିମାଣରେ କଠିନ ଏବଂ କଷ୍ଟକର ମନେ ହୋଇଥାଏ ? କ'ଣ ପାଇଁ ଏପରି ହୁଏ ଯେ, ସମ୍ପୂର୍ଣ୍ଣ ଆରମ୍ଭରୁ ହିଁ କେତେକ ପିଲା - ପୁଅ ଏବଂ ଝିଅ - ସହପାଠୀ ଅନ୍ୟମାନଙ୍କ

ତୁଳନାରେ ସାମଗ୍ରିକ ବିକାଶ ଦୃଷ୍ଟିରୁ ପଛରେ ପଡ଼ି ରହିଥାନ୍ତି, ବର୍ଷ ବର୍ଷ ଯାବତ୍ ସେହି ଗୋଟିଏ ଶ୍ରେଣୀରେ ରହନ୍ତି ଏବଂ ବିଦ୍ୟାଳୟରୁ ବିଦାୟ ନେଇ ଗଲାବେଳେ ପ୍ରକୃତ ଶିକ୍ଷା ବୋଲି ହୁଏତ କିଛି ବି ପ୍ରାପ୍ତ ହୋଇ ନଥାନ୍ତି ? ସମୟ ସମୟରେ ଶିକ୍ଷାଦାତାମାନେ ତ ଏକାବେଳେକେ ସଦ୍ୟତମ ପ୍ରଣାଳୀମାନଙ୍କର ହିଁ ଅନୁସରଣ କରୁଥାନ୍ତି ଏବଂ ପ୍ରଭୃତ ନାନା କୌଶଳର ମଧ୍ୟ ପ୍ରୟୋଗ କରନ୍ତି ; ଗୋଟିଏ ପିଲାର ବିଦ୍ୟାଳୟଜୀବନରେ ସେମାନେ ସତେଅବା ଇଟା ଉପରେ ଇଟା ବସାଇ ମହଲା ପରେ ମହଲା ଅନୁକ୍ରମରେ ସ୍ଥାୟୀ ଅଟ୍ଟାଳିକାଟିଏ ଗଠିତ କରି ରଖିବାର ପ୍ରୟାସ କରୁଥାନ୍ତି । ..... ତଥାପି, ବର୍ଷେ ଅଥବା ଦୁଇବର୍ଷ ପରେ ସତେଅବା ସମ୍ପୂର୍ଣ୍ଣ ଅଟ୍ଟାଳିଟି ଭୁଷୁଡ଼ି ହିଁ ପଡ଼େ, - କାରଣ ତାକୁ ଠିଆ କରି ରଖିବା ସକାଶେ ପ୍ରକୃତରେ ଦୃଢ଼ ମୂଳଦୁଆଟିଏ କେବେ ତିଆରି ହୋଇ ନଥାଏ ।

ବିଦ୍ୟାଳୟର ପରିଦର୍ଶନ କରିବାକୁ ଉପର ଯେଉଁ ବ୍ୟକ୍ତିମାନେ ଆସୁଥିଲେ, ସେମାନେ ଯେ ସମସ୍ତେ କାହିଁକି ଉପର ଶ୍ରେଣୀମାନଙ୍କୁ ଯିବାଲାଗି ଅଧିକ ବ୍ୟଗ୍ରତା ପ୍ରକାଶ କରୁଥିଲେ, ସୁଖୋମ୍ଲିନସ୍କି ସେକଥା ମୋଟେ ବୁଝି ପାରୁନଥିଲେ । ଅନ୍ୟମାନଙ୍କ ଭଳି ନହୋଇ ସିଏ ଅତି ଉତ୍ତମ ଭାବରେ ଜାଣିଥିଲେ ଯେ, ବିଦ୍ୟାଳୟର ସର୍ବପ୍ରଥମ ଶ୍ରେଣୀଗୁଡ଼ିକରେ ହିଁ ଜଣେ ପିଲାର ଅସଲ ମୂଳଦୁଆଗୁଡ଼ିକ ପଡ଼ିଥାଏ; ଅଧିକ ନିର୍ଭୁଲ ଭାବରେ କହିଲେ, ଗୋଟିଏ ପିଲା ଗୋଟିଏ ବିଦ୍ୟାଳୟରେ ଯାଇ ପହଞ୍ଚିବାର ବହୁ ପୂର୍ବରୁ ହିଁ ତାହା ପଡ଼ି ସାରିଥାଏ ।

ସୋଭିଏଟ୍ ରୁଷିଆର ସବୁଠାରେ ପିଲାମାନେ ସାତବର୍ଷ ବୟସରେ ସ୍କୁଲକୁ ଯାଆନ୍ତି ; ହଁ, କେତେକ ରାଜ୍ୟରେ ଏକ ପ୍ରସ୍ତୁତିମୂଳକ ପୂର୍ବପ୍ରାଥମିକ ନାମରେ ଏବେ ସେଥିସହିତ ଆଉଗୋଟିଏ ଶ୍ରେଣୀ ମଧ୍ୟ ଯୁକ୍ତ କରାଯାଇଛି ।

ସୁଖୋମ୍ଲିନସ୍କିଙ୍କ ପାଇଁ ଏହି ପୂର୍ବପ୍ରାଥମିକଟି ହିଁ ସବୁଠାରୁ ଅଧିକ ପ୍ରିୟ ଥିଲା । ବିଦ୍ୟାଳୟର ପ୍ରଧାନଶିକ୍ଷକ ହିସାବରେ ସେ ସର୍ବଦା ଏହି ଶ୍ରେଣୀଟିକୁ ନେଉଥିଲେ; ସେହି ଶ୍ରେଣୀଟି ଯେ ପ୍ରତ୍ୟେକ ପିଲାର ଶିକ୍ଷା ତଥା ଚରିତ୍ରଗଠନ ନିମନ୍ତେ ଅସଲ ମୂଳଦୁଆଟିଏ ଯୋଗାଇ ଦେଉଥିଲା, ସେ ଏକଥା ଖୁବ୍ ଭଲଭାବେ ଜାଣିଥିଲେ । ଏହି ପୂର୍ବପ୍ରାଥମିକ ଶ୍ରେଣୀଟିକୁ ସୁଖୋମ୍ଲିନସ୍କି ତାଙ୍କର "ଆନନ୍ଦମୟ ପାଠଶାଳା" ବୋଲି କହୁଥିଲେ ।

ସେହି ଶ୍ରେଣୀଟି କହିଲେ ପନ୍ଦର ବା ଷୋଳଜଣ ଛଅବର୍ଷିଆ ପିଲାଙ୍କୁ ବୁଝାଉଥିଲା ଓ ସେଥିରେ ଝିଅ ଏବଂ ପୁଅ ଉଭୟେ ରହିଥିଲେ । ଅନ୍ୟ ପିଲାଙ୍କ ପରି ଏମାନଙ୍କୁ ସେ ଶ୍ରେଣୀକକ୍ଷ ମଧ୍ୟରେ ଆବଦ୍ଧ କରି ରଖୁନଥିଲେ, ସେମାନଙ୍କୁ ବଗିଚା ଭିତରକୁ ନେଇ ଯାଉଥିଲେ । ଏବଂ ତା'ପରେ ସେମାନଙ୍କୁ କହୁଥିଲେ : "ଏଠାରେ ଏହି ବନଳିଆ ଆକାଶ ତଳେ ହିଁ ଆମର ପାଠଶାଳାଟି ଚାଲିବ । ଆମେ ସବୁଜ ଘାସ ଉପରେ ବସିବା, - ଏହି ଢଙ୍କା ହୋଇ ମେଲିଥିବା ନାସ୍‌ପାତି ଗଛ ତଳେ, - ଅଙ୍ଗୁରକୁଞ୍ଜ ଅଥବା କୌଣସି ସବୁଜ ପଡ଼ିଆରେ ମଧ୍ୟ ଆମେ ଯାଇ ବସିପାରିବା । କାଲି ଆସିବା ସମୟରେ ତୁମେମାନେ ଖାଲି ପାଦରେ ଆସିବ, ଆମ ପାଠଶାଳାରେ ସେଇଟା ସବୁଠାରୁ ଅଧିକ ବଢ଼ିଆ ହେବ ।"

ସତେ ଯେପରି ଏକ ରଙ୍ଗମଞ୍ଚର ପର୍ଦ୍ଦାଟିକୁ ଉଠାଇ ଦେଇ ସୁଖୋମ୍ଲିନ୍‌ସ୍କି ଅତ୍ୟନ୍ତ ଗମ୍ଭୀର ଭାବରେ ଘୋଷଣା କରିଥିଲେ; "ଆମର ପାଠଶାଳାଟି ବର୍ତ୍ତମାନ ଏହିଠାରେ ହିଁ ଆରମ୍ଭ ହେବ । ଆମେ ଏହିଠାରୁ ହିଁ ନୀଳ ଆକାଶଟି ଆଡ଼କୁ ଦୃଷ୍ଟିପାତ କରିବା, ବଗିଚାକୁ ଅନାଇବା, ଗାଆଁ ଆଡ଼କୁ ଚାହିଁ ଦେଖିବା, ସୂର୍ଯ୍ୟଙ୍କୁ ମଧ୍ୟ ।"

ଏହାକୁ କ'ଣ ସତକୁ ସତ ପାଠଶାଳାର ପାଠପଢ଼ା ବୋଲି କୁହାଯିବ ? ହଁ, ହଁ, ପ୍ରକୃତରେ ପାଠପଢ଼ା । ପାଠପଢ଼ାର ଅଯମାରମ୍ଭ । ଯେଉଁ ଶିକ୍ଷକ ତା' ପାଖରେ ପାଠ ପଢ଼ି ଆସିଥିବା ଛୁଆମାନଙ୍କୁ ତର ତର କରି "ସମସ୍ତେ କେମିତି ଅଛ ?" ବୋଲି କହି ତୁରନ୍ତ ବର୍ଣ୍ଣବୋଧ ଖୋଲି ପଢ଼ାଇବା ଆରମ୍ଭ କରିଦିଏ, ସିଏ ବସ୍ତୁତଃ ନାଟକଟିର ପ୍ରଥମ ଅଙ୍କରୁ ନୁହେଁ, ଦ୍ୱିତୀୟ ଅଙ୍କରୁ ହିଁ ଆରମ୍ଭ କରିଥାଏ; ଲାଗୁଥାଏ, ସତେ ଯେପରି ତା' ପାଖରେ ମୋଟେ ଯଥେଷ୍ଟ ସମୟ ନାହିଁ ଅଥବା, ପିଲାମାନେ ମଧ୍ୟ ଆସି ପହଞ୍ଚିବାରେ ଏତେ ଡେରି କରିଛନ୍ତି ଯେ, ପ୍ରଥମ ପର୍ଦ୍ଦାଟି ଉଠିବାଟିକୁ ପ୍ରକୃତରେ ଦେଖି ପାରିନାହାନ୍ତି ।

ତେଣୁ, ବିଦ୍ୟାଳୟର ପ୍ରଥମ ଅଙ୍କଟି ଶ୍ରେଣୀଗୃହ ଭିତରେ ଆରମ୍ଭ ହୁଏନାହିଁ, ତାହା ପ୍ରକୃତିର କ୍ରୋଡ଼ରେ ହିଁ ଆରମ୍ଭ ହୁଏ । "ଶବ୍ଦ ତଥା କଥୋପକଥନ" ର ଝରଣାଟି ପାଖରେ । ଏବଂ, ସୁଖୋମ୍ଲିନ୍‌ସ୍କିଙ୍କର ପିଲାମାନେ ସେହି ଝରଣାଟିରୁ ଜଳପାନ କରିବା ନିମନ୍ତେ ସମର୍ଥ ମଧ୍ୟ ହେଉଥିଲେ । ନିଜ ଶିକ୍ଷକଙ୍କ ସାଙ୍ଗରେ

ସେମାନେ ଦିନକୁ ତିନି ଚାରି ମାଇଲ ବାଟ ଚାଲି ପାରୁଥିଲେ; ଏକାଠି ହୋଇ ଯୁଗପତ୍ ଭାବରେ ଉଷାକାଳ ଓ ସେହି ସମୟଟିର ଝାପ୍‌ସା ଆଲୁଅଟି ଦ୍ୱାରା ମୁଗ୍ଧ ହେଉଥିଲେ । ଶରତ ଋତୁରେ ମେଘମାନଙ୍କର ଅଧ୍ୟୟନ କରୁଥିଲେ ଏବଂ ଶୀତଋତୁରେ ତୁଷାରସ୍ରୋତ ଗୁଡ଼ିକର ଚିହ୍ନମାନଙ୍କୁ ମଧ୍ୟ ନିରୀକ୍ଷଣ କରି ପାରୁଥିଲେ । ପରୀଗପ ଗୁଡ଼ିକୁ ଶୁଣୁ ଶୁଣୁ ସେମାନଙ୍କର କଳ୍ପନାମାନେ କେତେ କୁଆଡ଼କୁ ଖେଦିଯାଇ ପାରୁଥିଲେ; ସେମାନେ ନିଜେ ମଧ୍ୟ କେତେ କେତେ ଗପ ଫାନ୍ଦି ଦେଉଥିଲେ । ସେମାନଙ୍କର ଜିଭ ଉପରକୁ ବଳେ ବଳେ କବିତାର ଧାଡ଼ୀମାନ ଆସି ପହଞ୍ଚି ଯାଉଥିଲା । ସେମାନେ ମହୋଲ୍ଲାସରେ କେଡ଼େ ମୁଖର ହୋଇ ଉଠୁଥିଲେ । ଏହି ସବୁକିଛିରେ ଶିକ୍ଷକ ସଙ୍ଗରେ ହିଁ ରହିଥିଲେ । ନୂତନ କରି ଉଦ୍‌ଭାବିତ ସେହି ଧାଡ଼ୀଗୁଡ଼ିକୁ ଉଚ୍ଚାରଣ କରି ସେମାନେ ବୁଦାମାନଙ୍କ ଭିତରେ ଡ଼େଇଁ ବୁଲୁଥିଲେ । ....

ପିଲାମାନଙ୍କର ନିଜ ତିଆରି "ସ୍ୱପ୍ନଘର''ଟିଏ ମଧ୍ୟ ଥିଲା, - ଗୁମ୍ଫାଟିଏ ପରି ଏହି ଘରଟି, ଯାହାଭିତରେ କି ସେମାନେ ନିଜ ହାତରେ ଚୂଲାଟିଏ ବି ତିଆରି କରି ରଖିଥିଲେ । ବା, ଯେତେବେଳେ ଶରତକାଳର ବର୍ଷାପାଣି ବାହାରେ ସ୍ରୋତ ହୋଇ ବହିବାରେ ଲାଗୁଥିଲା, ସେତେବେଳେ ସେମାନେ ଏକାଠି ଗୋଟିଏ ଭଙ୍ଗା ପୁରୁଣା କୁଡ଼ିଆରେ ଯାଇ ଆଶ୍ରୟ ନେଉଥିଲେ । ପ୍ରକୃତିର ସଙ୍ଗୀତକୁ ଶୁଣୁଥିଲେ ଓ ଗ୍ରାମୋଫୋନ୍ ରେକର୍ଡ଼ଗୁଡ଼ିକର ସଂଗୀତ ମଧ୍ୟ ଶ୍ରବଣ କରୁଥିଲେ, - ଆପେ ଗୀତ ଗାଉଥିଲେ, କାଗଜ ଉପରେ ଛବିମାନ ଗାରେଉଥିଲେ । ଛବି ଅଙ୍କନ କରିବା ହିଁ ସେମାନଙ୍କର ଗୋଟିଏ ବିଶେଷ ଭାବରେ ପ୍ରିୟ କ୍ରୀଡ଼ା ସଦୃଶ ହୋଇ ରହିଥିଲା । ମାତ୍ର, ଏଗୁଡ଼ିକୁ ପିଲାମାନଙ୍କର ମନକୁ ବହଲାଇ ରଖିବାର ଗୋଟିଏ ଗୋଟିଏ ମାଧ୍ୟମ ବୋଲି ଆଦୌ କହି ହେବନାହିଁ । ସୁଖୋମ୍‌ଲିନ୍‌ସ୍କି କହୁଥିଲେ: "ଯେପର୍ଯ୍ୟନ୍ତ ଗୋଟିଏ ପିଲା ଶବ୍ଦମାନଙ୍କର ସ୍ୱାଦ ଲାଭ କରି ନପାରିଛି, ସେପର୍ଯ୍ୟନ୍ତ ତାକୁ ଲେଖିବା କିମ୍ବା ପଢ଼ିବା ବିଷୟରେ ଶିକ୍ଷା ଦେବାରେ କୌଣସି ଲାଭ ହେବନାହିଁ । ଏବଂ, ଶିକ୍ଷକମାନେ ଯେତେବେଳେ ସେହି କଥାଟିକୁ କରନ୍ତି, ସେତେବେଳେ ସେମାନେ ନିଜର ସେହି ପିଲାମାନଙ୍କୁ ଏକ ଅତ୍ୟନ୍ତ ନୀରସ ନିଷ୍ପେଷଣ ଭିତରକୁ ହିଁ ଠେଲିଦେବାରେ ଲାଗିଥାନ୍ତି ।''

ପଢ଼ିଆଯାକ ସୂର୍ଯ୍ୟାଲୋକ ଚକଚକ କରୁଥିବ ଓ "ଆନନ୍ଦମୟ

ପାଠଶାଳା''ର ପିଲାମାନେ ସେଇଆଡ଼କୁ ଚାହିଁ ରହିଥିବେ, ଚଢ଼େଇମାନଙ୍କର ଚେଁ ଚାଁ'କୁ ଶୁଣୁଥିବେ, ଝିଣ୍ଟିକାମାନଙ୍କର ଝିଁ ଝିଁକୁ ମଧ୍ୟ । ....ତା'ପରେ ସେମାନେ ସେହି ପଡ଼ିଆଗୁଡ଼ିକୁ ଆଙ୍କିବାରେ ଲାଗିଯିବେ ଓ ଛବିଗୁଡ଼ିକ ତଳକୁ "ପଡ଼ିଆ" ବୋଲି ଗୋଟିଏ ଶୀର୍ଷକ ଲେଖିବେ । ପ୍ରତ୍ୟେକଟି ଶବ୍ଦ ତଥା ପ୍ରତ୍ୟେକଟି ଅକ୍ଷର, ସେଗୁଡ଼ିକର ଆବିଷ୍କାର ପଛକେ ଏକ ଉନ୍ମାଦକ ଶିହରଣ ମଧ୍ୟ ଅବଶ୍ୟ ରହିଥିବ । କାରଣ, ସେହି ପିଲାମାନେ ସର୍ବପ୍ରଥମେ କୌଣସି ବହିରେ ନୁହେଁ, ସତକୁ ସତ ଅରଣ୍ୟ ଏବଂ ପ୍ରାନ୍ତରଗୁଡ଼ିକରେ ବୁଲୁଥିବା ସମୟରେ ହିଁ ସେଗୁଡ଼ିକର ସମ୍ମୁଖୀନ ହୋଇଥିବେ ।

ଭ୍ରମଣ ଦ୍ୱାରା ପ୍ରକୃତି ସହିତ ପରିଚୟ, - ତାହାରି ଫଳରେ ହିଁ ପିଲାମାନଙ୍କ ଖାତାଭିତରେ ଅଧିକରୁ ଅଧିକ ଶବ୍ଦ ଆସି ପ୍ରବିଷ୍ଟ ହୋଇ ଯାଉଥାନ୍ତି । ଗାଆଁ, ଓକ୍ ଗଛ, ଲତାଗୁଳ୍ମ, କାଠ, ଧୂଆଁ, ବରଫ ପ୍ରଭୃତି ଯାବତୀୟ ଶବ୍ଦ, - ଏଗୁଡ଼ିକୁ ସେମାନେ କୌଣସି ସଂକୀର୍ଣ୍ଣ ଶ୍ରେଣୀ ଗୃହରେ କଳାପଟା ଉପରେ, ଚକ୍ ସାହାଯ୍ୟରେ ଅଥବା କଟା କାଗଜର ମଡ଼େଲ୍‌ମାନଙ୍କ ସାହାଯ୍ୟରେ ନୁହେଁ, ଏହି ସବୁକିଛି ଠାରୁ ବହୁଦୂରରେ ହିଁ ଶିକ୍ଷା କରିଥାନ୍ତି ।

ଏହି କୌଶଳଟିକୁ କୌଣସି ପୁରୁଣା କିଛିର ପୁନରାବୃତ୍ତି ବୋଲି କୁହାଯିବ ନା ତାହା ଆମକୁ ଶିକ୍ଷାବିତ୍ ରୁସୋଙ୍କର କଥାକୁ ଆଣି ମନେ ପକାଇଦେବ ? ପଡ଼ିଆ, ଫୁଲ ଓ ପେଁକାଳୀର ଏକ ସମାଗମ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ଏକ ଗ୍ରାମ୍ୟ ଦୃଶ୍ୟପଟକୁ ପୁନର୍ବାର ସମ୍ଭବ କରି ଆଣିବାର ଚେଷ୍ଟା କରି (ସୁଖୋମ୍ଲିନ୍‌ସ୍କିଙ୍କର ସବୁ ପିଲା ତୃଣର ପତ୍ର ଦ୍ୱାରା ପେଁକାଳୀ ତିଆରି କରି ବଜାଇ ପାରୁଥିଲେ ) ସେହିପରି କିଛି କରି ହେବ କି ? ଏଇଟି ସମ୍ଭବ ହୋଇ ପାରୁଥିଲା ବୋଲି କେହି ଯେପରି ସଂଶୟଚିତ୍ତ ହୋଇ ହସି ନଦିଅନ୍ତି । ସୁଖୋମଲିନ୍‌ସ୍କି ଆପଣାର ଶିକ୍ଷଣପ୍ରଣାଳୀ ଗୁଡ଼ିକରେ ଶିକ୍ଷା ଦେବାର ସେହି ଅକାଟ୍ୟ ଅଦୃଶ୍ୟ-ସତ୍ୟଟିକୁ ଆଣି ପହଞ୍ଚାଇ ପାରିଥିଲେ ; - ଖୁବ୍ କମ୍‌ସଂଖ୍ୟକ ଶିକ୍ଷକ ହିଁ ଯେଉଁଭଳି ସାହସ କରି ପାରିଥାନ୍ତି । ଠିକ୍ ଯେପରି ମନୁଷ୍ୟଦେହରେ ଥିବା ହୃଦ୍‌ଯନ୍ତ୍ର ଅଥବା ମସ୍ତିଷ୍କରେ ଏକ ଜଟିଳ ଅପରେଶନ କରିବାକୁ ଖୁବ୍ କମ୍ ଶଲ୍ୟଚିକିତ୍ସକ ହିଁ ସାହସ କରନ୍ତି । ଗୋଟିଏ ପିଲାର ଜୀବନରେ ରହିଥିବା ଏହି ବିଶେଷ କ୍ଷେତ୍ରଟି, - ଯେଉଁ ବିଷୟଟିକୁ ନେଇ, ଏତେ ଏତେ କଥା ଲେଖାଯାଉଛି, ଏତେ ଟିକିନିଖି

ଗବେଷଣାମାନ କରାଯାଉଛି ଏବଂ ତଥାପି ଏତେ ବହୁସଂଖ୍ୟକ ଶିକ୍ଷାବିଶେଷଜ୍ଞ ପ୍ରଧାନତଃ ଅନ୍ଧାର ଭିତରେ ବସ୍ତୁତଃ ଅଣ୍ଡାଳି ହେବାରେ ଲାଗିଛନ୍ତି, - ସେହି କ୍ଷେତ୍ରଟି ହେଉଛି ଭାବସଂବେଗ ଗୁଡ଼ିକର କ୍ଷେତ୍ର, ଅବଚେତନର କ୍ଷେତ୍ର । ସୁଖୋମ୍ଲିନ୍ସ୍କି କହୁଥିଲେ ଯେ, ବିଚିତ୍ର, ଅବାସ୍ତବ ଅଥଚ ବିସ୍ମୟ-ଉଦ୍ଦୀପକ ପରୀଗପ ଗୁଡ଼ିକର କଥା ଶୁଣି ଗୋଟିଏ ପିଲାର ମନ ଭିତରେ ଏକ ସୌନ୍ଦର୍ଯ୍ୟାନୁଭବର ଦ୍ୱାର ଉନ୍ମୋଚିତ ହୋଇ ଯାଇଥାଏ, ଜୀବନ୍ତ ସତ୍ୟର ମଧ୍ୟ ଏକ ସ୍ପନ୍ଦନକୁ ସତେଅବା ଛୁଇଁ ପାରିବା ଭଳି ଅନୁଭୂତ ହେଉଥାଏ । ଯାହା ପିଲାଟିର ହୃଦୟତନ୍ତ୍ରୀ ଗୁଡ଼ିକୁ ପ୍ରକୃତରେ ଛୁଇଁ ନପାରିଲେ, ତେବେ ଜୀବନର ଭଳି ଭଳି ସତ୍ୟ ବିଷୟରେ ବିସ୍ତାରିତ ବିଶ୍ଳେଷଣଗୁଡ଼ିକୁ ବାଢ଼ିଦେଲେ ତାଦ୍ୱାରା ପିଲା ଉପରେ ଆଦୌ କୌଣସି ଆନ୍ଦୋଳନର ସୃଷ୍ଟି ହୁଏନାହିଁ । ଗୋଟିଏ ପ୍ରାଚୀନ ପରୀଗଳ୍ପର କଥା ଅନୁସାରେ ସୂର୍ଯ୍ୟପୃଷ୍ଠରେ ଦୁଇଜଣ କମାର ବାସ କରୁଥିଲେ, - ଏହି ବାକ୍ୟଟିକୁ ଶୁଣିବା ମାତ୍ରକେ ଗୋଟିଏ ସାନ ପିଲାର ମନଃପଟରେ ଏପରି ଚିତ୍ରଟିଏ ଉଦ୍‌ଘାଟିତ ହୋଇପାରେ, - ଯାହାକି ସୂର୍ଯ୍ୟପୃଷ୍ଠର ଗଠନ ବିଷୟରେ କୌଣସି ଭୌଗୋଳିକ ବର୍ଣ୍ଣନା ଦେବା ଦ୍ୱାରା କଦାପି ସମ୍ଭବ ହୁଅନ୍ତା ନାହିଁ । ଏବଂ, କୌଣସି ଗୋଟିଏ ପିଲା ବି ଯେ କମାରମାନଙ୍କ ସମ୍ବନ୍ଧରେ ରହିଥିବା ସେହି ଗଳ୍ପଟିକୁ ବିଶ୍ୱାସ କରେନାହିଁ, ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ ।

ଭାବସଂବେଗର ଏହି ଉପାଦାନଟିକୁ ସୁଖୋମ୍ଲିନ୍ସ୍କି ଶିକ୍ଷାଦାନର ଅନ୍ୟ ମୌଳିକ ବିଭବଗୁଡ଼ିକର ଏକ ପରିପୂରକ ବୋଲି ବିଶ୍ୱାସ କରୁନଥିଲେ । ସିଏ ତାହାକୁ ବସ୍ତୁତ ଗୋଟିଏ ସାଧନ ବୋଲି ଗ୍ରହଣ କରୁଥିଲେ ଯାହାକି ପିଲାର ମନରେ ଆଗ୍ରହର ଉଦ୍ଦୀପନ ଘଟାଇଥାଏ, - କେବଳ ତାହାରିଦ୍ୱାରା ହିଁ ପିଲାର ମନ ଆପଣାକୁ ପ୍ରସାରିତ କରିଦେବାର ସୁଯୋଗଟିକୁ ଲାଭ କରିଥାଏ ।

"ଶିଶୁଚିତ୍ତର ସେହି ଭାବସଂବେଗର ଦିଗଟିକୁ ଜାଗୃତ କରି ଆଣିବା" - ସୁଖୋମ୍ଲିନ୍ସ୍କି ଏହାକୁ ହିଁ ନିଜ ଶିକ୍ଷାଦାନର ପଦ୍ଧତିରୂପେ ଗ୍ରହଣ କରିଛନ୍ତି । ତାଙ୍କର ସହକର୍ମୀମାନେ ଅର୍ଥାତ୍ ପାଭ୍‌ଲିଶ୍ ବିଦ୍ୟାଳୟର ଅନ୍ୟ ଶିକ୍ଷକମାନେ ମଧ୍ୟ ସେଇଟିକୁ ଅନୁସରଣ କରୁଛନ୍ତି । ସିଧା ପିଲାମାନଙ୍କର ମାନସିକ ସାମର୍ଥ୍ୟଗୁଡ଼ିକୁ କ୍ରିୟାଶୀଳ କରି ନଦେଇ ସେମାନେ ସେମାନଙ୍କର ଭାବଗତ ଅନୁସ୍ପନ୍ଦନ ଗୁଡ଼ିକୁ ଜାଗୃତ କରି ଆଣିବାଦ୍ୱାରା ହିଁ ସେମାନଙ୍କର ମାନସିକ ବିକାଶ କରାଉଛନ୍ତି ।

ଭାବସଂବେଗ ଗୁଡ଼ିକର ମାଧ୍ୟମରେ ମନଃକ୍ଷେତ୍ରର ବିକାଶ କରାଉଛନ୍ତି ।

ପ୍ରଥମେ ହୁଏତ ବୋଧ ହୋଇପାରେ ଯେ ଶିକ୍ଷକର ଜ୍ଞାନପ୍ରଦାନ ଠାରୁ ଜଣେ ଛାତ୍ରର ଜ୍ଞାନଗ୍ରହଣ ପର୍ଯ୍ୟନ୍ତ ସରଳରେଖା ପରି ହିଁ ଆଗରୁ ଏକ ବାଟ ପଡ଼ି ରହିଥାଏ । କିନ୍ତୁ ବାସ୍ତବ କ୍ଷେତ୍ରରେ, ସବୁଠାରୁ ଅଳପ ବୋଲି ମନେ ହେଉଥିବା ବାଟଟି ହୁଏତ ଦୀର୍ଘତମ ବୋଲି ହିଁ ପ୍ରମାଣିତ ହୁଏ, - ସବୁଠାରୁ କଷ୍ଟସାଧ୍ୟ ବୋଲି ମଧ୍ୟ ଜଣାପଡ଼େ, - କାରଣ ଭାବସଂବେଗ ଗୁଡ଼ିକର ଆଦୌ କୌଣସି ସଞ୍ଚାଳନ ହୋଇନଥାଏ । ବରଂ, ଶିକ୍ଷକର ଭାବସଂବେଗ ଗୁଡ଼ିକୁ ମାଧ୍ୟମ କରି ଯେଉଁ ବାଟଟି ତା' ଜ୍ଞାନକ୍ଷେତ୍ରଟିରୁ ଗୋଟିଏ ପିଲାର ଭାବସଂବେଗ ଗୁଡ଼ିକର ମଧ୍ୟଦେଇ ତା' ଜ୍ଞାନଆହରଣର ଗୃହଯାଏ ପଡ଼ିଥାଏ, ସେଇଟି ହିଁ କାର୍ଯ୍ୟତଃ ସବୁଠାରୁ କମ୍ ବାଟ ବୋଲି ସାବ୍ୟସ୍ତ ହୋଇଥାଏ ।

ତାଙ୍କର ଛାତ୍ରମାନେ "ଆନନ୍ଦ-ବିଦ୍ୟାଳୟ"ର ସୋପାନରୁ ପ୍ରଥମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇ ଯାଉଥିବା ସମୟରେ ସୁଖୋମ୍ଲିନ୍ସ୍କି ଲେଖିଛନ୍ତି ଯେ, ତାଙ୍କର ପିଲାମାନେ ଆଉ କୌଣସି ପାଠକୁ ଘୋଷି ଆୟତ୍ତ କରିବେନାହିଁ, - ଏକ ଗତିଚଞ୍ଚଳ ବୁଦ୍ଧିମତ୍ତାର ଜୀବନ ମଧ୍ୟଦେଇ ସେମାନେ ଅଗ୍ରସର ହେବେ, ଯେଉଁଥିରେ କି ବହୁବିଧ ଖେଳ, ପରୀଗଳ୍ପ, ସୌନ୍ଦର୍ଯ୍ୟ, ସଂଗୀତ, କଳ୍ପନା ତଥା ସୃଜନଶୀଳତା ଭରପୂର ହୋଇ ରହିଥିବ । ତାଙ୍କର ଛାତ୍ରମାନଙ୍କର ପିଠିରେ ମୋଟେ କୌଣସି ବସ୍ତା ଲଦା ହୋଇନାହିଁ, ଯେଉଁଗୁଡ଼ିକୁ ହିଁ ଯଥାସମ୍ଭବ ଅଧିକ ଜ୍ଞାନବସ୍ତୁ ଦ୍ୱାରା ଭରିଦେବାକୁ ପଡ଼ିବ । ବସ୍ତୁତଃ, ସେମାନେ କୌଣସି ଜ୍ଞାନର ଉପାର୍ଜନ କରିବା ସକାଶେ ମଧ୍ୟ ପାଠଶାଳାକୁ ଆସିନାହାନ୍ତି । ସୁଖୋମ୍ଲିନ୍ସ୍କିଙ୍କର ବିଚାର ଅନୁସାରେ ଗୁଡ଼ାଏ କାଳ୍ପନିକ ଲକ୍ଷ୍ୟକୁ ଆଗରେ ରଖି ତାହାରି ଅନୁସାରେ କାମ କରିବା, - ଗୋଟିଏ ପିଲାର ଦିଗ୍‌ବଳୟ ମଧ୍ୟରେ ଏସବୁର କୌଣସି ସ୍ଥାନ ହିଁ ରହିବନାହିଁ । ପିଲାମାନେ ନିଜର ବୁଦ୍ଧିକୁ କ୍ରିୟାଶୀଳ କରିବେ ଓ ସେଥିରୁ ଆନନ୍ଦଲାଭ କରିବେ, ପ୍ରୟାସଗୁଡ଼ିକୁ କରି ପାରିଲେ ସେମାନେ ସେହି ଆନନ୍ଦର ବି ଅବଶ୍ୟ ଅଧିକାରୀ ହେବେ, - ପିଲାମାନଙ୍କ ଭିତରେ କେବଳ ସେହି ଆସ୍ପୃହାଟି ରହିଥିବ । ଏବଂ, ସେମାନେ ତାହାରି ବଳରେ ହିଁ ଅଗ୍ରଗତି କରୁଥିବେ । ତେଣୁ, ଖୁସୀ ହେବା ହେଉଛି ଅସଲ ଲକ୍ଷ୍ୟ, - ଗୋଟିଏ ବିଦ୍ୟାଳୟ ସେମାନଙ୍କୁ କେବଳ ଏହି ଖୁସୀଟିକୁ ହିଁ ଯୋଗାଇ ଦେଇ ପାରୁଥିବ ।

ଅଧିକାଂଶ ସମୟରେ ପାଠଶାଳାକୁ ଆସିବା ପରେ ପିଲାମାନେ ପିଲାବେଳର ସେହି ଜାଦୁକରୀ ଅନୁଭବଟିକୁ କିଛିତ୍ ପରିମାଣରେ ହରାଇ ଦେଇଥାନ୍ତି । ସୁଖୋମ୍ଲିନ୍ସ୍କିଙ୍କର ଦାୟିତ୍ୱରେ ରହିଥିବା ପିଲାମାନେ ବରଂ ପାଠଶାଳାକୁ ଆସିବାଦ୍ୱାରା ହିଁ ଯଥାର୍ଥରେ ସେହି ଆନନ୍ଦର ଅଧିକାରୀ ହୋଇଥାନ୍ତି । ଏହି କ୍ଷେତ୍ରରେ ବିଦ୍ୟାଳୟ ସେହି ଆନନ୍ଦକୁ ଆଦୌ ଅପହରଣ କରି ନେଇ ଯାଏନାହିଁ, - ତାହାକୁ ଅଧିକକାଳ ସ୍ଥାୟୀ ହିଁ କରେ । ପୁନଶ୍ଚ, ନାନା କାରଣବଶତଃ ଯେଉଁ ପିଲାଏ ଘରେ ସେହି ଆନନ୍ଦଗୁଡ଼ିକରୁ ବଞ୍ଚିତ ହୋଇ ରହିଥିଲେ, ସେମାନେ ମଧ୍ୟ ଏହି ବିଦ୍ୟାଳୟକୁ ଆସି ସେଗୁଡ଼ିକୁ ଲାଭ କରନ୍ତି ।

ତାଙ୍କର ବିଦ୍ୟାଳୟଟିରେ ପ୍ରଥମ ତିନି କ୍ଲାସ୍‌ର ପିଲାମାନେ ପୂରା ମାସ ମାସ ଧରି ରବିନ୍‌ସନ୍ କ୍ରୁସୋଙ୍କର କାହାଣୀଟିକୁ ନେଇ ଖେଳ ଖେଳନ୍ତି, - ଆପଣା ମନରୁ ମଧ୍ୟ ସେମାନେ କେତେ କେତେ ନୂଆ ଖେଳର ଉଦ୍‌ଭାବନ କରିଥାନ୍ତି, କାଠି, ଡାଙ୍ଗ ଓ ଆହୁରି କେତେ କ'ଣ ଦେଇ ଲିଲିପୁଟମାନେ ବାସ କରୁଥିବା ଦ୍ୱୀପଟିଏ ତିଆରି କରନ୍ତି । ବାହାରୁ ଗୋଲାପ ବୁଦାମାନ ଆଣି ସେଗୁଡ଼ିକୁ ଏଠାରେ ପୋତିଦେଇ ଉଦ୍ୟାନଟିଏ ସୃଜି ଦିଅନ୍ତି, ରଙ୍ଗକାଚ ଦେଇ ରାଜପ୍ରସାଦମାନ ଗଢ଼ନ୍ତି । ଏବଂ, ପୁରାତନ ଗଳ୍ପଗୁଡ଼ିକୁ ବି ଶୁଣିବାରେ ଲାଗିଥାଆନ୍ତି: କେହି ବଡ଼ପାଟିରେ ପଢ଼େ ଓ ଆଉସମସ୍ତେ ଶୁଣନ୍ତି । ହଁ, "ପରୀଗପର ପ୍ରକୋଷ୍ଠ" ବୋଲି ସ୍ୱତନ୍ତ୍ର ବଖରାଟିଏ ମଧ୍ୟ ରହିଥାଏ, - ସେଠାରେ ବାହାରୁ ଦେଖଣାହାରୀ ହୋଇ ଆସିଥିବା ଜଣେ ପରିଦର୍ଶକ କେତେ କେତେ କାହାଣୀକୁ ନିଜ ଆଖିରେ ଦେଖିବାକୁ ମଧ୍ୟ ପାଇଯାଏ । .... ଏଠାରେ ଉଭୟ ପୁଅ ଓ ଝିଅମାନେ ଖେଳନାଗୁଡ଼ିକୁ ନେଇ ବି ଖେଳୁଥାନ୍ତି । କଣ୍ଢେଇମାନଙ୍କ ପଛରେ ଲାଗିଥାନ୍ତି, ପ୍ରତ୍ୟେକ ପିଲାର ସ୍ୱତନ୍ତ୍ର ଭାବରେ ପ୍ରିୟ କଣ୍ଢେଇଗୁଡ଼ିକ ମଧ୍ୟ ସବୁବେଳେ ରହିଥାଏ । ହଁ, ପିଲାମାନେ ଦଶବର୍ଷ ହେବାଯାଏ ଖେଳନାଗୁଡ଼ିକୁ ନେଇ ଖେଳନ୍ତି, - ତଥାପି ପ୍ରଥମ ଶ୍ରେଣୀରେ ଆସି ପ୍ରବେଶ କରିବା ମାତ୍ରକେ ହିଁ ବଗିଚାରେ କାମ ବି କରନ୍ତି । ପ୍ରତ୍ୟେକର ନିଜ ନିଜ କିଆରୀମାନ ରହିଥାଏ । ନିଜ ହାତକୁ ବ୍ୟବହାର କରି ମଧ୍ୟ କେତେ କ'ଣ ତିଆରି କରନ୍ତି । ସେମାନେ ଗଛଗୁଡ଼ିକର, ଚଢ଼େଇମାନଙ୍କର, ମାଛଙ୍କର ଯତ୍ନ ନିଅନ୍ତି । କାରଖାନାର ନମୁନାମାନ ତିଆରି କରନ୍ତି ଓ କେତେ କେତେ ମଡ଼େଲ୍ ଗଢ଼ି ଥୋଇ ଦିଅନ୍ତି ।

ଚେସ୍ ଖେଳନ୍ତି (ଜଣେ ପିଲାର ମଥାଶକ୍ତି ତଥା ସ୍ମୃତିଶକ୍ତିର ବିକାଶ ସକାଶେ ଚେସ୍ ଖେଳ ଅତ୍ୟନ୍ତ ଆବଶ୍ୟକ)। ଏବଂ, ଗଣିତ ଓ ବିଭିନ୍ନ ଶବ୍ଦକୁ ନେଇ ମଧ୍ୟ କେତେ ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥାଏ ।

ଖେଳନାମାନଙ୍କୁ ନେଇ ଏତେ ସମୟ ବିତାଉ ଥିବାରୁ ସୁଖୋମ୍ଲିନ୍‌ସ୍କିଙ୍କର ପିଲାମାନେ ଅନ୍ୟ ନାନାବିଧ କାର୍ଯ୍ୟରେ ଆପଣାକୁ ନିୟୋଜିତ କରି ପାରୁନ୍ତିନାହିଁ ବୋଲି କହିବାଦ୍ୱାରା ଆଦୌ ସତ୍ୟକଥା କୁହା ଯିବନାହିଁ । ବରଂ ପରୀକାହାଣୀ, ଖେଳ ମାଧ୍ୟମରେ ସୃଜନଶୀଳତାର ଜାଗରଣ ଘଟାଇବା, ଲୋକଗଳ୍ପ ଗୁଡ଼ିକର ନାନା ଉପାଦାନ, - ଖାସ୍ ଏହିଗୁଡ଼ିକ ହିଁ ପିଲାମାନଙ୍କୁ ସବୁଠାରୁ ଅଳ୍ପ ସମୟରେ ପିଲାମାନଙ୍କୁ ନେଇ ଅଦ୍ୟତମ ବିଜ୍ଞାନ, ବଡ଼ ବଡ଼ ଓ ବ୍ୟାପକ କେତେ ମନ କେତେ କଳ୍ପନାର କ୍ଷେତ୍ରମାନଙ୍କରେ ପହଞ୍ଚାଇ ଦେଇଥାନ୍ତି, - କାରଣ, ପିଲାମାନଙ୍କର ଭାବିବାର ପ୍ରକ୍ରିୟାଗୁଡ଼ିକୁ ଜାଗ୍ରତ, ବିକଶିତ ଏବଂ ସମୃଦ୍ଧ କରି ଆଣିବାରେ ସେମାନେ ପ୍ରଭୂତ ଅନୁକୂଳତା ଆଣି ଦେଇଥାଆନ୍ତି ।

ଏବେ ତ ଚତୁର୍ଦ୍ଦିଗରୁ ଶିକ୍ଷାଦାନରୁ ଅଧିକ ଓ ଆହୁରି ଅଧିକ ପରିମାଣରେ ଫଳପ୍ରଦ କରିବା ନିମନ୍ତେ ବହୁତ ଦାବୀ କରାଯିବାରେ ଲାଗିଛି, କିନ୍ତୁ ସେହି ଫଳପ୍ରଦତାକୁ ସାଧାରଣତଃ ସମସ୍ତେ ଯାବତୀୟ ଅର୍ଥରେ 'ନିଷ୍କ୍ରିୟତା' ବୋଲି ବୁଝୁଛନ୍ତି କି ?

ସୁଖୋମ୍ଲିନ୍‌ସ୍କିଙ୍କର ପିଲାମାନେ କେତେବେଳେ ହେଲେ ଆଦୌ ତୁରୁ ତୁରୁ ହେଉନଥିଲେ । ସେମାନଙ୍କର ଶିକ୍ଷକ ଧରାବନ୍ଧା ନିୟମଗୁଡ଼ିକର ବାହାରକୁ ଯାଇ ମଧ୍ୟ ସେମାନଙ୍କର ମାନସିକ ଭାବାବେଗଗତ ଭୂମିଗୁଡ଼ିକୁ ସର୍ବଦା ସ୍ଥିର କରି ରଖୁଥିଲେ । ସେମାନଙ୍କୁ ଅତିବାହିତ ଅବସରଗୁଡ଼ିକର ପୂର୍ଣ୍ଣ ଅନୁଭୂତି ଆଣି ଦେଉଥିଲେ, ସେମାନଙ୍କ ଲାଗି ସ୍ପଷ୍ଟ ଭାବରେ ଭାବିବାର ଅବକାଶଗୁଡ଼ିକୁ ଉନ୍ମୁକ୍ତ କରି ରଖୁଥିଲେ, ନିଜର ଶକ୍ତି ଉପରେ ସେମାନଙ୍କର ବିଶ୍ୱାସକୁ ଅତୁଟ ରଖୁଥିଲେ । ଅଧିକାଂଶ ସମୟରେ ବିଦ୍ୟାଳୟର ନିର୍ଘଣ୍ଟି ସହିତ ଅଭ୍ୟସ୍ତ ହୋଇ ପାରିବାକୁ ସେମାନଙ୍କୁ ପୂରା ତିନି ଚାରି ମାସ ସମୟ ମିଳି ଯାଉଥିଲା ଏବଂ, - ମୂଳରୁ, ଅନ୍ୟ ବିଦ୍ୟାଳୟଗୁଡ଼ିକ ପରି ଏକାବେଳେକେ ପ୍ରଥମ ଦିନରୁ ହିଁ ସେମାନଙ୍କୁ ଆଦୌ ମଣ କରି ରଖାଯାଉ ନଥିଲା । ପ୍ରଥମେ ପ୍ରଥମେ ତ ଏଭଳି ହେଉଥିଲା ଯେ, ପ୍ରଥମ

ଅବସ୍ଥାରେ କେତେକ ପିଲା ଯେତେବେଳେ ଇଚ୍ଛା କରୁଥିଲେ, ସେତେବେଳେ ହିଁ ସେମାନଙ୍କୁ ଘରକୁ ଯିବା ସକାଶେ ଅନୁମତି ମିଳି ଯାଉଥିଲା । କାରଣ, ବସ୍ତୁତଃ ଶିକ୍ଷକମାନେ ସେହି ପିଲାମାନଙ୍କୁ ଶିକ୍ଷା ହିଁ ଦେଉଥିଲେ, ସେମାନଙ୍କର ଅଭ୍ୟାସଗୁଡ଼ିକୁ ହାତୁଡ଼ିରେ ପିଟି ମୋଟେ ଭାଙ୍ଗିଦେବାକୁ ଇଚ୍ଛା କରୁନଥିଲେ । ସୁଖୋମ୍ଲିନ୍‌ସ୍କିଙ୍କର ପ୍ରାୟ ଅଧେ ପାଠ ଶ୍ରେଣୀଗୃହର ବାହାରେ ହିଁ ପଢ଼ା ଯାଉଥିଲା, - କେଉଁଠି ଏକ ଅନ୍ୟ ସ୍ଥାନରେ କିମ୍ବା କିଆରୀ ଭିତରେ କାରଣ ସିଏ ବିଶ୍ୱାସ କରୁଥିଲେ ଯେ ପାଠରେ ପଛୁଆ ହୋଇ ରହି ଯାଉଥିବା ପିଲାମାନଙ୍କ ଭିତରୁ ଶହେରେ ପଞ୍ଚାଅଶୀ ଭାଗ କୌଣସି ନା କୌଣସି ଅନ୍ତର୍ଣ୍ଣିତ ଦେହ-ବେରାମ ହେତୁ ହିଁ ପଛରେ ରହି ଯାଉଥିଲେ ଏବଂ ସେଥିଲାଗି ସେ ପିଲାମାନଙ୍କ ସ୍ୱାସ୍ଥ୍ୟର ଟିକିନିଖି ଯାବତୀୟ ଯତ୍ନ ନେଉଥିଲେ । ତାଙ୍କ ଜିମାରେ ଥିବା ସବୁଯାକ ପିଲା ଇସ୍କୁଲକୁ ଆସିବା ପୂର୍ବରୁ ଘରେ ଭଲ ଭାବରେ ଜଳଖିଆ ଖାଇ ଆସୁଥିଲେ, ଖରାବେଳେ ବାହାରେ କିଛିସମୟ ପାଇଁ ଶୋଉଥିଲେ ଏବଂ ସ୍କୁଲର ବଡ଼ ପିଲାମାନେ ତିଆରି କରି ଦେଇଥିବା ବିଶେଷ କୌଣସି ବାହାରଘର ମାନଙ୍କରେ ପ୍ରଦତ୍ତ ପାଠଗୁଡ଼ିକୁ ପ୍ରସ୍ତୁତ କରୁଥିଲେ । ସେହି ପିଲାମାନଙ୍କର ଗାଲଗୁଡ଼ିକ କେବେହେଲେ ନିଷ୍ପ୍ରଭ ଦେଖା ଯାଉନଥିଲା, ଆଖି ତଳକୁ ନେଙ୍ଗରା ବୋହି ଚିହ୍ନ ହୋଇଯାଉ ନଥିଲା । ଗାଲଗୁଡ଼ିକ ଗୋଲାପଫୁଲ ପରି ଉଜ୍ଜ୍ୱଳ ଦିଶୁଥିଲେ, ନିଳିଆ କୋଳିଗୁଡ଼ିକ ପରି ଚକଚକ ଦେଖା ଯାଉଥିଲେ । ପିଲାଙ୍କର ବୁଦ୍ଧିଗତ ବିକାଶ ପାଇଁ ସୁଖୋମ୍ଲିନ୍‌ସ୍କି ସେମାନଙ୍କୁ ଯେ କେବଳ ପରୀକଥାମାନ କହୁଥିଲେ ତା' ନୁହେଁ, ତଦ୍ୱାରା ସେମାନଙ୍କର ସ୍ୱାସ୍ଥ୍ୟ ମଧ୍ୟ ଖୁବ୍ ଭଲ ରହୁଥିଲା । କାରଣ, ମନର ଖୁସୀ ସହିତ ଦୈହିକ ସ୍ୱାସ୍ଥ୍ୟର ତ ସର୍ବଦା ଏକ ନିବିଡ଼ ସମ୍ପର୍କ ମଧ୍ୟ ରହିଥାଏ । ଗଳ୍ପ ଶୁଣି ପିଲାମାନଙ୍କର ବିରସଭାବ ଚାଲିଯାଏ ଏବଂ ତେଣୁ ଦେହ ମଧ୍ୟ ନୀରୋଗ ରହେ । ତାଙ୍କର ସେହି ପିଲାମାନେ ଯେଉଁ ଅଭୂତପୂର୍ବ ସଫଳତାର ପରିଚୟ ଦେଇଥିଲେ, ସେଥିଲାଗି ସୁଖୋମ୍ଲିନିସ୍କି ଗର୍ବ ହିଁ ଅନୁଭବ କରୁଥିଲେ । ତୃତୀୟ ଶ୍ରେଣୀଟି ପରେ ତାଙ୍କର କୌଣସି ଗୋଟିଏ ପିଲା ମଧ୍ୟ ସର୍ଦ୍ଦି ବା କାଶରୁ କଷ୍ଟ ପାଉନଥିଲା, ସମ୍ଭବତଃ ଏହାକୁ ହିଁ ତାଙ୍କର ସର୍ବାଧିକ ବିଜୟ ବୋଲି କୁହାଯିବ । ପିଲାମାନଙ୍କୁ ସେ କେବେ ହେଲେ କମ୍ ନମ୍ବର ଦେଉନଥିଲେ । ସେମାନେ ପଞ୍ଚମ ଶ୍ରେଣୀକୁ ଯିବା ପର୍ଯ୍ୟନ୍ତ ଜଣେ କେହିହେଲେ ଖରାପ ନମ୍ବର ପାଉନଥିଲେ । ଗୋଟିଏ କୁନି ପିଲାକୁ କିପରି ଖରାପ ନମ୍ବର ଦେଇହେବ,

ସୁଖୋମ୍ଲିନ୍‌ସ୍କି ସେକଥା କଳ୍ପନା ବି କରି ପାରୁନଥିଲେ । ପୋଲାଣ୍ଡ୍‌ର ପ୍ରଖ୍ୟାତ ଶିକ୍ଷାବିତ୍ ଜାନୁଜ୍ କର୍ଚ୍ଚାକ୍‌ଙ୍କ ଭାଷାରେ କହିଲେ, "ପିଲାଟିଏ ପାଠରେ ପଛରେ ରହିଯାଉଥିଲେ ମଧ୍ୟ ସିଏ ତାହାକୁ ସମ୍ମାନର ସହିତ ସ୍ୱୀକାର କରୁଥିଲେ ।" ସମ୍ପୂର୍ଣ୍ଣ ଧୈର୍ଯ୍ୟ ଅବଲମ୍ବନ କରୁଥିଲେ । ହଁ, ହୁଏତ ଆହୁରି ଗୋଟିଏ, ଦୁଇଟା ବା ତିନିଟା ବର୍ଷ ପର୍ଯ୍ୟନ୍ତ ପିଲାଟି ତଥାପି ପଛରେ ରହିଯାଉଥିବ, - କିନ୍ତୁ ଗୋଟିଏ ସମୟ ନିଶ୍ଚୟ ଆସିବ ଯେତେବେଳେ କି ସିଏ ପାଠଟାକୁ ଆୟତ୍ତ କରିନେବ । ହଁ, କୌଣସି ଏକ ପିଲାର କ୍ଷେତ୍ରରେ ବିଫଳ ହୋଇ ଯାଉଥିଲେ ଆଦୌ କୌଣସି ନମ୍ବର ଦେଉ ନଥିଲେ । ଅର୍ଥାତ୍, ପିଲାଟି ମୋଟେ ଅପମାନିତ ହେଉନଥିଲା, କୌଣସି ଶାସ୍ତି ପାଉନଥିଲା, - ଏବଂ, ପରେ ଏକ ସମୟରେ ଅବଶ୍ୟ କାମ୍ୟ ଗାରଟି ପାଖରେ ଆସି ପହଞ୍ଚି ଯାଉଥିଲା ।

ସୁଖୋମ୍ଲିନ୍‌ସ୍କି ପିଲାମାନଙ୍କୁ ଦେଉଥିବା ନମ୍ବରଗୁଡ଼ିକର ପଶ୍ଚାତରେ ଆଶାବାଦ ହିଁ ସର୍ବବୃହତ୍ ନିୟାମକ ହୋଇ ରହିଥିଲା । ପିଲାମାନେ ଯେ ଉଦ୍ୟମ ଏବଂ ଶ୍ରମ ସହିତ କିଛି କରିଛନ୍ତି, ତାହାରି ପାଇଁ ସେମାନଙ୍କୁ ଗୋଟିଏ ପୁରସ୍କାର । କେଉଁ ପିଲା କେତେ ଅଳସୁଆ ହୋଇ ରହିଛି ଓ ଯଥେଷ୍ଟ ଚେଷ୍ଟା କରିନାହିଁ, ତାହା ସକାଶେ ଆଦୌ କୌଣସି ଶାସ୍ତି ନୁହେଁ । ଥରେ ପିଲାଏ ପାଠ ପଢ଼ିଥିବାର ତିନିମାସ ପରେ ହୋଇଥିବା ପରୀକ୍ଷାରେ ସୁଖୋମ୍ଲିନ୍‌ସ୍କି ମାତ୍ର ତିନୋଟି ପିଲାଙ୍କ ଖାତାରେ କୌଣସି ନମ୍ବର ଦେଇନଥିଲେ, କିନ୍ତୁ ଅଧେ ପିଲା ପ୍ରଶଂସାଯୋଗ୍ୟ ପ୍ରମାଣପତ୍ର ସହିତ ତଥାପି ସେମାନଙ୍କର ଚତୁର୍ଥ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ବାକୀ ପ୍ରାୟ ସମସ୍ତେ ଭଲ ନମ୍ବର ରଖିଥିଲେ । ନିଜ ପିଲାମାନେ ବେଶୀ ନମ୍ବର ଯେପରିହେଲେ ରଖନ୍ତୁ ବୋଲି କଦାପି ସେମାନଙ୍କୁ ଗୁଡ଼ାଏ ପ୍ରବର୍ତ୍ତାଇବା ଲାଗି ସୁଖୋମ୍ଲିନ୍‌ସ୍କି ସେମାନଙ୍କ ପିତାମାତାଙ୍କୁ ସର୍ବଦା ନିରୁତ୍ସାହିତ ହିଁ କରୁଥିଲେ । ତାଙ୍କ ସ୍କୁଲରେ ପରୀକ୍ଷାରେ ବିଶେଷ ଓ ଆହୁରି ବିଶେଷ ନମ୍ବର ଆଣିବା ଉପରେ କଦାପି ତାଗିଦ କରି ଦିଆ ଯାଉନଥିଲା : "ସର୍ବାଧିକ ନମ୍ବର ପାଉଥିବା ପାଟ ପିଲାମାନେ ନିଜକୁ କେବେହେଲେ ଅନ୍ୟ ପିଲାମାନଙ୍କୁ ଗୋଟିଏ ଅଲଗା ଜଗତ ବୋଲି ଭାବୁନଥିଲେ ଏବଂ, ଯେଉଁମାନେ ପାସ୍ କରିଯିବା ଭଳି ଏକାବେଳେକେ ଅଳ୍ପ ନମ୍ବର ରଖୁଥିଲେ, ସେମାନେ ମଧ୍ୟ ଆପଣାକୁ କୌଣସି ପ୍ରକାରେ ନୀରସ ବା ନ୍ୟୂନ ବୋଲି ଅନୁଭବ କରୁନଥିଲେ ।"

ବିଦ୍ୟାଳୟଟି ସହିତ ସଂପୃକ୍ତ ପିତାମାତାମାନେ ମଧ୍ୟ ପ୍ରକୃତରେ ପୂରା ଭିନ୍ନ ପ୍ରକାରର ହିଁ ଥିଲେ । ବାରବର୍ଷ ଯାକ ସେମାନେ ମାସକୁ ଦୁଇଥର କରି ବିଦ୍ୟାଳୟକୁ ଆସୁଥିଲେ ଓ ମନୋବିଜ୍ଞାନ ଏବଂ ଶିକ୍ଷାକୌଶଳ ଗୁଡ଼ିକ ବିଷୟରେ ବିଶେଷ ତାଲୀମ ଗ୍ରହଣ କରୁଥିଲେ । ଅର୍ଥାତ୍, ସେମାନେ ମୋଟ ୩୫୦ ଘଣ୍ଟା ସେଠାରେ କଟାଉଥିଲେ ଏବଂ, ଯେକୌଣସି ବିଶ୍ୱବିଦ୍ୟାଳୟ କିମ୍ବା କଲେଜରେ ଦିଆ ଯାଉଥିବା ଯେକୌଣସି ପାଠ୍ୟକ୍ରମ ତୁଳନାରେ ପ୍ରକୃତରେ ଅଧିକ ଥିଲା ।

ଏହି ବିଦ୍ୟାଳୟର ଶିକ୍ଷକମାନେ ମଧ୍ୟ ବାହାର ବିଦ୍ୟାଳୟ ମାନଙ୍କର ଶିକ୍ଷକମାନଙ୍କର ତୁଳନାରେ ଗୋଟିଏ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ଜୀବନ ବ୍ୟତୀତ କରୁଥିଲେ । ସୁଖୋମ୍ଲିନ୍‌ସ୍କି ତ କହନ୍ତି ଯେ, ଜଣେ ଶିକ୍ଷକକୁ ଯେତିକି ମୁକ୍ତ ସମୟ ମିଳିବା ସମ୍ଭବ ହୁଏ, ତାହାହିଁ ତାହାର ସୃଜନାତ୍ମକତାରୂପୀ ଶାଖାପ୍ରଶାଖା ଗୁଡ଼ିକ ନିମନ୍ତେ ସବୁକିଛି ଖାଦ୍ୟରସ ଯୋଗାଇ ଦେଇଥାଏ । ଶିକ୍ଷକମାନେ ତାଙ୍କୁ କୌଣସି ଲିଖିତ ରିପୋର୍ଟ ଦିଅନ୍ତୁ ବୋଲି ସେ ଦାବୀ କରୁନଥିଲେ କିମ୍ବା ତାଙ୍କୁ କୌଣସି ନିର୍ଦ୍ଧାରିତ କର୍ତ୍ତବ୍ୟାବଳୀର ରୁଟିନ୍ ଭିତରେ ବାନ୍ଧି ମଧ୍ୟ ରଖୁନଥିଲେ । ହଁ, ସେମାନେ ପିଲାଙ୍କର କୂଡ଼ କୂଡ଼ ଖାତା ଦେଖିବାରେ ଆଦୌ ଗୁଡ଼ାଏ ସମୟ ନଦେଇ କେବଳ ଏକ ନମୁନାରୂପେ କେତେକ ପିଲାଙ୍କର ଖାତାଗୁଡ଼ିକୁ ଦେଖିଦେବା ନିମିତ୍ତ ସେମାନଙ୍କୁ ଉତ୍ସାହିତ କରୁଥିଲେ ଏବଂ, ଯେତେବେଳେ ଦୂରଦର୍ଶନରେ କୌଣସି ନାଟକ ବା ଶାସ୍ତ୍ରୀୟ ସଂଗୀତର କାର୍ଯ୍ୟକ୍ରମ ରହୁଥିଲା, ସେତେବେଳେ ଯାବତୀୟ ବୈଠକ ବା ବୈଷୟିକ ଚର୍ଚ୍ଚାକୁ ପ୍ରକୃତରେ ସ୍ଥଗିତ ରଖା ଯାଉଥିଲା ।

ବିଦ୍ୟାଳୟର ପରିବେଶରେ ହିଁ ଶିକ୍ଷକ ନିଜପାଇଁ ଯାବତୀୟ ପ୍ରଶିକ୍ଷଣ ଯେ ଲାଭ କରିବ, ସେହି ବିଷୟରେ ସୁଖୋମ୍ଲିନ୍‌ସ୍କିଙ୍କର ଗୋଟିଏ ବିସ୍ତାରିତ ସିଦ୍ଧାନ୍ତ ମଧ୍ୟ ରହିଛି । ସମସ୍ତେ ଭାବୁଥିଲେ ଯେ ସିଏ ସେହି ସମଗ୍ର ଅଞ୍ଚଳଟିରୁ ସବୁଠାରୁ ଭଲ ଶିକ୍ଷକମାନଙ୍କୁ, ବାଛି ବାଛି ହିଁ ନିଜର ବିଦ୍ୟାଳୟକୁ ଆଣିଛନ୍ତି । ମାତ୍ର, ପ୍ରକୃତରେ ତାହା ଆଦୌ ସତ୍ୟ ନୁହେଁ; ବରଂ, ସିଏ ନିଜେ ହିଁ ସେମାନଙ୍କୁ ତାଲୀମ ଦେଇଛନ୍ତି ଏବଂ ନିଜେ ମଧ୍ୟ ସେମାନଙ୍କ ଠାରୁ ବହୁତ ଶିକ୍ଷା କରିଛନ୍ତି । ସେହି ପାଭ୍‌ଲିଶ୍ ସ୍କୁଲରେ ଯାହାକିଛି ନୂତନ ଆବିଷ୍କାର କରାଯାଇଛି, ତାହାକୁ ବିଦ୍ୟାଳୟର

ସମର୍ଥତମ ଶିକ୍ଷକମାନେ ମିଳିତ ଭାବରେ ହିଁ କରିଛନ୍ତି ଏବଂ ସୁଖୋମ୍ଲିନ୍‌ସ୍କି ଲେଖିଥିବା ପୁସ୍ତକଗୁଡ଼ିକରେ ସେହିଗୁଡ଼ିକ ପ୍ରାୟ ଅବିକଳ ଲିପିବଦ୍ଧ ହୋଇ ରହିଛି । ପ୍ରାୟ ଦୀର୍ଘ ତିରିଶି ବର୍ଷ ଆପେ ଶିକ୍ଷକ ହୋଇ ରହିସାରିବା ପରେ ସିଏ ଜଣେ ଶିକ୍ଷକ ଅଥବା ଶିକ୍ଷାବିତ୍ ହିସାବରେ ନିଜ ବ୍ୟକ୍ତିଗତ ଅଭିଜ୍ଞତାଗୁଡ଼ିକୁ ହିଁ କ୍ରମଶଃ ସଂଗୃହୀତ କରି ଆଣିବାକୁ ଆରମ୍ଭ କରିଛନ୍ତି ।

ଆପଣାର ସତୀର୍ଥ ଅନ୍ୟ ଶିକ୍ଷକମାନଙ୍କୁ ସୁଖୋମ୍ଲିନ୍‌ସ୍କି ପ୍ରଭୂତ ଗୁରୁତ୍ୱ ଦେଇ କହୁଥିଲେ ଯେ, ପିଲାମାନଙ୍କ ସହିତ ରହି ଶିକ୍ଷା ଦେବାବେଳେ ସେମାନେ କେବେହେଲେ ଜଣେମାତ୍ର ଦ୍ୱିତୀୟ ବ୍ୟକ୍ତି ହୋଇ ଉପସ୍ଥିତ ରହୁନାହାନ୍ତି; କିନ୍ତୁ : " ଜଣେ ତୃତୀୟ ବ୍ୟକ୍ତି ମଧ୍ୟ ସର୍ବଦା ସେଠାରେ ରହିଛି, - ସିଏ ହେଉଛି ତୁମର ବିବେକ, ଜଣେ ଶିକ୍ଷକ ହିସାବରେ ତୁମ ନିଜର ହିଁ ବିବେକ ।" ସିଏ ନିରନ୍ତର ସତେଅବା ଅତ୍ୟନ୍ତ ନିୟମିତ ଭାବରେ ଅନ୍ୟ ଶିକ୍ଷକମାନଙ୍କୁ ପାଖରେ ବସାଇ ସେମାନଙ୍କ ଆଗରେ ଆପଣାର ବିଚାରଗୁଡ଼ିକୁ ବାଢ଼ି ଦେଉଥିଲେ । ତାଙ୍କର ଏହି କାର୍ଯ୍ୟଟି ବିଷୟରେ ଆଉଜଣେ ଶିକ୍ଷକଙ୍କର ପ୍ରତ୍ୟୟଗୁଡ଼ିକୁ ଅନୁକୂଳ କରି ଆଣିବାକୁ ତଥା ସେମାନେ ଯେପରି ପିଲାମାନଙ୍କ ଠାରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରିପାରିବେ, ସେଥିଲାଗି ସେମାନଙ୍କୁ ସମ୍ମତ କରି ଆଣିବାକୁ ହିଁ ସବୁଠାରୁ ଅଧିକ କଠିନ କାର୍ଯ୍ୟ ବୋଲି ଭାବୁଥିଲେ ।

ହଁ, ପିଲାମାନଙ୍କ ଉପରେ ବିଶ୍ୱାସ, ସେମାନଙ୍କର ଶକ୍ତି ଉପରେ ବିଶ୍ୱାସ, ସମର୍ଥତା ଉପରେ ବିଶ୍ୱାସ ତଥା ଆପଣାକୁ ଉତ୍ତମରୂପେ ଗଠିତ କରି ଆଣିବା ସକାଶେ ସେମାନେ ନିଜ ଭିତରୁ ହିଁ ଏକ ପ୍ରୟୋଜନ ମଧ୍ୟ ଅନୁଭବ ଯେ କରନ୍ତି, ତାହାରି ଉପରେ ବିଶ୍ୱାସ, - ଏହାକୁ ହିଁ ସୁଖୋମ୍ଲିନ୍‌ସ୍କିଙ୍କ ସକଳ କାର୍ଯ୍ୟର ମୁଖ୍ୟ ଲକ୍ଷଣ ବୋଲି ଅବଶ୍ୟ କୁହାଯିବ । ସେ ତରୁଣ ଶିକ୍ଷକମାନଙ୍କ ସହିତ ବହୁ ବର୍ଷ କାର୍ଯ୍ୟ କରିଥିଲେ, ସେମାନେ କିପରି ଭାବରେ ନିଜର କାର୍ଯ୍ୟଟିରେ ଅଗ୍ରସର ହେବେ, ସେମାନଙ୍କୁ ସେହି କଥାଟିକୁ ଦର୍ଶାଇ ଦେବାଲାଗି ଚେଷ୍ଟା କରିଛନ୍ତି ଏବଂ ଅତୀବ ଧୈର୍ଯ୍ୟ ସହକାରେ ସେମାନଙ୍କୁ ନିଜର ମତଗୁଡ଼ିକୁ ବୁଝାଇଛନ୍ତି । ତଥାପି, ଏକାଧିକ ବର୍ଷକାଳ ଶିକ୍ଷକତା କରିବାପରେ ଯଦି କୌଣସି ଶିକ୍ଷକ ପିଲାମାନଙ୍କ ଉପରେ ବିଶ୍ୱାସ ରଖି ପାରିନାହାନ୍ତି, ଯଦି ପିଲାମାନଙ୍କର ଅର୍ବାଚୀନତା ଏବଂ

ଦୁର୍ବଳତାଗୁଡ଼ିକୁ ସେମାନଙ୍କୁ ବିରକ୍ତ ବି କରିଛି, ତେବେ ସୁଖୋମ୍‌ଲିନ୍‌ସ୍କି ସେହି ଶିକ୍ଷକଙ୍କୁ ଅବଶ୍ୟ ବର୍ଜନ କରିଛନ୍ତି । ପିଲାଙ୍କ ଉପରେ ତୁମର ବିଶ୍ୱାସ ନଥିବ, ଅଥଚ ତୁମେ ସେମାନଙ୍କୁ ଶିକ୍ଷକ ହୋଇ ପାଠ ପଢ଼ାଇବ, ତାଙ୍କ ମଧ୍ୟରେ ତାହା ଆଦୌ ସମ୍ଭବ ହେବନାହିଁ । ବିଶ୍ୱାସର ଅଭାବ ରହିଛି, ଅର୍ଥାତ୍ ଭଲ ପାଇବାର ହିଁ ଅଭାବ ରହିଛି ।

ତାଙ୍କ ଜୀବନରେ ସିଏ କେଉଁ କଥାଟିକୁ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ବିଚାର କରୁଛନ୍ତି ଯଦି ସୁଖୋମ୍‌ଲିନ୍‌ସ୍କିଙ୍କୁ ପଚରା ଯାଉଥିଲା, ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ସିଏ ତତ୍‌କ୍ଷଣାତ୍ ଉତ୍ତର ଦେଉଥିଲେ, - "ପିଲାଙ୍କ ପ୍ରତି ମୋ'ର ଭଲ ପାଇବା ।"

+ + +

ଶିଶୁ ଓ ସେହି ଶିଶୁର ଯାବତୀୟ ଆବଶ୍ୟକତା, - ତାହାହିଁ ସୁଖୋମ୍‌ଲିନ୍‌ସ୍କିଙ୍କର ଶିକ୍ଷାତତ୍ତ୍ୱର କେନ୍ଦ୍ର ହୋଇ ରହିଥିଲା । ଏହିଭଳି ତତ୍ତ୍ୱମାନଙ୍କର ସନ୍ଧାନ କରି ସେଗୁଡ଼ିକୁ ଠାବ କରି ଆଣିବା, - ଏହି ଉଦ୍ୟମଗୁଡ଼ିକୁ ପୂର୍ବରୁ ମଧ୍ୟ କରାଯାଇଥିଲା । ପୃଥିବୀର ଶ୍ରେଷ୍ଠତମ ଶିକ୍ଷାବିତ୍‌ମାନେ ସେହି ଲକ୍ଷ୍ୟକୁ ସମ୍ମୁଖରେ ରଖି ହୁଏତ ଅଧିକାଂଶ ସମୟରେ ଏପରି ଏକ ଅତିଶୟତା ଭିତରେ ଯାଇ ପଶି ଯାଇଛନ୍ତି, ଯେତେବେଳେ କି ସିଦ୍ଧାନ୍ତକାରୀ ଆଉ ପିଲାକୁ କୌଣସି ବାଟ ଦେଖାଏନାହିଁ ଓ ପ୍ରକୃତରେ ପିଲାକୁ ହିଁ ଆଗରେ ରଖି ସ୍ୱୟଂ ତାହାର ପଛେ ପଛେ ଯିବାରେ ଲାଗିଥାଏ । ପିଲାଟି ଭିତରେ ଗମ୍ଭୀର ଭାବରେ କୌଣସି ନୂତନ ଆଗ୍ରହର ଉନ୍ମେଷଣା ନଘଟାଇ ସେ ହୁଏତ ପିଲାର କ୍ଷଣ କ୍ଷଣର ଆଗ୍ରହଗୁଡ଼ିକ ଅନୁସାରେ ଆପଣାକୁ ପରିଚାଳିତ କରିବାରେ ଲାଗିଥାଏ ।

ଏହି କ୍ଷେତ୍ରରେ ସୁଖୋମ୍‌ଲିନ୍‌ସ୍କି ଗୋଟିଏ ମଧ୍ୟବିତ୍ତ ପଥକୁ ଗ୍ରହଣ କରିଥିଲେ ଏବଂ ଦୁଇଟିଯାକ ଅତିରିକ୍ତତାର ମାର୍ଗକୁ ଏଡ଼ି ରହିବାକୁ ଉଦ୍ୟମ କରୁଥିଲେ । ତଥାପି ଏହି ସମସ୍ୟାଟି ପାଇଁ ସେ ଏକ ମୌଳିକ ନୂତନ ସମାଧାନ ମଧ୍ୟ ବାହର କରି ପାରିଥିଲେ । ସିଏ ଶିଶୁକୁ ଜ୍ଞାନଲାଭର କ୍ଷେତ୍ରଟି ମଧ୍ୟକୁ ପରିଚାଳିତ କରିନିଅନ୍ତି, ପୂର୍ଣ୍ଣ ଗମ୍ଭୀରତାର ସହିତ ତାକୁ ଯାବତୀୟ ଶିକ୍ଷା ପ୍ରଦାନ

କରନ୍ତି, - ତାଙ୍କ ଜିମାରେ ରହିଥିବା ପିଲାମାନଙ୍କର କୌଣସି କ୍ଷଣକ୍ଷଣର ଆଗ୍ରହଗୁଡ଼ିକରୁ ଆରମ୍ଭ କରି ନୁହେଁ, - ସେ ସବୁ ବିଦ୍ୟାଳୟରେ ପ୍ରଚଳିତ ରହିଥିବା ସାଧାରଣ ପାଠ୍ୟକ୍ରମରେ ପ୍ରତ୍ୟାଶିତ ବିଷୟଗୁଡ଼ିକ ଉପରେ ପୂର୍ଣ୍ଣ ଧ୍ୟାନ ରଖି ହିଁ ସବୁକିଛି କରିଥାନ୍ତି । ପିଲାଟି ଭିତରେ ଶିଖିବା ନିମନ୍ତେ ଏକ ଯଥାର୍ଥ ଅଭିଳାଷର ସୃଷ୍ଟି ହେବ, ଏହାକୁ ହିଁ ସିଏ ଆପଣାର ମୂଳ ଲକ୍ଷ୍ୟ କରି ରଖିଛନ୍ତି ।

ସୁଖୋମ୍‌ଲିନ୍‌ସ୍କିଙ୍କର ମତରେ, ଯଦି ପିଲାଟି ଭିତରେ ଆପଣାକୁ ଶିକ୍ଷା ମଧ୍ୟକୁ ପ୍ରବିଷ୍ଟ କରାଇବାର କୌଣସି ଆଗ୍ରହ ନଥାଏ, ତେବେ ଶିକ୍ଷାଦାନରେ ଆଦୌ କିଛି ହେଲେ ସମ୍ଭବ ହେବନାହିଁ । ଯଦି ଗୋଟିଏ ପିଲା ନିଜର ଚରିତ୍ରକୁ ଏକ ନିର୍ଦ୍ଦିଷ୍ଟ ଆକାର ଦେଇ ସେହି ଅନୁସାରେ ଅଗ୍ରସର ହେବାକୁ କୌଣସି ଆଗ୍ରହ ଅନୁଭବ ନକରେ, ତେବେ ତାହାର ଚରିତ୍ରରେ କୌଣସି ନିର୍ଦ୍ଦିଷ୍ଟ ସୁଷମ ରୂପ ସମ୍ଭବ ହେବା ସର୍ବଦା ଅସମ୍ଭବ ହୋଇ ରହିଥିବ ।

କିନ୍ତୁ, ଆମର ଏହି ବର୍ତ୍ତମାନ କାଳରେ ନିଜକୁ ନିଜେ ଶିକ୍ଷା ଦେବାର ମହତ୍ତ୍ୱ ସମ୍ବନ୍ଧରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିବା ସମ୍ଭବତଃ ନିତାନ୍ତ ଅନାବଶ୍ୟକ ବି ମନେ ହୋଇପାରେ । ତଥାପି, ଅନ୍ୟମାନେ ଯାହାକୁ ଏକ ଗୌଣ ବିଷୟ ବୋଲି ଗଣ୍ୟ କରନ୍ତି, ସୁଖୋମ୍‌ଲିନ୍‌ସ୍କିଙ୍କର ବିଚାର ଅନୁସାରେ ତାହାହିଁ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ । ଅନ୍ୟମାନେ ଯାହାକୁ କେବଳ ସାଧାରଣ ଭାବରେ ଉଚିତ ବୋଲି ମନେ କରନ୍ତି, ସୁଖୋମ୍‌ଲିନ୍‌ସ୍କି ତାହାକୁ ଅପରିହାର୍ଯ୍ୟ ଓ ଅସଲ ବୋଲି ବିଚାରୁଛନ୍ତି । ଯାହାକୁ ଅନ୍ୟମାନେ ହୁଏତ ପ୍ରାପ୍ତ ହେଉଥିବା ଏକ ଫଳ ବୋଲି ଭାବିବେ, ସୁଖୋମ୍‌ଲିନ୍‌ସ୍କି ତାକୁ କାରଣ ପରି ଦେଖନ୍ତି ।

ସୁଖୋମ୍‌ଲିନ୍‌ସ୍କି ଯେଉଁସବୁ ପଦ୍ଧତି ଓ ପ୍ରଣାଳୀକୁ ଗ୍ରହଣୀୟ ବୋଲି କହିଛନ୍ତି ଏବଂ ଆପଣାର ପ୍ରବନ୍ଧ, ରଚିତ ପୁସ୍ତକ ତଥା ବିଚାରଗୁଡ଼ିକରେ ସେ ଯାହା ପ୍ରକଟ କରିଛନ୍ତି, - ସେଇଟି ସବୁଠାରେ ହିଁ ଅପରିବର୍ତ୍ତନୀୟ ହୋଇ ରହିଥାଏ । ତାହା ହେଉଛି : ପିଲାମାନଙ୍କ ଭିତରେ ଶିକ୍ଷା କରିବା ନିମନ୍ତେ ଆଗ୍ରହଟିକୁ ବଢ଼ାଇବାକୁ ହେବ, - ସେମାନେ କ୍ରିୟାଶୀଳ ହୋଇ ରହିବାରୁ ଯେପରି ଆନନ୍ଦ ପାଇବା, ସେମାନଙ୍କୁ ଆମେ ତାହାରି ଶିକ୍ଷା ଦେବା ଏବଂ ସେମାନେ ଜୀବନରେ ଯେପରି ଜଣେ ଜଣେ ଯୋଗ୍ୟ ବ୍ୟକ୍ତି ହୋଇପାରିବେ, ସେମାନଙ୍କ

ମଧ୍ୟରେ ଗୋଟିଏ ଆକାଙ୍କ୍ଷା ଜାଗ୍ରତ କରାଇ ଆଣିବା । ପିଲା ନିଜକୁ ଅନ୍ୟମାନଙ୍କ ଠାରୁ ନ୍ୟୁନ ବୋଲି ଅନୁଭବ କରିବନାହିଁ, - ନିଜକୁ ଅସମର୍ଥ ଅଥବା ପଛୁଆ ବୋଲି ଭାବିବାର ଅବସର ହିଁ ପାଇବନାହିଁ । ନିଜପ୍ରତି ରହିଥିବା ସମ୍ମାନବୋଧଟି କେବେହେଲେ ଊଣା ହେବନାହିଁ । ସବୁ ପିଲାଙ୍କୁ, ଏପରିକି ସବୁଠାରୁ ଅଧିକ ପଛରେ ରହିଥିବା ଗୋଟିଏ ପିଲାକୁ ମଧ୍ୟ ଭବିଷ୍ୟତରେ ଜଣେ ଜଣେ ଯୋଗ୍ୟ ବ୍ୟକ୍ତି ହୋଇ ପାରିବାର ଶିକ୍ଷା ଦିଆଯିବ । କାରଣ, ସୁଖୋମ୍ଲିନସ୍କିଙ୍କର ଭାଷାରେ କହିଲେ, "ଏହି କ୍ଷେତ୍ରରେ ଆଦୌ କୌଣସି ଅନ୍ୟ ରାସ୍ତା ହିଁ ନାହିଁ ।''

କୌଣସି ଶିଶୁ ନିଜ ବୁଦ୍ଧି ସର୍ବଦା ହିଁ ଅଳ୍ପବଳ ହୋଇ ରହିଥିବ ଏବଂ ଜୀବନରେ ଅଗ୍ରସର ହେଉ ହେଉ ସିଏ ଦିନେ ଦିନେ ଗୋଡ଼ ଖସିଯାଇ ନାନା ଅନୁଚିତର ଜାଲରେ ନିଶ୍ଚୟ ପଡ଼ିଯିବ, - ଏହି ସମ୍ଭାବନାଟାକୁ ସୁଖୋମ୍ଲିନସ୍କି ସମ୍ପୂର୍ଣ୍ଣ ଭାବରେ ହିଁ ପ୍ରତ୍ୟାଖ୍ୟାନ କରୁଛନ୍ତି । ଜୀବନର ସଂଘର୍ଷପଥରେ ସିଏ ଅବଶ୍ୟ ଏକ ଉତ୍ତମ ପରିମାଣରେ ଯାଇ ପହଞ୍ଚିବ ବୋଲି ସେ ସର୍ବଦା ଆଶାବାଦୀ ହୋଇ ରହିଛନ୍ତି । ଏବଂ, ସେହି ସବୁକିଛି ଏହି ଦୈନନ୍ଦିନ ଶ୍ରେଣୀ-କାର୍ଯ୍ୟକ୍ରମର ମାଧ୍ୟମରେ ହିଁ ସମ୍ଭବ ହେବ । ଏକଥା ସମସ୍ତେ ଜାଣିଛନ୍ତି ଯେ, ଋଷିଆରେ ପିଲାମାନଙ୍କୁ କୌଣସି ପରୀକ୍ଷାରେ ବସିବାକୁ ହୁଏନାହିଁ, - ବୁଦ୍ଧିକୁ ମାପି ପରୀକ୍ଷା କରିବା ବିଷୟରେ ଶିକ୍ଷକ ଏବଂ ଛାତ୍ରମାନେ ଆଦୌ କିଛି ଜାଣନ୍ତି ନାହିଁ । ଯେଉଁ ପିଲାମାନେ ଅପେକ୍ଷାକୃତ ଦୃଷ୍ଟିରୁ ପଛରେ ରହିଥାନ୍ତି, ସୁଖୋମ୍ଲିନସ୍କି ସେମାନଙ୍କ ବିଷୟରେ ମଧ୍ୟ ଆଦୌ କୌଣସି ସାଲିଶ୍ କରନ୍ତି ନାହିଁ : "ଏଭଳି ପିଲାମାନେ ମଧ୍ୟ ସେହି ସାଧାରଣ ବିଦ୍ୟାଳୟମାନଙ୍କରେ ପାଠ ପଢ଼ିବେ । ସେମାନଙ୍କ ନିମନ୍ତେ କୌଣସି ବିଶେଷ ଧରଣର ବିଦ୍ୟାଳୟ ରଖିବାର କୌଣସି ପ୍ରଶ୍ନ ହିଁ ଉଠୁନାହିଁ, - ସେପରି କଲେ ତାହା ପ୍ରକୃତରେ ଏକ ସର୍ବନିମ୍ନ ମାନବିକତାର ମଧ୍ୟ ବିରୋଧାଚରଣ କରିବ । ଏହି ପିଲାମାନେ ଆଦୌ ଅସୁନ୍ଦର ନୁହନ୍ତି, - ମନୁଷ୍ୟଜାତିର ଅନନ୍ତ ବୈଚିତ୍ର୍ୟଯୁକ୍ତ ବଗିଚାରେ ସେମାନଙ୍କୁ କେବଳ ସବୁଠାରୁ ଅଧିକ ଶୀର୍ଣ୍ଣ ଦିଶୁଥିବା ଓ ସବୁଠାରୁ ଅଧିକ ନାଜୁକ୍ କେତୋଟି ଫୁଲ ବୋଲି ବିଚାର କରିବାକୁ ହେବ । ସେମାନେ ଯେ ଏପରି କୃଶ, ଅଳ୍ପବଳ ଏବଂ ସୁରକ୍ଷାହୀନ ହୋଇ ଆମ ସ୍କୁଲଗୁଡ଼ିକୁ ଆସିଛନ୍ତି, ଏଥିରେ ସେମାନଙ୍କର କିଛି ଦୋଷ ହିଁ ନାହିଁ । ସେହି ଦୋଷଟିକୁ ହୁଏତ ପ୍ରକୃତି ଅର୍ଥାତ୍ ସମସ୍ତ ମନୁଷ୍ୟଜାତିକୁ ହିଁ

ଦିଆ ଯାଇପାରେ । ସମାଜରେ କାଳକାଳରୁ ଯେଉଁ ଅନ୍ୟାୟ ରହି ଆସିଛି, ଦୋଷ ତାହାକୁ ହିଁ ଦିଆ ଯାଇପାରେ । ସେହି ଅନ୍ୟାୟଗୁଡ଼ିକର ମୂଳୋତ୍ପାଟନ ହୋଇଛି ସତ, ମାତ୍ର ତାହାର ପରିଣାମ ଗୁଡ଼ିକ ଆଗକୁ ଆହୁରି ବହୁବର୍ଷ ପର୍ଯ୍ୟନ୍ତ ରହିଥିବେ ।

ପିଲାମାନଙ୍କ ନିମନ୍ତେ ସୁଖୋମ୍ଲିନ୍‌ସ୍କିଙ୍କର ଭଲ ପାଇବା ମୂଳତଃ ଏପରି ଏକ ଭଲ ପାଇବା, ଯାହାକି କ୍ରିୟାଶୀଳ ହୋଇ ହିଁ ରହିଛି । ଗୋଟିଏ ପିଲାକୁ ଭଲ ପାଇଲେ ତଦ୍ଦ୍ୱାରା ତାହାକୁ ଗୋଟାସୁଦ୍ଧା ଅନ୍ୟମନସ୍କ କରି ପକାଇବାର ମଧ୍ୟ ସମ୍ଭାବନା ରହିଛି; ତଥାପି, ଯଦି ସିଏ ବିଦ୍ୟାଳୟରେ ସନ୍ତୋଷଜନକ ଭାବରେ ଅଗ୍ରଗତି କରି ନପାରୁଥାଏ, ତେବେ ତା'ପ୍ରତି ଜଣେ ବୟସ୍କ ବ୍ୟକ୍ତିର ଭଲ ପାଇବା ତାକୁ କଦାପି ସୁଖୀ କରିଦେଇ ପାରିବନାହିଁ । ଭଲ ପାଇବା ସର୍ବଦା ସୁଖର ଏକ ଅନୁଭବକୁ ହିଁ ପ୍ରଦାନ କରିଥାଏ ଏବଂ, ଆତ୍ମବିଶ୍ୱାସ ହାସଲ କରିବା ସହିତ ଅଧ୍ୟୟନରେ ସଫଳତା ଲାଭ କରିବାରୁ ମିଳୁଥିବା ଆନନ୍ଦ ସହିତ ଆଉ କେଉଁ ସୁଖର ପ୍ରକୃତରେ କୌଣସି ତୁଳନା କରାଯାଇ ପାରିବ ?

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରା ଯାଇପାରେ ଯେ, ସୁଖୋମ୍ଲିନ୍‌ସ୍କିଙ୍କ ପୂର୍ବରୁ ଅନ୍ୟ କୌଣସି ଶିକ୍ଷକ ଆମେ ପିଲାମାନଙ୍କୁ ଭଲ ପାଇବା ଓ ସେମାନଙ୍କୁ ବୁଝିବା ବୋଲି ଏତେ ଶକ୍ତିଶାଳି ଭାବରେ ଆମକୁ ନିବେଦନ କରିନଥିଲେ । ପିଲାମାନଙ୍କୁ ଭଲ ପାଇବା ସାଧାରଣତଃ ମୋଟେ ସହଜ ନୁହେଁ ଏବଂ ସମସ୍ତେ ସେହି କଥାଟିକୁ କେବେହେଲେ ବୁଝି ବି ପାରିବେ ନାହିଁ । ପିଲାମାନଙ୍କର ଦାୟିତ୍ୱରେ ରହିଥିବା ବ୍ୟକ୍ତିମାନେ ଏହି କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଅସୁବିଧା ଗୁଡ଼ିକର ସମ୍ମୁଖୀନ ହୋଇଥାନ୍ତି, କାରଣ ସେମାନେ ସେହି କ୍ଷେତ୍ରରେ ହୁଏତ ଭିନ୍ନ କେତେ ବା କେତେ ମିଜାଜ ଓ ଚରିତ୍ର ରହିଥିବା ପିଲାମାନଙ୍କର ସାମନା କରନ୍ତି - ଆଦୌ କୌଣସି ପ୍ରକାରେ ଆକୃଷ୍ଟ କରୁନଥିବା କେତେ ଭଳି ପ୍ରକାରର । ବିଶେଷତଃ, ଯେଉଁ ପିଲାଙ୍କର ଭାବନାକ୍ଷେତ୍ରର ଢ଼ାଞ୍ଚାଗୁଡ଼ିକ ତଥାପି ଅବିକଶିତ ଅବସ୍ଥାରେ ଥାଏ, ମନ୍ଦତାଦୁଷ୍ଟ ହୋଇଥାଏ କିମ୍ବା ଯେଉଁମାନଙ୍କର ପ୍ରକୃତରେ ଶିକ୍ଷା କରିବାର କୌଣସି ସାମର୍ଥ୍ୟ ନଥାଏ, ସେମାନଙ୍କ ଦାୟିତ୍ୱରେ ଥିବା ଶିକ୍ଷକମାନଙ୍କ ନିମନ୍ତେ ସେମାନଙ୍କୁ ଭଲ ପାଇବା ତଥା ବୁଝିବାର କାର୍ଯ୍ୟଟି ସବୁଠାରୁ ଅଧିକ କଠିନ ହିଁ ହୁଏ । ସମର୍ଥ ପିଲାମାନଙ୍କୁ ଶିକ୍ଷା ଦେବା ସର୍ବଦା ଭାରି ସହଜ ଓ ସେଥିରୁ ପ୍ରକୃତରେ

ଶ୍ରେଣୀରେ ସେପରି ବିଶେଷ ଦକ୍ଷତାଯୁକ୍ତ ପିଲା ଅତ୍ୟନ୍ତ ଅଳ୍ପ ସଂଖ୍ୟାରେ ହିଁ ରହିଥାଆନ୍ତି । ସୁଖୋମ୍‌ଲିନ୍‌ସ୍କି ହୁଏତ ସବାଆଗ କମ୍ ସାମର୍ଥ୍ୟ ରହିଥିବା ପିଲାମାନଙ୍କ ଆଡ଼କୁ ସର୍ବଦା ଆଗଭର ହୋଇଯାଆନ୍ତି, - ଯେଉଁମାନେ କି ଅନ୍ତର୍ଗତ ଏକାଧିକ କାରଣରୁ ବିଫଳ ହେଉଥାନ୍ତି, ଉପହାସର ପାତ୍ର ହୋଇଥାନ୍ତି ଏବଂ ଭିତରେ ଆଶା ବି ହରାଇଥାନ୍ତି । ହଁ, " ଯେଉଁ ଅସମର୍ଥତା ସତେଅବା କୌଣସି ପ୍ରକୃତିଦତ୍ତ କାରଣରୁ ହିଁ ବାଟ ଓଗାଳି ରହିଥିବା ପରି ଲାଗୁଥିଲା, ତାହାକୁ ଅତିକ୍ରମ କରିଯିବା," - ଆମେ ଏହାକୁ ହିଁ ମାନବିକତାର ଏକ ମୂର୍ତ୍ତିମନ୍ତ ଦୃଷ୍ଟାନ୍ତ ବୋଲି କହିପାରିବା ।

ସୁଖୋମ୍‌ଲିନ୍‌ସ୍କି ଯେତେବେଳେ ଜଣେ ଶିକ୍ଷକ ଲାଗି ସର୍ବାଧିକ ପରିମାଣରେ ଅନତିକ୍ରମ୍ୟ ବୋଲି କୁହାଯାଇ ପାରୁଥିବା ଏକ ସମସ୍ୟାର ସମ୍ମୁଖୀନ ହେଲେ, ତାଙ୍କୁ ସେତେବେଳେ ତିରିଶି ବର୍ଷ ବି ହୋଇନଥିଲା । ପ୍ରତିଦିନ ଆପଣାର ଗୋଟିଏ ନିୟମିତ କାର୍ଯ୍ୟରୂପେ ସେ ନିଜର ସହକର୍ମୀ ଅନ୍ୟ ଶିକ୍ଷକମାନଙ୍କର ଶ୍ରେଣୀଗୃହଗୁଡ଼ିକୁ ଯାଉଥିଲେ ଏବଂ ପିଲାମାନେ ଦେଉଥିବା ଉତ୍ତରଗୁଡ଼ିକୁ ଶୁଣୁଥିଲେ । ଏବଂ, ସେ ଆଖର ନିଜକୁ ହିଁ ପଚାରିଥିଲେ " ଏହି ଉତ୍ତରଗୁଡ଼ିକରେ କ'ଣ ପାଇଁ ଜଣେ ପିଲା ତା' ନିଜ ଜୀବନର ଜୀବନ୍ତ ଭାବନାଗୁଡ଼ିକରୁ ଆଦୌ ପ୍ରାୟ କିଛିହେଲେ ବ୍ୟକ୍ତ କରି ପାରୁନାହିଁ ? ଅର୍ଥାତ୍, ପିଲାଏ ଆପେ କିଛି ଭାବନ୍ତୁ ବୋଲି ଆମେ ସେମାନଙ୍କୁ ଶିକ୍ଷା ଦେଇ ପାରୁନାହୁଁ ।"

ଅଥଚ, ପିଲାମାନେ ଆପେ ହିଁ ଚିନ୍ତା କରି ପାରିବେ, - ପିଲାମାନଙ୍କୁ ସେହି ଶିକ୍ଷାଟିକୁ ଦେଇ ପାରିବାକୁ ତ ଶିକ୍ଷକର ଅସଲ କୌଶଳ ବୋଲି କୁହାଯିବ । ଏହାପରେ ନିଜ ଲେଖାରେ ସୁଖୋମ୍‌ଲିନ୍‌ସ୍କି ଏହି କଥା ଲେଖିଥିଲେ : "ଏହି କଥାଟିକୁ ହୃଦୟଙ୍ଗମ କରି ମୁଁ ବହୁତ ପ୍ରେରଣା ପାଇଥିଲି, ସେଥିରୁ ମୁଁ ଏକ ସୃଜନାତ୍ମକ ପ୍ରେରଣାଲାଭର ଏକ ଅସାଧାରଣ ଆନନ୍ଦ ହିଁ ଲାଭ କରିଥିଲି ।"

ସିଏ ଦୁଇଟି କୁନି ଝିଅ ଦେଇଥିବା ଉତ୍ତରଗୁଡ଼ିକୁ ଶୁଣିଥିଲେ । ଉତ୍ତରମାନେ ସମ୍ପୂର୍ଣ୍ଣ ନିର୍ଭୁଲ ଥିଲେ ସତ, କିନ୍ତୁ ସେଗୁଡ଼ିକୁ ଦେଉଥିବା ସମୟରେ ସେହି ଝିଅମାନେ ଆଦୌ କୌଣସି ଆନନ୍ଦ ଅନୁଭବ କରୁନଥିଲେ । ଏଭଳି କ'ଣପାଇଁ ହୋଇଥିଲା ? ବିଷୟଟି ପ୍ରତି ସେମାନଙ୍କର ଆଗ୍ରହ ନଥିଲା, -

ଏଇଟି କାରଣ ହୋଇପାରେ କି ?  ହଁ, ଯାହା ଶ୍ରେଣୀରେ ପାଠ ହିସାବରେ ପଢ଼ାଯାଉଛି, ସେହି ସବୁକିଛି ଆଗ୍ରହଦାୟକ ହେବାର ପ୍ରକୃତରେ କୌଣସି କାରଣ ନାହିଁ ।

ଏବଂ, ଯାହା ପିଲାମାନଙ୍କ ନିମନ୍ତେ ଆଗ୍ରହପ୍ରଦ ହୋଇଥିବ, ସେମାନଙ୍କୁ କେବଳ ସେହିସବୁ ବିଷୟ ହିଁ ପାଠରୂପେ ପଢ଼ାଯିବ, ଏପରି ଏକ ସିଦ୍ଧାନ୍ତରେ ଉପନୀତ ହେଲେ, ଗୋଟିଏ ବିଦ୍ୟାଳୟ ପାଖରେ ତତ୍‌କ୍ଷଣାତ୍ ପିଲାମାନଙ୍କୁ ସୁନିଶ୍ଚିତ ଭାବରେ ବିଧିବଦ୍ଧ କୌଣସି ଜ୍ଞାନ ପ୍ରଦାନ କରିବାର ସମ୍ଭବତଃ କୌଣସି ସୁଯୋଗ ହିଁ ରହିବନାହିଁ ଏବଂ, ଗୋଟିଏ ବିଦ୍ୟାଳୟର ପାଠସାମଗ୍ରୀର ହୁଏତ ଅତ୍ୟନ୍ତ ଶୋଚନୀୟ ଭାବରେ ଆଧୁନିକ ଜୀବନ ସହିତ ମୋଟେ କୌଣସି ସମ୍ପର୍କ ନଥିବ ।

ଏଥିରୁ ସୁଖୋମ୍ଲିନ୍‌ସ୍କି ଜାଣି ପାରିଥିଲେ ଯେ, ଶ୍ରେଣୀର ପାଠସାମଗ୍ରୀଟା ହିଁ ପିଲାମାନଙ୍କୁ ଆନନ୍ଦ ଦେବାର ଆଦୌ ଏକ କାରଣ ନୁହେଁ ।  ବରଂ, ଅସଲ ଓ ପ୍ରକୃତ କାରଣ ହେଉଛି ଯେ, ପିଲା ଯାହା କିଛି ନିଜେ କରୁଥିବ, ସିଏ ନିଜେ ଅସୁବିଧାଗୁଡ଼ିକ ଉପରେ ବିଜୟ ଲାଭ କରୁଥିବ, ତା' ନିଜ ଅସମର୍ଥତା ଗୁଡ଼ିକ ଉପରେ ସିଏ ନିଜେ ପ୍ରକୃତରେ କ୍ରମେ କ୍ରମେ ବିଜୟ ହାସଲ କରୁଛି ବୋଲି ଅନୁଭବ କରି ପାରୁଥିବ ।  ଏଇଟି  ହିଁ ହେଉଛି ତା' ଆଗ୍ରହର ଅସଲ ଉତ୍ସ ଏବଂ ତାହାକୁ ଅବିଚ୍ଛିନ୍ନ କରି ରଖାଯାଇ ପାରିବ; ପଢ଼ା ହେଉଥିବା ପାଠ ଯେତେ ନୀରସ ଅଥବା ପ୍ରେରଣାଦାୟକ ହେଲେ ମଧ୍ୟ ସେଥିରେ କୌଣସି ପରିବର୍ତ୍ତନ ହେବନାହିଁ ।  ଏକ ସଫଳତା ଏଇଥିରୁ ହିଁ ମିଳିଗଲା, ପ୍ରଥମ ପ୍ରତିବନ୍ଧକ ଗୁଡ଼ିକୁ ପ୍ରକୃତରେ ଲଂଘି ହେଲା ।  ଜଣେ ପିଲା ନିଜେ ହାସଲ କରୁଥିବା ପ୍ରଥମ ବିଜୟ, - ଏହିଗୁଡ଼ିକ ହିଁ ପିଲାର ଅନ୍ତଃପ୍ରକୃତି ଉପରେ ଜଣେ ଶିକ୍ଷକ ବିଜୟ ହାସଲ କରିବାର କାରଣ ହେବ:   ଗୋଟିଏ ପିଲାର " ପ୍ରକୃତିଗତ'' ସାମର୍ଥ୍ୟଗୁଡ଼ିକ ଅଥବା ସେଗୁଡ଼ିକର ଅଭାବ ଉପରେ ହିଁ ଶିକ୍ଷକଙ୍କୁ ବିଜୟ ଆଣିଦେବ ।

ପାଠ ପଢୁଥିବା ପିଲାଙ୍କ ଭିତରେ ପ୍ରାୟ ଆରମ୍ଭ କାଳରୁ ହିଁ ଏପରି ଧାରଣାଟିଏ ତିଆରି ହୋଇ ଆସିଥାଏ ଯେ, ଯେକୌଣସି ଶ୍ରେଣୀରେ କେତେ ପିଲା ଥାଆନ୍ତି ଯେଉଁମାନେ କି ନେତା ହୋଇ ଆଗରେ ଆଗରେ ରହିଥାନ୍ତି ଓ ଆଉ

କେତେକ ଥାଆନ୍ତି, ଯେଉଁମାନେ ପଛରେ ପଡ଼ିଥାଆନ୍ତି । ଅପେକ୍ଷାକୃତ ଦୁର୍ବଳ ପିଲାମାନେ ବିଚରା ବହୁତ ଖେଦର ସହିତ ମାନି ନେଇଥାନ୍ତି ଯେ, ଜ୍ୟାମିତି ବିଷୟଟିରେ ରହିଥିବା ସମସ୍ୟାଗୁଡ଼ିକୁ ସେମାନଙ୍କର ମଥାଟା ମୋଟେ ସାଧ କରି ପାରିବନାହିଁ ଏବଂ, ରଚନା ଲେଖିବାରେ ସେମାନେ ନିଶ୍ଚୟ କିଛି ଭୁଲ୍ ଅବଶ୍ୟ କରିବେ ।

ଏହିସବୁ ପ୍ରଶ୍ନ ଉପରେ ସୁଖୋମ୍ଲିନସ୍କି ଆଦୌ ଟାଉଟାଉ ନହୋଇ ଓ ସଂପୂର୍ଣ୍ଣ ମନୋଧାନ ଦେଇ ବହୁତ ଚିନ୍ତା କରିଥିଲେ । ବର୍ଷ ବର୍ଷ ଧରି, ଏପରିକି ଦଶ ଦଶ ବର୍ଷ କାଳ ନିଶ୍ଚିତ ଭାବରେ ନିର୍ଭୁଲ ସମାଧାନ ନପାଇଥିବା ପର୍ଯ୍ୟନ୍ତ ସିଏ ଆପଣାର ପ୍ରତ୍ୟେକଟି ବିଚାରକୁ ବାରମ୍ବାର ପରଖି ଦେଖିଥିଲେ ।

ତଥାପି, ସମସ୍ୟାଟି ଯାହା ଓ ଯେପରି ହୋଇଥାଉ ପଛକେ, ସେଇଟିର ସର୍ବଶେଷ ସମାଧାନ ଅର୍ଥାତ୍ ଉତ୍ତରଟି ଖୋଜି ପାଇସାରିବା ପରେ ସେ ପୂର୍ଣ୍ଣ ବିଶ୍ୱାସର ସହିତ ସେଇଟିକୁ ପ୍ରୟୋଗ କରିବା ଆରମ୍ଭ କରି ବି ଦେଉଥିଲେ । ବିଦ୍ୟାଳୟର ଅନ୍ୟ ଶିକ୍ଷକମାନେ ମଧ୍ୟ ତାଙ୍କର ସେହି ବିଜୟଗୁଡ଼ିକ ବିଷୟରେ ବିଶ୍ୱାସ ସ୍ଥାପନ କରୁଥିଲେ, ଏବଂ, ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ କଥାଟି ହେଉଛି ଯେ, ପିଲାମାନେ ମଧ୍ୟ ସେଗୁଡ଼ିକ ଉପରେ ଆସ୍ଥା ପ୍ରକାଶ କରୁଥିଲେ । ପ୍ରତ୍ୟେକ ପିଲାର ସେହି ବିଶ୍ୱାସଟି ଅବଶ୍ୟ ରହିଥିବା ଆବଶ୍ୟକ, - ସିଏ ବିଶ୍ୱାସ କରୁଥିବ ଯେ ନିରଳସ ଭାବରେ ପ୍ରୟାସ କରି ପାରିଲେ ସିଏ ଆପଣାର ଅଭାବଗୁଡ଼ିକୁ ଅବଶ୍ୟ ସାଧ କରିନେଇ ପାରିବ ଏବଂ ଏହିପ୍ରକାରେ ବିଦ୍ୟାଳୟର ଉତ୍ତମ ଅଗ୍ରଗତି ଓ ପ୍ରଗତି ବିଷୟରେ ସମସ୍ତଙ୍କର ପ୍ରତ୍ୟୟ ମଧ୍ୟ ଆସିଯିବ । ଜଣେ ଶିକ୍ଷକରୂପେ ନିଜର କାର୍ଯ୍ୟ ଆରମ୍ଭ କରିବା ସମୟରେ ସୁଖୋମ୍ଲିନ୍ସ୍କି ସର୍ବପ୍ରଥମେ ତାଙ୍କ ପିଲାଙ୍କର ଅକ୍ଷରଶିକ୍ଷା ଉପରେ ହିଁ ସର୍ବାଧିକ ଦୃଷ୍ଟି ଦେଇଥିଲେ । ପିଲାମାନେ ଲେଖିବାରେ ବଡ଼ ଦୁର୍ବଳ ରହି ଯାଉଥିବାରୁ ହିଁ ବହୁସଂଖ୍ୟାରେ ଗୋଟିଏ ଶ୍ରେଣୀରେ ଏକାଧିକ ବର୍ଷ ରହି ଯାଉଥିଲେ ଏବଂ, ସେମାନଙ୍କର ସେହି ଅସମର୍ଥତାଟିକୁ ଦୂର କରିବାରେ ପୃଥିବୀର କୌଣସି ଶକ୍ତି ଆଦୌ କେବେ ସମର୍ଥ ହେବ ବୋଲି ମନେ ହେଉନଥିଲା । ଦୁଇବର୍ଷ ପ୍ରଗାଢ଼ ପ୍ରଚେଷ୍ଟା ଦ୍ୱାରା ସୁଖୋମ୍ଲିନସ୍କି ସେଭଳି ଦୁର୍ବଳ ପିଲାଙ୍କର ସଂଖ୍ୟାକୁ ଅଧା ହ୍ରାସ କରି ଆଣି ପାରିଥିଲେ । ବିଦ୍ୟାଳୟଟିର

ଇତିହାସରେ ଆମେ ଏଇଟିକୁ ସର୍ବପ୍ରଥମ ସବାବଡ଼ ବିଜୟହାସଲ ବୋଲି ହିଁ କହିପାରିବା: ସର୍ବପ୍ରଥମ ଯୁଦ୍ଧ ତଥା ସର୍ବପ୍ରଥମ ବିଜୟହାସଲ ବୋଲି କହିପାରିବା ।

ସୁଖୋମ୍ଲିନସ୍କି ତା'ପରେ ଗୋଟିଏ ଅନ୍ୟ ସମସ୍ୟାକୁ ନେଇ କାର୍ଯ୍ୟ ଆରମ୍ଭ କଲେ ; ପିଲାମାନଙ୍କ ଭିତରେ କିପରି ଶିକ୍ଷାଲାଭ ନିମନ୍ତେ ଏକ ବଳବତୀ ଆଗ୍ରହ ସୃଷ୍ଟି କରାଯାଇ ପାରିବ, ସେମାନଙ୍କ ଭିତରେ ଏକ ଜ୍ଞାନର ପିପାସା ନିରନ୍ତର ଜାଗ୍ରତ ହୋଇ ରହିଥିବ । ଯଦି ପିଲାଟି ଭିତରେ ସେହି ଆଗ୍ରହଟି ନଥାଏ, ତେବେ ଶିକ୍ଷକର ସକଳ ଶ୍ରମ ପ୍ରଧାନତଃ ବୃଥା ହିଁ ହୋଇ ଯାଉଥିବ । ସେ ବାରମ୍ବାର ପ୍ରାୟ ଅବିଶ୍ରାନ୍ତ ଭାବରେ କହୁଥିଲେ ଯେ, " ଆଗ୍ରହ ଏବଂ ଜିଜ୍ଞାସା ନଥିଲେ କୌଣସି ପାଠଶାଳା କେବେହେଲେ ସମ୍ଭବ ହେବନାହିଁ । ଆମର ଯାବତୀୟ ଖସଡ଼ା ଓ ଯୋଜନା ତଥା ପ୍ରକଳ୍ପ ଯଦି ପିଲାଙ୍କଠାରେ ଶିକ୍ଷା କରିବାର କୌଣସି ଅନୁକୂଳ ମାନସିକତା ନଥାଏ, କେବଳ୍ ନିରର୍ଥକ ହୋଇ ହିଁ ରହିଥିବ ।" ଏକ ପରବର୍ତ୍ତୀ କାଳରେ ସେ ଏହି ପ୍ରାୟ ଏକ ପାରସ୍ପରିକ ବିରୋଧର ଆଭାସ ଦେଉଥିବାର ବିଚାରଟିକୁ ବ୍ୟକ୍ତ କରିଥିଲେ, ଯାହାକି କ୍ରମେ ଗଣିତଶାସ୍ତ୍ରର ସେହି ପ୍ରଖ୍ୟାତ ବିରୋଧାଭାସଟି ରୂପେ ହିଁ ସୁବିଦିତ ହୋଇଥିଲା ଏବଂ ତାହା ସମଗ୍ର ବୈଜ୍ଞାନିକ କ୍ଷେତ୍ରରେ ଅଗ୍ରଗତିରେ ପ୍ରଭୂତ ପ୍ରେରଣା ଆଣି ଦେଇଥିଲା ।

ଶିକ୍ଷା ଲାଭ କରିବାର ଆଗ୍ରହଟି ବିଷୟରେ ଉପରେ ଯେଉଁ କଥାଟିକୁ ସୂଚାଇ ଦିଆଯାଇଛି, ଅଧ୍ୟୟନରେ ସଫଳତା ଲାଭ କରୁଥିବାର ଏକ ଉତ୍ତରୋତ୍ତର କ୍ରମରେ ହିଁ ତାହା ସମ୍ଭବ ହୋଇଥାଏ । ଏହି ଆଗ୍ରହଟି ପିଲାଙ୍କର ଆଗ୍ରହ ମଧ୍ୟରୁ ନୁହେଁ, ଶିକ୍ଷା କରିବା ନିମନ୍ତେ ରହିଥିବା ସେମାନଙ୍କର ସାମର୍ଥ୍ୟରୁ ହିଁ ଜନ୍ମଲାଭ କରେ ।

ଅର୍ଥାତ୍, ପାଠଶାଳାର ଶିକ୍ଷାଲାଭରେ ଉତ୍ତମ ଅଗ୍ରଗତି ଦେଖାଇ ପାରିବାକୁ ହେଲେ ତାକୁ ପାଠଶାଳାର ବାସ୍ତବ ଶିକ୍ଷାଲାଭର କ୍ଷେତ୍ରରେ ହିଁ ଉତ୍ତମ ଅଗ୍ରଗତି ଦେଖାଇବାକୁ ହିଁ ପଡ଼ିବ ।

ସୁଖୋମ୍ଲିନସ୍କି ସେହି ବିରୋଧଟିକୁ ଦର୍ଶାଇ ଦେଇ ତାହାର ଏକ ସମାଧାନ ମଧ୍ୟ ବାହାର କରିବାକୁ ଆଗଭର ହୋଇ ଯାଇଥିଲେ । ସମାଧାନ ଅତ୍ୟନ୍ତ "ସରଳ" ଥିଲା : "ପିଲାମାନଙ୍କୁ ଖାଲି ପଢ଼ାଇଦେଲେ ତାହା ଆଦୌ

ଯଥେଷ୍ଟ ହେବନାହିଁ, - ସେମାନେ ପାଠ ପଢ଼ି ସଫଳତା ମଧ୍ୟ ହାସଲ କରି ପାରୁଥିବେ । ଯଦି ପିଲାକୁ ଗୋଟିଏ ବିଷୟରେ ଶିକ୍ଷା ଦିଆଯିବ ଏବଂ ବିଦ୍ୟାଳୟର କ୍ରିୟାଶୀଳ ଜୀବନଟି ମଧ୍ୟରେ ଅନୁରୂପ ପ୍ରେରଣାଟିକୁ ମଧ୍ୟ ଅଙ୍ଗେ ନିଭାଇ ପାରିବ ଓ ସେଥିରୁ ପ୍ରାପ୍ତ ହେଉଥିବା ଅନୁଭବ କରୁଥିବ, ତେବେ ସିଏ ପାଠଶାଳାର ପାଠ୍ୟକ୍ରମରେ ଅବଶ୍ୟ ଆଗ୍ରହ ପ୍ରକାଶ କରିବ ଏବଂ ତା'ପରେ କୌଣସି ନୂତନ କ୍ଷେତ୍ର ଉପରେ ବିଜୟ ହାସଲ କରିବା ନିମନ୍ତେ ଅଗ୍ରସର ବି ହୋଇଯିବ । ଏହି ଯେଉଁ ଆପାତ ବିରୋଧଟିକୁ ସୁଖୋମ୍ଲିନ୍‌ସ୍କି ଦେଖାଇ ଦେଇ ପାରିଛନ୍ତି, ଜଣେ ଶିକ୍ଷକ ନିମନ୍ତେ ତଦ୍ୱାରା ଏକ ଫଳପ୍ରଦତମ ଶିକ୍ଷାକୌଶଳ ଉପଲବ୍ଧ ହୋଇପାରିଛି ।

ସଫଳତା ମିଳିବ ଓ ପ୍ରେରଣା ଲାଭ କରିବାର ଆନନ୍ଦ ମଧ୍ୟ ମିଳୁଥିବ, - ଏହାକୁ ହିଁ ଆମେ ବିଂଶ ଶତାବ୍ଦୀର ସମୁଦାୟ "ଶିକ୍ଷା-ଯନ୍ତ୍ର" ବୋଲି ନିଶ୍ଚୟ କହିବା, - ଶିକ୍ଷାଗ୍ରହଣର ଅସଲ ମୁହୂର୍ତ୍ତଟି ରୂପେ ଚିହ୍ନି ରଖିବା, - ଏହା ଏପରି ଗୋଟିଏ ଶକ୍ତି ଯାହାକି ପିଲାର ସକଳ ଉଦାସୀନତାକୁ ଖଣ୍ଡ ଖଣ୍ଡ କରି ଭାଙ୍ଗିଦେବ । ସିଏ ତା' ପାଠଶାଳା ପ୍ରତି ଆଗ୍ରହୀ ହେବ ଓ ଅଧ୍ୟୟନ ଆଡ଼କୁ ଆକୃଷ୍ଟ ହୋଇ ଆସିବ ।

ଏକଥା ଅବଶ୍ୟ ସତ ଯେ ସବୁ ପିଲା ବ୍ୟାକରଣ ଶିକ୍ଷାରେ କଦାପି ସଫଳ ହେବେନାହିଁ, ଫିଜିକ୍‌ସ୍ କିମ୍ବା କେମିଷ୍ଟ୍ରୀରେ ମଧ୍ୟ ନୁହେଁ । ତେଣୁ, ଅସଲ କଥା ହେଉଛି ଆମେ ଧୈର୍ଯ୍ୟ ଅବଲମ୍ବନ କରିବା ଓ ପ୍ରତ୍ୟେକ ପିଲା ନିମନ୍ତେ କୌଣସି ନା କୌଣସି କ୍ଷେତ୍ର ଖୋଜି ବାହାର କରିବା, ଯେଉଁଥିରେ କି ସିଏ ନିଜକୁ ନିଜର ଯଥାର୍ଥ ସଦନରେ ରହିଥିବା ପରି ଅନୁଭବ କରି ପାରିବ; ସେଥିରେ ସେ କେବଳ ମାତ୍ର ସଫଳତା ନୁହେଁ, ମାତ୍ର " ଉଲ୍ଲେଖଯୋଗ୍ୟ ସଫଳତା" ହାସଲ କରି ପାରିବ । ଅନ୍ତତଃ ପ୍ରତ୍ୟେକ ପିଲାପାଇଁ ଏପରି ଗୋଟିଏ କ୍ଷେତ୍ର ରହିଥିବା ଉଚିତ, ଯେଉଁଥିରେ କି ସେ ଅନ୍ୟ ସାଙ୍ଗପିଲାମାନଙ୍କୁ ଅତିକ୍ରମ କରି ଆଗକୁ ଚାଲିଯାଇ ପାରୁଥିବ ଏବଂ ଆପଣାକୁ ପ୍ରକୃତରେ ବଳବାନ୍ ଏବଂ ବୁଦ୍ଧିଯୁକ୍ତ ବୋଲି ଅନୁଭବ ମଧ୍ୟ କରୁଥିବ ।

ଅନେକ ଶିକ୍ଷାବିତ୍ ଯେପରି ଆମର ହୃଦ୍‌ବୋଧ କରାଇବା ନିମନ୍ତେ ଇଚ୍ଛା

କରୁଥାନ୍ତି, ଏଠାରେ ଖେଳପଡ଼ିଆର ପ୍ରତିଦ୍ୱନ୍ଦ୍ୱିତା ମାନଙ୍କରେ ଜିତାପଟ ହାସଲ କରିବା ଭଳି ଆଦୌ କିଛି କୁହା ଯାଉନାହିଁ, କାରଣ ବେଗ, ଦକ୍ଷତା ତଥା ଯଥାର୍ଥତା ପ୍ରଭୃତି କ୍ଷେତ୍ରରେ ବାହାରର ଅନ୍ୟମାନେ ତ ଅବଶ୍ୟ "ସର୍ବଶ୍ରେଷ୍ଠ'' ବୋଲି ପ୍ରତିପାଦିତ ହେଉଥିବେ । ଯାହାଦ୍ୱାରା ଜଣେ ପିଲା ମଧ୍ୟ ନ୍ୟୂନ ଏବଂ ଅପମାନିତ ବୋଧ କରିବ ଓ ନିଜର ଆତ୍ମବିଶ୍ୱାସକୁ ହରାଇ ପକାଇବ ବୋଲି କୌଣସି ଆଶଙ୍କା ରହିଥିବ, ସେହି ଶତାଧିକ ଯାବତୀୟ ଅବସରକୁ ସୁଖୋମ୍ଲିନ୍ସ୍କି ଅତ୍ୟନ୍ତ ସୁବିବେଚିତ ଭାବରେ ଏହି କ୍ଷେତ୍ରରେ ବର୍ଜିତ କରି ହିଁ ରଖିଥିଲେ । ଶରୀରିକ ବ୍ୟାୟାମ, ଯାହାକି ଅଙ୍ଗସଞ୍ଚାଳନର କ୍ଷେତ୍ରରେ ସୌନ୍ଦର୍ଯ୍ୟ ତଥା ସୁଷମାର ଦ୍ୟୋତକ ହୋଇ ରହିଥାଏ, - ତାହା ପାଠଶାଳାର ପିଲାମାନଙ୍କ ନିମନ୍ତେ ସର୍ବୋତ୍ତମ ଭାବରେ ଉପଯୁକ୍ତ ହୋଇ ରହିଥାଏ; ମାତ୍ର ଅନ୍ୟ କ୍ରୀଡ଼ା-ପ୍ରତିଦ୍ୱନ୍ଦ୍ୱିତାରେ ଜଣେ ଜଣେ ବିଶେଷ ବ୍ୟକ୍ତିଙ୍କୁ ସର୍ବଶ୍ରେଷ୍ଠ ବୋଲି ଚିହ୍ନଟ କରାଇ ଦେବା ହିଁ ପ୍ରକୃତରେ ଲକ୍ଷ୍ୟ ଥାଏ, - ସେସବୁକୁ ପିଲାଙ୍କର ପାଠଶାଳାରେ କଦାପି ଅନ୍ତର୍ଭୁକ୍ତ କରି ରଖି ହେବନାହିଁ । ସୁଖୋମ୍ଲିନ୍ସ୍କି ବରଂ ଶରୀରଶ୍ରମକୁ ଅଧିକ ଗୁରୁତ୍ୱ ପ୍ରଦାନ କରୁଥିଲେ । କାରଣ ସେଥିରେ ଢେର ମାନସିକ ଉଦ୍ୟମ ମଧ୍ୟ ଜଡ଼ିତ ହୋଇ ରହିଥିଲା । ଏହି କ୍ଷେତ୍ରଟିରେ ପ୍ରତ୍ୟେକ ଶିଶୁର ଅବଶ୍ୟ ଉଲ୍ଲେଖଯୋଗ୍ୟ ସଫଳତା ଅର୍ଜନ କରିବା ଉଚିତ ଏବଂ ତାହା ଯେ ତା'ର ଶ୍ରେଣୀକାର୍ଯ୍ୟରେ ମଧ୍ୟ ହୁଏତ ଏକ ସକାରାତ୍ମକ ପ୍ରଭାବ ପକାଇ ପାରିବ, ସେ ସେକଥାଟି ଉପରେ ବିଶ୍ୱାସ ରଖିଥିଲେ ।

ଏବଂ, ପିଲାମାନଙ୍କ ମଧ୍ୟରେ କିପରି ଅବିଚ୍ଛିନ୍ନ ଉଦ୍ୟମ କରିବାର ଗୁଣଟିରେ ବୃଦ୍ଧିସାଧନ କରିବାକୁ ହେବ, ସୁଖୋମ୍ଲିନ୍ସ୍କି ତା'ପରେ ସେହି ସମ୍ପର୍କରେ ଗୋଟିଏ ସୁସ୍ପଷ୍ଟ ସିଦ୍ଧାନ୍ତର ବିସ୍ତୃତ ଭାବରେ ଚର୍ଚ୍ଚା କରିଛନ୍ତି । ସିଏ ଏହି କଥାଟିକୁ ମହତ୍ତ୍ୱପୂର୍ଣ୍ଣ ବୋଲି ବିଚାର କରିଛନ୍ତି ଯେ ପିଲାମାନେ କୃଷିକ୍ଷେତ୍ର ଅଥବା ଶିଳ୍ପଶାଳା ମାନଙ୍କର ମଧ୍ୟ ନିଶ୍ଚୟ କାମ କରିବେ । ଯେକୌଣସି ପ୍ରକାରର କାମ କଲେ ମଧ୍ୟ ହୋଇଯିବ ବୋଲି ସିଏ ଆଦୌ ମତ ଦେଇନାହାନ୍ତି; - ପିଲାମାନେ ଖାସ୍ ସେହିସବୁ କାର୍ଯ୍ୟ କରିବେ, ଯେଉଁଗୁଡ଼ିକରୁ ଏକ ଫଳ ମଧ୍ୟ ମିଳୁଥିବ । ତେବେଯାଇ ତାହା ଶିକ୍ଷାର କ୍ଷେତ୍ରରେ ପ୍ରକୃତରେ କାମ ଦେବ ଓ ପିଲାମାନଙ୍କୁ କାମକୁ ଭଲ ପାଇବାର ଶିକ୍ଷା ଦେବ । ସେହି କାର୍ଯ୍ୟ ଶାରୀରିକ ହୋଇପାରେ

ଓ ମାନସିକ ମଧ୍ୟ ହୋଇପାରେ । ତାଙ୍କରି ଶବ୍ଦରେ, " କେବଳ ଶ୍ରମ ଖଟିବା ନିମନ୍ତେ ପିଲାମାନଙ୍କର ଆଗ୍ରହ ନଥାଏ' '। ଏବଂ, ଯଦି ଆଗ୍ରହ ନଥାଏ, ତେବେ ସେହି କାର୍ଯ୍ୟକୁ ଭଲ ପାଇବା ପୁଣି କିପରି ସମ୍ଭବ ହେବ ? ଯେଉଁସବୁ କର୍ମ ସମ୍ପାଦନ କରିବାପାଇଁ ଚିନ୍ତା କରିବା ଆବଶ୍ୟକ ହୁଏ, ସୃଜନାତ୍ମକ ଚିନ୍ତା କରିବା ଆବଶ୍ୟକ ହୁଏ, ସଫଳତା ଅର୍ଜନ କରିବାଲାଗି ଆସ୍ପୃହା ଜନ୍ମେ ଏବଂ ତେଣୁ ପ୍ରକୃତରେ ଏକ ଆଗ୍ରହକୁ ସମ୍ଭବ କରି ଆଣେ, ଜଣେ ଶିକ୍ଷକ ତାହାକୁ ହିଁ ମହତ୍ତ୍ୱପୂର୍ଣ୍ଣ ବୋଲି ଜାଣିବ । ଗୋଟିଏ ସହଜ ଦୃଷ୍ଟାନ୍ତ ଦେଇ କହିଲେ, ପିଲାମାନେ ଜମିରେ ଯାଇ କାର୍ଯ୍ୟ କରନ୍ତୁ ବୋଲି ଇଚ୍ଛା କରୁଥାଏ, କିମ୍ବା ସେମାନେ ଫୁଲକିଆରୀ ଗୁଡ଼ିକର ଯତ୍ନ ନିଅନ୍ତୁ ବୋଲି ଚାହୁଁଥାଏ, ତେବେ ସେଥିପାଇଁ ଉତ୍ତମ ଜମି କିଛି ନେବାକୁ ହେବ । ସବାଆଗ କୃଷିର ଦୃଷ୍ଟିରୁ ତାହା ନିଶ୍ଚୟ ଅନୁକୂଳ ହୋଇଥିବ ମାତ୍ର, ସୁଖୋମ୍ଲିନସ୍କି ଯେପରି କହିଛନ୍ତି, ଶିକ୍ଷକ ଦୃଷ୍ଟିରୁ ଆଦୌ ନୁହେଁ, ଗୋଟିଏ ଉର୍ବର ଜମିରେ କ୍ଷେତ୍ର ହେବ ଏବଂ ପିଲାମାନେ ଉତ୍ତମ ପ୍ରକାରେ ସେଥିରୁ କିଛି ନା କିଛି ଅମଳ କରି ପାରିବେ । ହଁ, କେତେ ବେଶୀ ପରିମାଣରେ ଅମଳ ହୋଇ ପାରିଲା ତାହାର ସେତେ ଅବଶ୍ୟ ମୂଲ୍ୟ ନାହିଁ; କିନ୍ତୁ ତାହାକୁ ସମ୍ଭବ କରିବାରେ କରିବାରେ ଯେତେ ଅଧିକ ଅସୁବିଧାକୁ ଅତିକ୍ରମ କରିବାକୁ ହୋଇଥିବ, - ତାହାରି ଅନୁପାତ ଅନୁସାରେ ହିଁ ସଫଳତା ତଥା ଆନନ୍ଦର ଆକଳନ କରାଯାଇ ପାରୁଥିବ । ଯାହା ଅସୁବିଧା ହୋଇ ଦେଖା ଯାଉଥିବ ଓ ଯାହାକୁ ଅତିକ୍ରମ କରିବା ପ୍ରାୟ ଅସମ୍ଭବ ବୋଲି ଲାଗୁଥିବ, ପିଲାମାନେ ସେହିଗୁଡ଼ିକର ସମ୍ମୁଖୀନ ହେବାଲାଗି ହିଁ ସୁଯୋଗ ପାଉଥିବେ । ସେହି ଅସମ୍ଭବ ଉପରେ ବିଜୟଲାଭ କରିବା ନିମନ୍ତେ ହିଁ ସେମାନଙ୍କୁ ସର୍ବବିଧ ସାହାଯ୍ୟ କରା ହେଉଥିବ । ସେହି ବାଲ୍ୟକାଳରୁ ହିଁ ଜଣେ ବ୍ୟକ୍ତି ଏହିପରି ଅନୁଭବ କରିବାର ଅବସରଗୁଡ଼ିକୁ ପାଉଥିବ ଯେ ସିଏ ପ୍ରକୃତରେ ସବୁକିଛି କରି ପାରିବ; - ନିଜର ଗପବହି ମାନଙ୍କରେ ଯେଉଁ ହିରୋର ସିଏ ଏକଦା ଏତେ ପ୍ରଶଂସା କରୁଥିଲା, ସିଏ ନିଜେ ହିଁ ହେଉଛି ସେହି ହିରୋ ବୋଲି ସିଏ ଉପଲବ୍ଧି କରୁଥିବ । ଏହିପରି ଭାବରେ ଘଟଣାକ୍ରମେ ସେ ସେହି ବୀରମାନଙ୍କ ବିଷୟରେ ଅଧିକ ସଚେତନ ହେବାରେ ଲାଗିଥିବ ଏବଂ ସେମାନଙ୍କୁ ଅନୁକରଣ କରିବା ନିମନ୍ତେ ଅଧିକ ଆଗ୍ରହୀ ମଧ୍ୟ ହେଉଥିବ । କେବଳ ଗୁଡ଼ାଏ ଶବ୍ଦର ପ୍ରୟୋଗ କରି ଆମେ ପ୍ରତ୍ୟେକ ଶିଶୁର ପ୍ରକୃତି ଭିତରେ ରହିଥିବା ବଳବାନ୍, ସାହସୀ ତଥା ବୀରୋଚିତ ଦିଗଟିକୁ କଦାପି

ପ୍ରକଟ କରି ଆଣି ପାରିବାନାହିଁ ଏବଂ ସିଏ ଯେ ପ୍ରକୃତରେ କ'ଣସବୁ ସାଧ କରିପାରିବ, ତାକୁ ସେଗୁଡ଼ିକୁ ଆଦୌ ଦର୍ଶାଇ ଦେଇ ପାରିବାନାହିଁ । ବାସ୍ତବ ଅସୁବିଧା ଏବଂ ପ୍ରତିବନ୍ଧକ ଉପରେ ବିଜୟ ହାସଲ କରିବାଦ୍ୱାରା ହିଁ ତାହା ସମ୍ଭବ ହେବ ।

ଶିକ୍ଷାର୍ଥୀମାନଙ୍କର ଶ୍ରମକୁ କିପରି ଅଧିକରୁ ଅଧିକ ପରିମାଣରେ ଲାଘବ କରି ଆଣିହେବ, ଶତାବ୍ଦୀ ଶତାବ୍ଦୀ ଧରି ଶିକ୍ଷାଜଗତର ତତ୍ତ୍ୱକାରମାନେ ସେହି ବିଷୟରେ ଉପାୟସବୁ ବାହାର କରିବା ନିମନ୍ତେ ବିଚାର କରି ଆସିଛନ୍ତି । ସୁଖୋମ୍ଲିନ୍‌ସ୍କି ଅନ୍ୟ ପକ୍ଷରେ ସତେଅବା ସୁବିବେଚନା ଦ୍ୱାରା ହିଁ ଦ୍ୱନ୍ଦ୍ୱ ଏବଂ ଅଡୁଆର ପରିସ୍ଥିତିଗୁଡ଼ିକର ସୃଷ୍ଟି ହିଁ କରିଛନ୍ତି : ସ୍ୱପ୍ନ ଓ ସମ୍ଭାବନା ତଥା ଯୋଜନା ଓ ସେଗୁଡ଼ିକର କ୍ରିୟାନ୍ୱୟନ ମଧ୍ୟରେ ସେ ସେହି ସ୍ଥିତିଗୁଡ଼ିକର ସୃଷ୍ଟି କରିଛନ୍ତି । ପାଞ୍ଚଶହ ପିଲାଙ୍କ ନିମନ୍ତେ ସିଏ ଅଶୀ ପ୍ରକାରର ଭିନ୍ନ ଭିନ୍ନ କର୍ମାଗ୍ରହର ଅନୁଧାବନ ନିମନ୍ତେ ସୁଯୋଗଗୁଡ଼ିକୁ ମେଲି ଦେଇ ପାରିଥିଲେ ଏବଂ, ଆହୁରି ବଡ଼ କଥାଟିଏ ହେଉଛି ଯେ, ସେହି ସୁଯୋଗଗୁଡ଼ିକୁ ସ୍ୱୟଂ ସେହି ପିଲାମାନେ ହିଁ ଗଢ଼ି ପ୍ରସ୍ତୁତ କରି ରଖିଥିଲେ । କେତେ କେତେ ହସ୍ତକର୍ମ ଲାଗି ଭିତ୍ତିମାନ ତିଆରି କରି ରଖିଥିଲେ, ତେଣେ ରେଡ଼ିଓ-ଇଲେକ୍ଟ୍ରୋନିକ୍‌ସ ସକାଶେ ମଧ୍ୟ ବ୍ୟବସ୍ଥାମାନ ଖଞ୍ଜି ରଖିଥିଲେ । ଶୁଣିବାକୁ ମିଳେ ଯେ, ଜୀବନର ଶେଷଆଡ଼କୁ ସୁଖୋମ୍ଲିନ୍‌ସ୍କି ବିଦ୍ୟାଳୟ ଲାଗି ଗୋଟିଏ ହାତତିଆରି ହେଲିକପ୍ଟର ତିଆରି କରି ରଖିବାପାଇଁ ମଧ୍ୟ ସ୍ୱପ୍ନ ଦେଖୁଥିଲେ । ଏବଂ, ସମୟ ପାଇଥିଲେ ସେମାନେ ଯେ ସେଇଟିକୁ ମଧ୍ୟ ନିଶ୍ଚୟ ଗଢ଼ି ପାରିଥାଆନ୍ତେ, ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ ।

ଅପେକ୍ଷାକୃତ ଅଧିକ ବୟସର କିଶୋରମାନେ ନିଜ ସାମର୍ଥ୍ୟର ପ୍ରମାଣ ଦିଅନ୍ତୁ ଏବଂ ଆପଣାକୁ ପ୍ରକୃତରେ ସମର୍ଥ ବୋଲି ଯେ ସାବ୍ୟସ୍ତ କରନ୍ତୁ, ସୁଖୋମ୍ଲିନ୍‌ସ୍କି ସର୍ବଦା ସେମାନଙ୍କୁ ଉତ୍ସାହିତ କରୁଥିଲେ । ସେହି କିଶୋର ବୟସରେ ନିଜର ଦକ୍ଷତାଗୁଡ଼ିକୁ ପ୍ରମାଣ କରି ଦେଖାଇ ଦେବା ନିମନ୍ତେ ହିଁ ସ୍ୱତଃ ଏକ ପ୍ରବୃତ୍ତି ଜନ୍ମଲାଭ ମଧ୍ୟ କରିଥାଏ, - ତେଣୁ, ଶିଳ୍ପଶାଳା ମାନଙ୍କରେ ତଥା କର୍ମାଗ୍ରହ-ଗୋଷ୍ଠୀଗୁଡ଼ିକରେ ସେମାନେ ସେହିଭଳି କାର୍ଯ୍ୟମାନ କରନ୍ତୁ ବୋଲି ସେ

ସେମାନଙ୍କୁ ସତେ ଉତ୍ସାହ ପ୍ରଦାନ କରୁଥିଲେ । ପିଲାମାନେ ନିଜର ସମବୟସୀ ମାନଙ୍କ ସହିତ ଏକାଠି କାମ କରୁଥିଲେ ଏବଂ ନିଜର ଦକ୍ଷତାଗୁଡ଼ିକୁ ଦେଖାଇ ଦେଉଥିଲେ । ପାବ୍ଲିଶ୍ ବିଦ୍ୟାଳୟର ସାନ ପିଲାମାନେ ଅନ୍ୟତ୍ର ସେମାନଙ୍କର ସମବୟସୀ ମାନଙ୍କର ତୁଳନାରେ ପ୍ରକୃତରେ କେତେ ଅଧିକ "କଷ୍ଟସ୍ୱୀକାର" କରୁଛନ୍ତି ବୋଲି ପରିହାସ ମଧ୍ୟ କରୁଥିଲେ । ବୁଦ୍ଧିମତ୍ତା ସହିତ ମନଖୁସୀରେ ଏକ ସମୂହର ଅଂଶରୂପେ କାର୍ଯ୍ୟ କରିବାଦ୍ୱାରା ସକଳ ଶୃଙ୍ଖଳାଦ୍ୱାରା ମଣ୍ଡିତ ହୋଇ ଯେଉଁ ପ୍ରଭାବଟି ପ୍ରକୃତରେ ପଡ଼ିଥାଏ, ତାହାର କୌଣସି ସୀମା ହିଁ ନଥାଏ ।

କର୍ମ କରିବା ଜନିତ ଉତ୍ସାହର ଏକ ସଂକ୍ରମଣଶକ୍ତି ମଧ୍ୟ ରହିଛି । ପିଲାମାନେ କିପରି ନିଜେ କରୁଥିବା କାର୍ଯ୍ୟଟିକୁ ଉପଭୋଗ କରିବେ, ସେହି କଥାଟିକୁ କୌଣସି ସୂତ୍ର ଅନୁସାରେ ଶିଖାଇ ହେବନାହିଁ ସିନା, ମାତ୍ର ସେହି ଖୁସୀ ଓ ସେହି ଉପଭୋଗ ସେମାନଙ୍କ ମଧ୍ୟକୁ ଅବଶ୍ୟ ସଂକ୍ରାମିତ ହୋଇ ଆସିବ । ସୁଖୋମ୍ଲିନ୍‌ସ୍କି ଏହି କଥାଟି ଉପରେ ଖୁବ୍ ଜୋର୍ ଦେଉଥିଲେ ଯେ, ପିଲାମାନେ ଏପରି ଏକ ବାତାବରଣ ଭିତରେ ରହିଥିବେ, ଯେଉଁଠି କି ସମସ୍ତେ କର୍ମରେ ରତ ଥିବେ । ତାଙ୍କର ସବୁ ଛାତ୍ର ନିରନ୍ତର କ୍ରିୟାଶୀଳ ହୋଇ ହିଁ ରହିଥିଲେ, - ସମସ୍ତେ କୌଣସି ନା କୌଣସି ଉଦ୍ଦେଶ୍ୟରେ ସିଦ୍ଧି ଲାଗି କର୍ମରତ ଥିଲେ ; ବଡ଼ ବଡ଼ ପୁଅ ଓ ଝିଅ ସମସ୍ତେ ଏବଂ ସବୁଯାକ ଶିକ୍ଷକ । ସେହିପରି ଗୋଟିଏ ବାତାବରଣରେ ପାଠ ପଢୁଥିବା ପିଲାମାନ ଶ୍ରମକୁ ଏକ ନୈତିକ ଗୁଣରୂପେ ହିଁ ପୂର୍ଣ୍ଣ ସମ୍ମାନର ଆଖିରେ ଦେଖୁଥିଲେ ।

ଅଧ୍ୟୟନ ଯେପରି ପ୍ରକୃତରେ ଫଳପ୍ରଦ ହୋଇପାରିବ, ସେଥିପାଇଁ ଅବଶ୍ୟ ଦୃଷ୍ଟି ରହିଥିବ ଯେ, ଗୋଟିଏ ଶ୍ରେଣୀର ମୂଳଦୁଆ ସ୍ୱରୂପ ଏକ "ବୁଦ୍ଧିଦ୍ୱାରା ସକ୍ରିୟ ପୃଷ୍ଠଭୂମି ମଧ୍ୟ ରହିଥିବ ଏବଂ ଶିକ୍ଷା ନିମନ୍ତେ ସମସ୍ତେ ସାଧାରଣତଃ ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ମଧ୍ୟ ରଖୁଥିବେ । ଏହି କ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ କଥାଗୁଡ଼ିକ ହେଉଛି, ପିଲାମାନେ ପରସ୍ପର ମଧ୍ୟରେ ସାରଗର୍ଭକ ବିଷୟଗୁଡ଼ିକର ଚର୍ଚ୍ଚା କରୁଥିବେ ଏବଂ ସେମାନଙ୍କ ଭିତରେ ବୁଦ୍ଧିଦ୍ୱାରା ପରିପ୍ରେରିତ ନାନାବିଧ ଆଗ୍ରହ ମଧ୍ୟ ବିଦ୍ୟମାନ୍ ଥିବ ।

ଶ୍ରମପ୍ରତି ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀକୁ ଉତ୍ସାହିତ କରି ରଖିବାକୁ ହେଲେ

ଏକ "ଶ୍ରମାନୁକୂଳ ପୃଷ୍ଠଭୂମି'' ମଧ୍ୟ ଅତ୍ୟାବଶ୍ୟକ । ସମୂହରେ ରହିଥିବା ସମସ୍ତେ ହିଁ ସେହି ପୃଷ୍ଠଭୂମିଟିକୁ ତିଆରି କରି ରଖିଥିବେ ଏବଂ ତାହାଦ୍ୱାରା ବ୍ୟକ୍ତିଗତ ଭାବରେ ପ୍ରତ୍ୟେକ ଶିକ୍ଷାର୍ଥୀର ଶକ୍ତିବୃଦ୍ଧି ଘଟୁଥିବ । ଏବଂ, ଏପରି ହୁଏତ ହୋଇପାରେ ଯେ, ଏହି "ଶ୍ରମାନୁକୂଳ ପୃଷ୍ଠଭୂମି''ଟି (ବୌଦ୍ଧିକ, ନୀତିଗତ, ସୌନ୍ଦର୍ଯ୍ୟବୋଧଗତ ଏବଂ ଶରୀରଶ୍ରମ ସହିତ ସମ୍ବନ୍ଧିତ ହୋଇ ରହିଥିବା ଭୂମିଟି) ସେହି ବ୍ୟବସ୍ଥାଗତ କ୍ରିୟାଶୀଳତାଟିକୁ ଅବଶ୍ୟ ଯୋଗାଇଦେଇ ପାରୁଥିବ, ଯାହାକୁ ମାଧ୍ୟମ କରି ସମୂହ ବ୍ୟକ୍ତି ଉପରେ ପ୍ରଭାବ ପକାଇ ପାରୁଥିବ ତଥା ବ୍ୟକ୍ତି ମଧ୍ୟ ସମୂହ ଉପରେ ପ୍ରଭାବ ପକାଉଥିବ । କୌଣସି ପ୍ରକାରର ହୁକୁମ, ଦାବୀ, ବାଧବାଧକତା, ପ୍ରଲୋଭନ ଅଥବା ଶାସ୍ତିପ୍ରଦାନ ଦ୍ୱାରା ନୁହେଁ, ମାତ୍ର ସମଷ୍ଟିଗତ ଜୀବନର ସେହି ସମଗ୍ର ବାତାବରଣଟି ଦ୍ୱାରା ହିଁ ପ୍ରତ୍ୟେକ ପିଲାର କାର୍ଯ୍ୟଗୁଡ଼ିକ ପରିଚାଳିତ ହେଉଥିବ । ସେହି ବାତାବରଣରେ ସାଧୁତା, କର୍ମାନୁରାଗ ଏବଂ ବୌଦ୍ଧିକ ପ୍ରୟାସ ହିଁ ନିର୍ଣ୍ଣାୟକ ହୋଇ ରହିଥିବେ ।

କେତେ ବର୍ଷ ତଳେ ଆମେରିକାରେ " ଦୁଇ ପ୍ରକାରର ଶୈଶବ: ଆମେରିକା ଏବଂ ସୋଭିଏଟ୍ ଋଷିଆ'' ବୋଲି ପୁସ୍ତକଟିଏ ପ୍ରକାଶ ପାଇଥିଲା । ପୁସ୍ତକଟିର ଲେଖକ, ସୁବିଦିତ ମନୋବୈଜ୍ଞାନିକ ତଥା ସମାଜବିଜ୍ଞାନୀ ଶ୍ରୀଯୁକ୍ତ ଉରି ବ୍ରୋଫେନ୍‌ବ୍ରେନର୍ ବହୁ ଆୟାସ ପୂର୍ବକ ଏହି ଦୁଇ ଦେଶର ପିଲାମାନଙ୍କୁ ନେଇ ଏକ ତୁଳନାତ୍ମକ ଅଧ୍ୟୟନ ପ୍ରସ୍ତୁତ କରିଥିଲେ । ସର୍ବାଧୁନିକ ସମାଜ ଗବେଷଣାର ପଦ୍ଧତିଗୁଡ଼ିକ ଦେଇ ସେ ସେହି ଅଧ୍ୟୟନଟିକୁ କରିଥିଲେ । ସେଥିରେ ସେ ଦର୍ଶାଇଥିଲେ ଯେ, ସୋଭିଏଟ୍ ଋଷିଆରେ କିଶୋର ବୟସର ପିଲାମାନେ ଆମେରିକାରେ ଥିବା ସେମାନଙ୍କର ସମବୟସୀଙ୍କ ତୁଳନାରେ ଏକ ଅଧିକ ଉଚ୍ଚ ନୈତିକ ଗୁଣସମ୍ପନ୍ନତାର ପରିଚୟ ହିଁ ଦେଉଥାନ୍ତି । ସୋଭିଏଟ୍ ଋଷିଆରେ ପ୍ରଦତ୍ତ ହେଉଥିବା ଶିକ୍ଷାର ଅନ୍ତର୍ନିହିତ ସ୍ୱଭାବଟିକୁ ଆବିଷ୍କାର କରିବାକୁ ଯାଇ ଉରି ବ୍ରୋଫେନ୍‌ବ୍ରେନର୍ ଅନୁକରଣ ଏବଂ ପ୍ରତିରୂପଣର ଗୋଟିଏ ସିଦ୍ଧାନ୍ତର ବିଶଦ ବ୍ୟାଖ୍ୟା ଉପସ୍ଥାପିତ କରିଥିଲେ ଯେଉଁଥିରେ କି ସେ ଘୋଷଣା କରିଥିଲେ ଯେ, ସିଏ ଅଧ୍ୟୟନ କରୁଥିବା ପିଲାମାନଙ୍କର ସାମନାରେ ଓ ଅଭିଳଷିତ ଆଚରଣର ମଡ଼େଲ୍‌ଗୁଡ଼ିକ ସର୍ବଦା ହିଁ ରହିଥିଲେ ଏବଂ ତେଣୁ ସେମାନେ ସେଗୁଡ଼ିକ ଅନୁସାରେ ନିଜ ଜୀବନଟିକୁ ମଧ୍ୟ ତିଆରି କରି ପାରୁଥିଲେ । ହଁ, ସମ୍ଭବତଃ ଏପରି ମନେ

ହେଉଛି ଯେ, "ପ୍ରତିରୂପଣ'' ଶବ୍ଦଟି ମଧ୍ୟରେ ଏକ ଆଧୁନିକ ବ୍ୟଞ୍ଜନା ରହିଥିଲେ ମଧ୍ୟ ଏଠାରେ ଆଲୋଚିତ ଶିକ୍ଷା ତଥା ଚରିତ୍ରଗଠନର ପଦ୍ଧତିଟି ବିଷୟରେ ତାହା ଆଦୌ ଗୋଟିଏ ସମ୍ୟକ ଧାରଣା ଦେଇ ପାରିବନାହିଁ । ବାହାରେ ଭିନ୍ନ ହୋଇ ରହିଥିବା ଆଦୌ କୌଣସି ପ୍ରତିରୂପ ନୁହେଁ, ଛାତ୍ରମାନେ ନିଜକୁ ସେହି ମଡ଼େଲ୍‌ଗୁଡ଼ିକ ସହିତ ତୁଳନା କରୁଥିବା ଦ୍ୱାରା ବି ନୁହେଁ, - ମାତ୍ର ଏକ ସାମଗ୍ରିକ ସାମୂହିକ ବାତାବରଣରେ ରହିଥିବା ସମୂହଜୀବନଗତ ପ୍ରେରଣାଗୁଡ଼ିକ ହିଁ ପିଲା ଉପରେ ପ୍ରଭାବ ପକାଉଥାଏ, ତାହାକୁ ଉତ୍‌ବୋଧିତ କରାଏ ଏବଂ ତା'ର ଆଚରଣକୁ ଏକ ଶିକ୍ଷାନୁକୂଳ ଫଳଦାୟକ ମାର୍ଗରେ ପରିଚାଳିତ କରି ନେଇଯାଏ ।

ଗୋଟିଏ ଶିଶୁ ଉପରେ ପ୍ରଭାବ ପକାଇ ପରିଚାଳିତ କରିନେବାର ଏକ ସୁଯୋଗ ଜଣେ ଶିକ୍ଷକର ରହିଛି ବୋଲି କୁହାଯାଇ ପାରିଲେ ମଧ୍ୟ ଏହାର ଅର୍ଥ ନୁହେଁ ଯେ, ତଦ୍ୱାରା ପ୍ରାପ୍ତ ଶିକ୍ଷାଟି ମଧ୍ୟ ସୁନିଶ୍ଚିତ ଭାବରେ ସବୁ ପରିସ୍ଥିତିରେ ହିଁ ସକାରାତ୍ମକ ଓ ଫଳପ୍ରଦାୟକ ହୋଇଯିବ । ସୁଖୋମ୍‌ଲିନ୍‌ସ୍କି ପିଲାକୁ ଏପରି ଗୋଟିଏ ସ୍ଥାନରେ ନେଇ ରଖିବାକୁ ଇଚ୍ଛା କରନ୍ତି, ଯେଉଁଠାରେ କି ତାକୁ କର୍ମଜନିତ ଆନନ୍ଦଟିଏ ଅବଶ୍ୟ ଉପଲବ୍ଧ ହେବ, ପିଲାଟି ସଫଳ ହେବ ବୋଲି ଆସ୍ପୃହା କରିପାରିବ ଏବଂ ଶିକ୍ଷାକୁ ବିନା କୌଣସି ତାତ୍କାଳିକ ମତଲବ ବ୍ୟତୀତ ମଧ୍ୟ ଭଲ ପାଇ ପାରିବ ।

ଆମେ ଏହିପରି ଭାବରେ ସୁଖୋମ୍‌ଲିନ୍‌ସ୍କିଙ୍କୁ ତାଙ୍କର ସେହି ବୃହତ୍ ପୂର୍ବଗାମୀ ରୁଷୀୟ ଶିକ୍ଷାବିତ୍ ଆଣ୍ଟନ୍ ମାକାରେଙ୍କୋଙ୍କର ତତ୍ତ୍ୱାନୁସାରୀ ବୋଲି ଅବଶ୍ୟ କହିପାରିବା । ଏକଦା ସୁଖୋମ୍‌ଲିନ୍‌ସ୍କି ତଥା ମାକାରେଙ୍କୋଙ୍କର ଏହି କ୍ଷେତ୍ରର କାର୍ଯ୍ୟଗୁଡ଼ିକ ପରସ୍ପରଠାରୁ କେତେ ଭିନ୍ନ ବୋଲି ସୂଚାଇ ଦେବାପାଇଁ ପ୍ରୟାସ କରା ଯାଉଥିଲା ଏବଂ ଏବେ ମଧ୍ୟ ସେହିପରି ଗୋଟିଏ ଚେଷ୍ଟା ଅବଶ୍ୟ କରାଯାଇ ପାରିବ । ଏଭଳି ଦର୍ଶାଯାଇଛି ଯେ, ମାକାରେଙ୍କୋ ସମୂହକୁ ମାଧ୍ୟମ କରି ଶିକ୍ଷା ସମ୍ବନ୍ଧରେ ନିଜର ସିଦ୍ଧାନ୍ତଗୁଡ଼ିକର ଉପସ୍ଥାପନା କରିଥିଲେ ଏବଂ ସୁଖୋମ୍‌ଲିନ୍‌ସ୍କି ବ୍ୟକ୍ତିର ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ବସ୍ତୁତଃ, ଏହି କ୍ଷେତ୍ରରେ ଉଭୟ ଶିକ୍ଷାବିତ୍‌ଙ୍କର କାର୍ଯ୍ୟଟିକୁ ଅତ୍ୟନ୍ତ ଉପରଠାଉରିଆ ଭାବରେ ବୁଝିଥିବା ହେତୁ ହିଁ ଏପରି ମତଟିଏ ପୋଷଣ କରା ଯାଇଥିଲା ।

ସମ୍ଭବତଃ ଇତିହାସ ହିଁ ଆମକୁ ଋଷିଆର ପ୍ରଖ୍ୟାତ ଏହି ଦୁଇ ଶିକ୍ଷାବିତ୍‌ଙ୍କ ମଧ୍ୟରେ ରହିଥିବା ପ୍ରକୃତ ସମ୍ବନ୍ଧଟିକୁ ଅଧିକ ସ୍ପଷ୍ଟ କରି ଦର୍ଶାଇଦେଇ ପାରିବ । ଉଭୟେ ସେହିଁ ଗୋଟିଏ ଅନୁଷ୍ଠାନରୁ ହିଁ ଶିକ୍ଷା ସମ୍ବନ୍ଧରେ ବିଶେଷ ଜ୍ଞାନ ହାସଲ କରି ଉତ୍ତୀର୍ଣ୍ଣ ହୋଇଥିଲେ । (ଅବଶ୍ୟ ଜଣେ ଆରଜଣଙ୍କ ଠାରୁ କୋଡ଼ିଏବର୍ଷ ପରେ ) ଏବଂ, ମାକାରେଙ୍କୋ ଯେଉଁ ବର୍ଷ ଦେହତ୍ୟାଗ କଲେ, ସୁଖୋମ୍ଲିନସ୍କିଙ୍କର ଶିକ୍ଷକଜୀବନ ସେହି ବର୍ଷ ହିଁ ଆରମ୍ଭ ହୋଇଥିଲା । ପରସ୍ପରର ନିକଟବର୍ତ୍ତୀ ଦୁଇଟ ରେଲବାଇ ଷ୍ଟେଶନ୍‌ଠାରେ ରେଲବାଇ ଶ୍ରମିକମାନଙ୍କର ବସତିରେ ହିଁ ସେମାନେ କାର୍ଯ୍ୟ କରିଥିଲେ । ସେଠାରେ ବର୍ତ୍ତମାନ ଦୁଇଜଣଙ୍କର ହିଁ ଗୋଟିଏ ଗୋଟିଏ ସ୍ମାରକ ସଂଗ୍ରହାଳୟ ଦୃଷ୍ଟିଗୋଚର ହୋଇ ପାରିବ ।

ସୁଖୋମ୍ଲିନସ୍କି ତାଙ୍କ ସମୟରେ ଲେଖିଥିଲେ : "ମାକାରେଙ୍କୋଙ୍କ ଭଳି ଆଉ କେହି ଅନ୍ୟ ଶିକ୍ଷକ ନାହାନ୍ତି, ଯାହାଙ୍କର କାର୍ଯ୍ୟକୁ କି ମୁଁ ଏତେଦୂର ପ୍ରଶଂସା ଓ ସମ୍ମାନ ପ୍ରଦର୍ଶନ କରିଛି । ମୁଁ ବ୍ୟାକୁଳ ଭାବରେ ଖୋଜୁଥିବା ଯଥାର୍ଥ ପ୍ରଜ୍ଞାଟିକୁ ହିଁ ମୁଁ ତାଙ୍କରି ରଚନାଗୁଡ଼ିକରୁ ଆହରଣ କରି ପାରିଥିଲି । ଶିକ୍ଷାଦାନ ବିଷୟରେ ମୁଁ ଯେତେ ଯାହା କ୍ଷୁଦ୍ର ପ୍ରୟୋଗମାନ କରିଛି, ସେଗୁଡ଼ିକ ମୋ'ର ସେହି ଖୋଜିବାରୁ ହିଁ ସମ୍ଭବ ହୋଇଛି ।" ବସ୍ତୁତଃ ତାଙ୍କର ସବୁକିଛି ସନ୍ଧାନ ଓ ପ୍ରୟୋଗ ମାକାରେଙ୍କୋଙ୍କର ରଚନାଗୁଡ଼ିକ ଦ୍ୱାରା ହିଁ ପ୍ରେରଣା ଲାଭ କରିଥିଲା ଏବଂ ସିଏ ସେହି ପୂର୍ବଗାମୀଙ୍କର କାର୍ଯ୍ୟଟି ମଧ୍ୟରେ ଦେଖିବାକୁ ପାଉଥିବା ସତ୍ୟଗୁଡ଼ିକୁ ହିଁ ସେ ଅଧିକ ପ୍ରସାର ଓ ବିସ୍ତାର ଆଣି ଦେଇଥିଲେ, ସେଗୁଡ଼ିକୁ ଆହୁରି ଆଗକୁ ନେଇଯାଇ ପାରିଥିଲେ ।

ସମଷ୍ଟିଗତ ଜୀବନକୁ ମୂଳ କରି ଯାବତୀୟ ଯଥାର୍ଥ ଶିକ୍ଷାଦାନ କରାଯିବ ବୋଲି ମାକାରେଙ୍କୋଙ୍କର ସିଦ୍ଧାନ୍ତ ଏବଂ The Road to Life ନାମରେ ତାଙ୍କଦ୍ୱାରା ଲିଖିତ ପୁସ୍ତକଟି, - ଏହାକୁ ଆମେ ଏହି ଶତାବ୍ଦୀର ଏକମାତ୍ର ଶିକ୍ଷାସିଦ୍ଧାନ୍ତ ରୂପେ ଗଣନା କରି ପାରିବା, ଯାହାକି କାଳଜୟୀ ହୋଇପାରିଛି । ତାହାର କେତେ କଠୋର ସମାଲୋଚନା କରାଯାଇଛି, ଏବଂ ବହୁ ବ୍ୟକ୍ତି ଏପରି ମଧ୍ୟ ଦାବୀ କରିଛନ୍ତି ଯେ, ସାମୂହିକ ଜୀବନକୁ ମୂଳ କରି ଦିଆ ଯାଉଥିବା ଶିକ୍ଷାଦ୍ୱାରା ମନୁଷ୍ୟର ଜଣେ ବ୍ୟକ୍ତି ହସସାବରେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱଟିର ପ୍ରକୃତରେ ବିଶେଷ ବିକାଶ ହୋଇ ପାରେନାହିଁ । ତଥାପି, ବ୍ୟତୀତ ବିଗତ କେତେ ବର୍ଷ

ମଧ୍ୟରେ ବହୁ ଦେଶର ଅନେକ ବ୍ୟକ୍ତି ଏବେ ଉପଲବ୍ଧି କରୁଛନ୍ତି ଯେ, ଏହି ସାଂପ୍ରତିକ ସ୍ଥିତିରେ ଶିକ୍ଷାଦାନର ଅନ୍ୟ କୌଣସି ପ୍ରଣାଳୀ ପ୍ରକୃତରେ ଫଳପ୍ରସୂ ହୋଇ ପାରିବନାହିଁ । ଶ୍ରୀ ମାକାରେଙ୍କୋଙ୍କର ରଚନାଗୁଡ଼ିକ ବର୍ତ୍ତମାନ ବାରମ୍ବାର ପ୍ରକାଶିତ ହେଉଛି (ଏବେ ଯୁକ୍ତରାଜ୍ୟ ଆମେରିକାରେ ମଧ୍ୟ ତାଙ୍କ ଲେଖାଗୁଡ଼ିକର ଗୋଟିଏ ଖଣ୍ଡିକିଆ ସଂକଳନ ପ୍ରକାଶ ପାଇଲା ) । ସାମୂହିକ ଜୀବନର ବାହାରେ ରଖି ପିଲାମାନଙ୍କୁ ଶିକ୍ଷା ଦେବା ଏବେ କଦାପି ସମ୍ଭବ ନୁହେଁ ଏବଂ ସମୂହ ମଧ୍ୟରେ ଶିକ୍ଷା ଦେଲେ ଗୋଟିଏ ପିଲାର ବ୍ୟକ୍ତିତ୍ୱ ମଧ୍ୟ କଦାପି କ୍ଷୁଣ୍ଣ ହୋଇ ଯାଏନାହିଁ । ବରଂ, ଠିକ୍ ଏହି ପ୍ରଣାଳୀରେ ଶିକ୍ଷା ଦେବାଦ୍ୱାରା ହିଁ ଗୋଟିଏ ପିଲାକୁ ତା' ନିଜର ସମସ୍ତ ଗୁଣର ବିକାଶ ନିମନ୍ତେ ସୁଯୋଗ ଦିଆ ଯାଇଥାଏ ।

ଶ୍ରୀ ସୁଖୋମ୍ଲିନ୍ସ୍କି ଅତ୍ୟନ୍ତ ବିବାଦଶୂନ୍ୟ ଭାବରେ ସେ ସତ୍ୟଟିକୁ ପ୍ରମାଣ କରି ଦେଖାଇ ଦେଇଛନ୍ତି ଏବଂ ତେଣୁ ଏହି ବିଷୟରେ ଆଉ କୌଣସି ଅବକାଶ ହିଁ ନାହିଁ । ସୁଖୋମ୍ଲିନ୍ସ୍କିଙ୍କର ଏହି ପ୍ରହେଳିକାଟିର ସମାଧାନ ଯେ କେବଳ ପିଲାମାନଙ୍କର ସାମୂହିକ ଜୀବନ ମାଧମରେ ହିଁ ହୋଇପାରିବ, ଏଥିରୁ ସେହି କଥାଟିର ବ୍ୟାଖ୍ୟା ଅବଶ୍ୟ ମିଳିଯିବା ଉଚିତ । ଯଦି ଜଣେ ଶିକ୍ଷକ ଗୋଟିଏ ପିଲା ପାଖରେ ଏକାକୀ ହିଁ ରହିଥାଏ, ତେବେ ସିଏ ଆଦୌ ଆପଣାର ଆଗ୍ରହଟିକୁ ଆତ୍ମସ୍ୱ କରି ପାରିବନାହିଁ; ନିଜ ଭିତରେ ସେ ଏପରି କୌଣସି ନୂତନ ଆଗ୍ରହର ଉନ୍ମେଷ ଘଟାଇ ବି ପାରିବନାହିଁ ଯାହାକି ସିଏ ହାସଲ କରିବାକୁ ରହିଥିବା ଶିକ୍ଷାରେ ତାକୁ ନୂତନ ସଫଳତାଗୁଡ଼ିକୁ ପ୍ରଦାନ କରିପାରିବ ଓ ତା'ର ଆନନ୍ଦର କାରଣ ମଧ୍ୟ ହୋଇ ପାରିବ ।

\+ \+ \+

ଆମେ ଯଦି ପୃଥିବୀର ଯେକୌଣସି ସ୍ଥାନରେ ଏକ ବିଦ୍ୟାଳୟରେ ଗୋଟିଏ ଦିନ ଅତିବାହିତ କରିବାକୁ ଯିବା, ତେବେ ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଦିନଟିର କୌଣସି ନା କୌଣସି ସମୟରେ ଜଣେ ଶିକ୍ଷକଙ୍କୁ ଅତ୍ୟନ୍ତ କ୍ରୋଧଭର ହୋଇ ନିଜ ଜିମାରେ ରହିଥିବା ଗୋଟିଏ ପିଲାକୁ ଏକଥା କହୁଥିବାର ନିଶ୍ଚୟ ଶୁଣିବାକୁ ପାଇବା : "ତୋତେ ଆଉ କେତେ ଥର କୁହାଯିବ କହିଲୁ !" - ଅଥବା, " ମୁଁ ଯାହା ଯେତେବେଳେ କହୁଛି, ତୁ ତାହା ପ୍ରକୃତରେ ଶୁଣୁଛୁ ନା ନାହିଁ ?"

ଅର୍ଥ ବା ଅଭିପ୍ରାୟ ଯାହା ହୋଇଥାଉ ପଛକେ, କ୍ରୋଧର ସହିତ କୁହା ହେଉଥିବା କୌଣସି କଥାକୁ ପିଲାମାନେ କେବେହେଲେ ଶୁଣନ୍ତିନାହିଁ । ସେହି କଥାଗୁଡ଼ିକ ସେମାନଙ୍କର ଭାବସଂବେଗଗତ ବହଳ କାନ୍ଥଟାକୁ ମୋଟେ ଭେଦ କରି ପାରେନାହିଁ । ସୁଖୋମ୍ଲିନ୍‌ସ୍କି ଏହାକୁ ଏକ " ମୋଟା ଚମପରସ୍ତ" ବୋଲି କହିଛନ୍ତି । ଏଭଳି ସ୍ଥିତିରେ ଶିକ୍ଷକର କଥାମାନ ନିତାନ୍ତ ନିଷ୍ଫଳ ପ୍ରମାଣିତ ହୁଏ, କେବଳ ଜବରଦସ୍ତି ପରି ଲାଗୁଥାଏ, ବଡ଼ ବିରକ୍ତିକର ମନେ ହୁଏ ।

ସୁଖୋମ୍ଲିନ୍‌ସ୍କି ଏହିପରି ଏକ ସଂକଟ ମଧ୍ୟରୁ ବାହାରି ପାରିବାର କେବଳ ଗୋଟିଏ ବାଟ ରହିଛି ବୋଲି କହିଲେ । କୌଣସି ପିଲା ଆଦୌ କୌଣସି ପ୍ରକାରେ ଶିକ୍ଷା ଲାଭ କରିବାର ପୂର୍ବରୁ ହିଁ ତାକୁ ଶିକ୍ଷାପ୍ରାପ୍ତିର ଯୋଗ୍ୟ ଏବଂ ଅନୁକୂଳ କରି ତିଆରି କରି ଆଣିବାକୁ ହେବ । ଜେଣ ଶିକ୍ଷକ ଗୋଟିଏ ପିଲାକୁ ଆଦୌ କିଛି ବତାଇବା ପୂର୍ବରୁ ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯେ, ପିଲାଟି ମଧ୍ୟ ଶିକ୍ଷକ କହୁଥିବା କଥାଗୁଡ଼ିକୁ ଗ୍ରହଣ କରି ପାରିବା ନିମନ୍ତେ ଅବଶ୍ୟ ସମର୍ଥ ହୋଇ ସାରିଥିବ । ଯଦି ତା'ର ଉକ୍ତ ସାମର୍ଥ୍ୟଟି ହୋଇନଥାଏ, ତେବେ ସେହି ସାମର୍ଥଟିକୁ ବଢ଼ାଇବାକୁ ପଡ଼ିବ । ବସ୍ତୁତଃ ଏଇଟି ବ୍ୟତୀତ ଅନ୍ୟ କୌଣସି ସମାଧାନ ହିଁ ନାହିଁ । ନୈତିକ ଜୀବନର ମାର୍ଗଦର୍ଶନ କ୍ଷେତ୍ରରେ ମଧ୍ୟ ସେହି କଥାଟି ହିଁ ଲାଗୁ ହେବ : ପିଲାକୁ ଦଣ୍ଡ ଦେବା, ତା'ର ବାପାମାଆଙ୍କ ପାଖରେ ତା' ନାଆଁରେ ଅଭିଯୋଗ କରିବା, - ଏହିସବୁ କଠୋର ପ୍ରଣାଳୀକୁ ପରିତ୍ୟାଗ କରିବାକୁ ପଡ଼ିବା ଏବଂ, ତାହା ପରିବର୍ତ୍ତେ ପିଲାଟି ଯେପରି ତା' ଶିକ୍ଷକମାନଙ୍କର କଥାଗୁଡ଼ିକୁ ପ୍ରକୃତରେ ଅବଶ୍ୟ ଶୁଣିବ, ସେଥିଲାଗି ତା'ର ସାମର୍ଥ୍ୟର ବୃଦ୍ଧି କରିବାରେ ହିଁ ଶକ୍ତି ନିୟୋଜିତ କରାଯିବ । ଏହି ଉପାୟଟିକୁ ସଙ୍ଗତ ବୋଲି ହୃଦୟଙ୍ଗମ କରୁଥିବା ଜଣେ ଶିକ୍ଷକ ତା' ପିଲାମାନଙ୍କ ସହିତ ନିଜ ସମ୍ବନ୍ଧଟିର କ୍ଷେତ୍ରରେ ଅଧିକ ଧୈର୍ଯ୍ୟ ଅବଲମ୍ବନ କରିବ । ଦୁର୍ବଳ ଛାତ୍ରମାନଙ୍କୁ ଗାଳିମନ୍ଦ ଦେବାର ଯାବତୀୟ ଅଭ୍ୟାସରୁ ନିରସ୍ତ ହୋଇ ସେମାନଙ୍କୁ ସିଏ ବରଂ ଅଧିକ ସହାୟତା ପ୍ରଦାନ କରିବ । ତେଣୁ, ଯେଉଁ ପିଲାମାନେ ମନ ଦେଇ ପାରୁନାହାନ୍ତି, ଓ ତା' କଥା ଶୁଣି ପାରୁନାହାନ୍ତି, ସେମାନଙ୍କୁ ଉଦ୍ଦେଶ୍ୟ କରି ସେ ଆଦୌ ଏଡ଼େ ବଡ଼ ପାଟିରେ ଆଦୌ କିଛି କହିବନାହିଁ । ପିଲାଠାରେ ଗ୍ରହଣଶୀଳତାର ଓ ବିବେକଶକ୍ତିର ଅଭାବ ରହିଛି ବୋଲି ତାକୁ ଗାଳିଦେବା ଦ୍ୱାରା ବସ୍ତୁତଃ କୌଣସି ଲାଭ ହିଁ ହୁଏନାହିଁ । ବରଂ

ଓଲଟି ଧୈର୍ଯ୍ୟର ସହିତ ସ୍ଥିତିଟିର ସମ୍ମୁଖୀନ ହେବାକୁ ପଡ଼ିବ ଯାହାଦ୍ୱାରା କି ସଂପୃକ୍ତ ପିଲାଟିର ଅନୁସ୍ପନ୍ଦନ ଜଣାଇବାର ଶକ୍ତିଟି ବୃଦ୍ଧିଲାଭ କରିବ, ବିବେକଜ୍ଞାନରେ ମଧ୍ୟ ଅଭିବୃଦ୍ଧି ଘଟିବ ଏବଂ, ସେହି ଭାବଗତ ଗ୍ରହଣଶୀଳତାଟି ମଧ୍ୟ ସମ୍ଭବ ହୋଇଯିବ ଏବଂ କେବଳ ତାହାରିଦ୍ୱାରା ହିଁ ଚରିତ୍ରନିର୍ମାଣର କ୍ଷେତ୍ରରେ ଶିକ୍ଷକଟିଏ କିଛିତ ଅଗ୍ରଗତି କରିବାର ସୁଯୋଗ ମଧ୍ୟ ଲାଭ କରିପାରିବ ।

ବର୍ତ୍ତମାନ ଆମେ ସୁଖୋମ୍ଲିନ୍‌ସ୍କିଙ୍କର ଶିକ୍ଷାବିଚାରର ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱଟିର ଆଲୋଚନା କରିବା ସୌନ୍ଦର୍ଯ୍ୟ-ସଚେତନତାକୁ ମାଧମରୂପେ ବ୍ୟବହାର କରି ପିଲାମାନଙ୍କୁ ଶିକ୍ଷା ଦେବା । ପ୍ରକୃତି ମଧରେ, ପୁସ୍ତକମାନଙ୍କରେ ଏବଂ ମନୁଷ୍ୟମାନଙ୍କ ଠାରେ ସୁନ୍ଦରର ଯେଉଁ ଉପାଦାନ ସକଳ ରହିଛି ତାହା ଆମର ମନକୁ ଉଚ୍ଚ ଏବଂ ଉଦାର ହୋଇ ରହିବାରେ ସାହାଯ୍ୟ କରିଥାଏ । ପିଲାକୁ ଯେଉଁସବୁ କଥା କୁହାଯାଉଛି ଏବଂ ଯେଉଁସବୁ ନୈତିକ ପ୍ରଭାବ ତା' ଉପରେ ପଡୁଛି, ସୌନ୍ଦର୍ଯ୍ୟର ଅବବୋଧ ଗୋଟିଏ ପିଲାକୁ ସେଗୁଡ଼ିକ ପ୍ରତି ଅଧିକ ଗ୍ରହଣଶୀଳ କରେ ।

ଶିକ୍ଷାରେ ବାସ୍ତବ ଜୀବନର ପ୍ରୟୋଜନଗୁଡ଼ିକ ଲାଗି ଦୃଷ୍ଟି ଦେବାର କ୍ଷେତ୍ରରେ ଅବଶ୍ୟ ଆବଶ୍ୟକ ଅଗ୍ରାଧିକାର ରହିବା ଉଚିତ, କାରଣ ଆଧୁନିକ ସମାଜର ଗୋଟିଏ ଶିଶୁଲାଗି ତାହାର ଏକ ମୌଳିକ ମହତ୍ତ୍ୱ ରହିଛି; ତଥାପି "ତାତ୍କାଳିକ ପ୍ରୟୋଜନର ବାହାରେ ଥିବା କଳାଗୁଡ଼ିକ " ମଧ୍ୟ ସେଗୁଡ଼ିକର ଅନୁପୂରକ ହୋଇ ନିଶ୍ଚୟ ରହିବ । ତା' ନହୋଇ ପାରିଲେ ଶିକ୍ଷା ଏକାବେଳେକେ ଶୁଷ୍କ ହିଁ ହୋଇଯିବ । ନିଜର ଅଧ୍ୟୟନ ତଥା ଶ୍ରମଗୁଡ଼ିକର କ୍ଷେତ୍ରରେ ପିଲାମାନେ ଯେତିକି ଅଧିକ ପରିମାଣରେ ବାସ୍ତବମନା ଓ ହିସାବସଚେତନ ହୋଇ ରହିବାକୁ ଶିକ୍ଷା କରିବେ, ସେମାନଙ୍କୁ ସୌନ୍ଦର୍ଯ୍ୟର ମର୍ଯ୍ୟାଦାଟିକୁ ବୁଝିବା ଏବଂ ତାହାର ପ୍ରଶଂସା କରି ଜାଣିବାପାଇଁ ଶିକ୍ଷାଲାଭ କରିବା ମଧ୍ୟ ସେତିକି ଅଧିକ ଆବଶ୍ୟକ ହେବାରେ ଲାଗିଥିବ । ନଚେତ୍, କେବଳ ହିସାବ କରି ସେହି ବିବେକଟି ଅନୁସାରେ ନିଜ ଜୀବନଟିକୁ ବଞ୍ଚିଲେ ସେମାନେ ହୁଏତ କେବଳ ସବୁକଥାରେ ମୁଲଚାଲ ହିଁ କରିବାରେ ଲାଗିଥିବେ ଓ ଲୋଭୀ ହୋଇଯିବେ ।....

ପିଲାମାନଙ୍କର ସୌନ୍ଦର୍ଯ୍ୟବୋଧର ଶକ୍ତିକୁ ବୃଦ୍ଧି କରାଇବାର କ୍ଷେତ୍ରଟିରେ ହିଁ ଶିକ୍ଷକକୁ ସବୁଠାରୁ ଅଧିକ ପରିମାଣରେ ଧୈର୍ଯ୍ୟଶୀଳ ହୋଇ ରହିବାକୁ ପଡ଼େ । ହଁ, ପିଲାମାନଙ୍କୁ ଏକତ୍ର ଗୋଟିଏ ପଡ଼ିଆ ଭିତରକୁ ନେଇଯିବା ଓ " ପିଲାଏ, ଏଠାରେ ସବୁକିଛି କେଡ଼େ ସୁନ୍ଦର ଦେଖାଯାଉଛି" ବୋଲି କହିବା ପ୍ରକୃତରେ ଏକ ଅତି ସହଜ କାର୍ଯ୍ୟଟିଏ । ହଁ, ପିଲାମାନେ ମଧ୍ୟ ହୁଏତ ତୁମର କଥାରେ କେଡ଼େ ସହଜରେ ମୁଣ୍ଡଟିକୁ ଟୁଙ୍ଗାରିଦେବେ; ମାତ୍ର ତା'ର ଆଦୌ ଅର୍ଥ ନୁହେଁ ଯେ ସେମାନେ ବସନ୍ତକାଳୀନ ସେହି ପଡ଼ିଆଟିର ସୌନ୍ଦର୍ଯ୍ୟଟି ଦ୍ୱାରା ପ୍ରକୃତରେ ମୁଗ୍ଧ ହୋଇ ଯାଇଛନ୍ତି । ସୁଖୋମ୍ଲିନସ୍କି ତ କହିଛନ୍ତି ଯେ, ଏତିକି ନିମନ୍ତେ ବେଳେ ବେଳେ ଏକାଧିକ ବର୍ଷ ବି ଲାଗି ଯାଇପାରେ; ଏବଂ ତା'ପରେ ହଠାତ୍ ହୁଏତ ସେହି ମହତ୍ତ୍ୱପୂର୍ଣ୍ଣ ଦିବସ ଅଥବା ମୁହୂର୍ତ୍ତଟି ଆସି ପହଞ୍ଚିଯାଏ, ଯେତେବେଳେ କି କୌଣସି ସଂଯୋଗବଶତଃ ବା ଏକ ମିଜାଜ୍‌ର ବଶବର୍ତ୍ତୀ ହୋଇ କୌଣସି ପିଲା ଭିତରେ କ'ଣଟିଏ ସତେଅବା ଉଚ୍ଛୁଳି ଉଠୁଥିବା ପରି ତାକୁ ମନେହୁଏ ଏବଂ ସୁନ୍ଦର କିଛିର ସମ୍ମୁଖକୁ ଆସି ସିଏ ସତକୁ ସତ ଏକ ଆନନ୍ଦରେ ହିଁ ପୂରି ଉଠିଲାପରି ଅନୁଭବ କରେ । ତେଣୁ, ଧୈର୍ଯ୍ୟ ଏବଂ ବିଶ୍ୱାସର ଏକ ବୃହତ୍ ଭଣ୍ଡାରକୁ ଧାରଣ କରି ଶିକ୍ଷକ ସେହି ମୁହୂର୍ତ୍ତଟି ସକାଶେ ଅପେକ୍ଷା କରି ରହିଥିବ, ସେଇଟି ଆସି ପହଞ୍ଚିବ ବୋଲି ବିଶ୍ୱାସ ରଖିଥିବ ଓ ସେଇଟି ପହଞ୍ଚିଯିବା ମାତ୍ରକେ ସେଇଟିକୁ ଅବଶ୍ୟ ଚିହ୍ନିନେଇ ପାରିବ ।

ପୂର୍ବରୁ କୁହାଯାଇଛି ଯେ, ଆପଣାର ଶିକ୍ଷାଦାନ କାର୍ଯ୍ୟକ୍ରମକୁ ସୁଖୋମ୍ଲିନସ୍କି ଶ୍ରେଣୀଗୃହ ଭିତରେ ନୁହେଁ, ପ୍ରକୃତରେ ପଡ଼ିଆମାନଙ୍କରେ କିମ୍ବା ଗଛ ଓ ଗୁଳ୍ମ ଭର୍ତ୍ତି ହୋଇଥିବା ବଣ ଭିତରେ ଆରମ୍ଭ କରିଥାନ୍ତି । ସୁନ୍ଦର ପ୍ରକୃତିର ନିକଟକୁ ଆସି ପିଲାମାନେ ଆଗ ଖୁସୀ ଅନୁଭବ କରନ୍ତୁ ବୋଲି ସିଏ ସେଥିଲାଗି ସବୁ ପ୍ରକାରର ଉତ୍ସାହ ଦେଉଥାନ୍ତି । ସେମାନେ ତା'ପରେ କଳାକୃତି ଗୁଡ଼ିକୁ ମଧ୍ୟ ପ୍ରଶଂସା କରି ଜାଣନ୍ତୁ ଏବଂ ସବାଶେଷରେ ଆପଣାର ସାଥୀ ଅନ୍ୟ ପିଲାମାନଙ୍କୁ ଓ ଏମାନଙ୍କର କାର୍ଯ୍ୟଗୁଡ଼ିକୁ । ଲୋକମାନେ ମଧ୍ୟ ଭିତରେ ମଧ୍ୟ ନିଶ୍ଚୟ ସୁନ୍ଦର ହୋଇଥିବେ ବୋଲି ଯଦି କୌଣସି ପିଲା ହୃଦୟଙ୍ଗମ କରି ପାରୁନଥିବ, ତେବେ ଏକ ସୁନ୍ଦର ଜୀବନ ଯାପନ କରିବା ବିଷୟରେ ସିଏ ନିଜେ ମଧ୍ୟ କିପରି ଆସ୍ପୃହା କରିପାରିବ ? ପୁନଶ୍ଚ, ଯଦି କୌଣସି ପିଲା ଏକ

ସୁନ୍ଦର ଜୀବନ ନିମନ୍ତେ ପ୍ରୟାସ କରିବାଲାଗି ପ୍ରକୃତରେ ପ୍ରେରଣା ପାଉନଥିବ, ତେବେ ତାକୁ ନୈତିକ ଗୁଣଗୁଡ଼ିକର ଅନୁଶୀଳନ ଓ ଏପରିକି ପଢ଼ା ହେଉଥିବା ବିଷୟ ଗୁଡ଼ିକର କ୍ଷେତ୍ରରେ ମଧ୍ୟ ପ୍ରକୃତରେ କି ଶିକ୍ଷା ଦିଆଯାଇ ପାରିବ ?

ସୁଖୋମ୍ଲିନସ୍କି କହୁଥିଲେ ଯେ, କେବଳ କ୍ରିୟାଶୀଳତା ଏବଂ କର୍ମଦ୍ୱାରା ହିଁ ଗୋଟିଏ ପିଲାକୁ ସୌନ୍ଦର୍ଯ୍ୟକୁ ଭଲ ପାଇବା ବିଷୟରେ ଶିକ୍ଷା ଦିଆଯାଇ ପାରିବ । ସିଏ କେବଳ ପ୍ରକୃତିର ପ୍ରଶଂସା କରୁନଥିବ, ପ୍ରକୃତିର ସୌନ୍ଦର୍ଯ୍ୟକୁ ସୁରକ୍ଷିତ କରି ରଖିବା ନିମନ୍ତେ ମଧ୍ୟ ଶିକ୍ଷାଲାଭ କରିବ । ସିଏ ଲେଖିଥିଲେ : " ଯଦି ମାନବ-ବିଜ୍ଞାନ ହିଁ କୌଣସି ବିଦ୍ୟାଳୟରେ ଶିକ୍ଷାଦାନର ସର୍ବପ୍ରଥମ ବିଷୟ ହୋଇ ରହିପାରେ, ତେବେ ସେଇଟିକୁ ହିଁ ପ୍ରକୃତ ବିଦ୍ୟାଳୟ ବୋଲି କହିବାକୁ ହେବ । ସେହି କ୍ଷେତ୍ରରେ ମନୁଷ୍ୟାତ୍ମାର ଜ୍ଞାନରୁ ହିଁ ସକଳ ପୃଥିବୀଜ୍ଞାନର ଶିକ୍ଷା ଆରମ୍ଭ କରାଯାଇ ପାରିବ ।"...

ଯଦି କୌଣସି ପିଲା ଭଲ କାମଟିଏ କଲା, ଯଦି କାହାକୁ କିଛି ସାହାଯ୍ୟ କଲା, କିମ୍ବା, ଜଣେ ସାଙ୍ଗର ମାଆ ବେମାର ହୋଇ ପଡ଼ିଛନ୍ତି ବୋଲି ଜାଣି ସିଏ ତାଙ୍କ ସକାଶେ ନିଜର କୌଣସି ନିୟମିତ ସୁଖକୁ ଛାଡ଼ିପାରିଲା, ତେବେ ହଜାର ହଜାର ଶିକ୍ଷକ ସେହି କାର୍ଯ୍ୟଟିର ଅବଶ୍ୟ ପ୍ରଶଂସା କରିବେ । କିନ୍ତୁ ସୁଖୋମ୍ଲିନସ୍କି ଏପରି ଏକ ଆଚରଣକୁ କେବଳ ପୂର୍ଣ୍ଣ ସତ୍ୟଟିର କେବଳ ଅଧେ ବୋଲି ହିଁ କହୁଥିଲେ । ପିଲାଟିର ଭାବାବେଦନର କ୍ଷେତ୍ରରେ ସେହି ସମୟରେ ଅନୁସ୍ପନ୍ଦନ ରୂପେ ପ୍ରକୃତରେ କ'ଣ ଘଟୁଛି, ସିଏ ତାହାକୁ ମଧ୍ୟ ସମାନ ମହତ୍ତ୍ୱପୂର୍ଣ୍ଣ ବୋଲି ବିଚାର କରୁଥିଲେ । ଗୋଟିଏ ଭଲ କାମ କରିଥିବାରୁ ସିଏ ଖୁସି ହେଲା କି ? ଭଲ କାମଟିକୁ କରିବାରୁ ଖୁସୀ ଆହରଣ କଲା ନା ତା'ର ସେହି ଭଲ କାର୍ଯ୍ୟଟି ସମସ୍ତଙ୍କର ଆଖିରେ ପଡ଼ିଲା ଓ ପ୍ରଶଂସା ଲାଭ କଲା ବୋଲି ସିଏ ଖୁସୀ ଅନୁଭବ କରୁଥିଲା ?

ଭାବସଂବେଗ କ୍ଷେତ୍ରରେ ସକଳ ଶିକ୍ଷାକୁ ଆମେ କେବଳ ଭାବସଂବେଗର ଭୂମିଟି ଉପରେ ହିଁ ଆଲୋଚନା କରି ପାରିବା । ପିଲାଟିଏ ଯେଉଁ କାର୍ଯ୍ୟଗୁଡ଼ିକୁ କରୁଛି, ଜଣେ ଶିକ୍ଷକ ସେହିଗୁଡ଼ିକୁ ଆଦୌ ସବୁଠାରୁ ଅଧିକ ପରିମାଣରେ ମହତ୍ତ୍ୱପୂର୍ଣ୍ଣ ବୋଲି ଜାଣିବନାହିଁ; ମାତ୍ର ସେଗୁଡ଼ିକ ସହିତ ଯେଉଁ ଆବେଶ ଏବଂ

ଭାବସଂବେଗର ଅନୁଭବଟି ଜଡ଼ିତ-ହୋଇ ରହିଛି, ଶିକ୍ଷକ ସେଇଟିକୁ ହିଁ ଅଧିକ ଗୁରୁତ୍ୱ ପ୍ରଦାନ କରି ପାରୁଥିବ ।

ନିଜ ଦାୟିତ୍ୱରେ ରହିଥିବା ପିଲାମାନଙ୍କ ପ୍ରତି କେତେକ ଶିକ୍ଷକଙ୍କର ଦୃଷ୍ଟିକୋଣଟିକୁ ପୁରୁଣା ସୂତ୍ରଟି ଅନୁସାରେ ମୋଟାମୋଟି ଏହିପରି ହିଁ କୁହାଯିବ : "ସିଏ ସେହି ସାଧାରଣ ସ୍ତରଟିରେ ହିଁ ଥାଉ, ଆଦୌ ନାଆଁ ନପକାଉ !" ଯଦି ପିଲାଟିଏ ସେହିପରି ହୋଇ ରହିଥାଏ ଓ କୌଣସି ଅପ୍ରୀତିକର କାର୍ଯ୍ୟ କରିପକାଇ କାହାର ଦୃଷ୍ଟି ଆକର୍ଷଣ ନକରେ, ତେବେ ଶିକ୍ଷକ ମଧ୍ୟ ସନ୍ତୁଷ୍ଟ ଥାଏ । ତେଣୁ, ଶିକ୍ଷାର ପ୍ରକ୍ରିୟାଟିକୁ କିଏ ଗତିଶୀଳ କରାଏ ଓ ଶିକ୍ଷାଜନିତ ପ୍ରଭାବଟି ନିମନ୍ତେ ଅବସରଟିଏ ଆଣି ଜୁଟାଇଦିଏ, ସେହି କଥାଟିର ନିର୍ଣ୍ଣୟ କରିବା ପ୍ରକୃତରେ ଆଦୌ ସହଜ ନୁହେଁ । ଅଧିକାଂଶ କ୍ଷେତ୍ରରେ, ନିୟମଗୁଡ଼ାକୁ ଭାଙ୍ଗୁଥିବା ପିଲାଟିଏ ହୁଏତ ସେଇଟି ପାଇଁ ଅବସରଟିଏ ସୃଷ୍ଟି କରିଆଣେ; କାରଣ, ଯେଉଁମାନେ ନିୟମଗୁଡ଼ିକୁ କେବେହେଲେ ଭାଙ୍ଗନ୍ତିନାହିଁ, ସେମାନେ କଦାପି ଶିକ୍ଷକର ଦୃଷ୍ଟିରେ ହିଁ ପଡ଼ନ୍ତିନାହିଁ ।

ନିଜ ଦାୟିତ୍ୱରେ ରହିଥିବା ପିଲାମାନଙ୍କ ବିଷୟରେ ସୁଖୋମ୍ଲିନ୍‌ସ୍କି ଓ ତାଙ୍କ ସହକର୍ମୀମାନେ ସର୍ବଦା ସଜ୍ଞାନ ହୋଇ ରହିଥିଲେ । ପିଲାଟିଏ ଏକ ଭୁଲ୍ କରିବା ପର୍ଯ୍ୟନ୍ତ ସୁଖୋମ୍ଲିନ୍‌ସ୍କି ଆଦୌ ଅପେକ୍ଷା କରୁନଥିଲେ ଏବଂ ଏକାବେଳେକେ ଗୋଟିଏ ଅନ୍ୟ ପଦ୍ଧତିରେ ହିଁ ସିଏ ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । ନୀତିଗତ ନିୟମଗୁଡ଼ିକୁ କିଏ ଭାଙ୍ଗିଲା, ତାହାକୁ ଭୂମି କରି ନୁହେଁ, ସେହି ନିୟମରେ ନିହିତ ଆଦର୍ଶଗୁଡ଼ିକୁ ସମ୍ମୁଖରେ ଉତ୍ତୋଳିତ କରି ଧରି ସିଏ ଶିକ୍ଷା ପ୍ରଦାନ କରୁଥିଲେ । ଭୁଲ୍ କାମକୁ ସନ୍ଦର୍ଭରୂପେ ବ୍ୟବହାର କରି ନୁହେଁ, ଉତ୍ତମ ତଥା ସୁନ୍ଦର କର୍ମଗୁଡ଼ିକର ସନ୍ଦର୍ଭ ଉପରେ ହିଁ ଶିକ୍ଷା ଦେଉଥିଲେ ।

ସୁଖୋମ୍ଲିନିସ୍କି ପ୍ରକୃତରେ କେଉଁ ଉପାୟରେ ଗୋଟିଏ ପିଲାକୁ ଭଲର ଜଗତଟି ମଧ୍ୟକୁ ବାଟ ଦେଖାଇ ନେଉଥିଲେ ? ଏହି ଲେଖାଟିର ମୂଳରେ ଯେପରି ଉଲ୍ଲେଖ କରାଯାଇଛି, ସିଏ ପରୀଗଳ୍ପ ଗୁଡ଼ିକର ମାଧମରେ ତାହା କରୁଥିଲେ । ନିଜ ପିଲାମାନଙ୍କୁ ବିଦ୍ୟାଳୟରେ ଆଣି ପହଞ୍ଚାଇ ଦେଉଥିବା ମାଆମାନଙ୍କୁ ମଧ୍ୟ ସେମାନେ ପିଲାମାନଙ୍କୁ ପରୀଗଳ୍ପମାନ ଅବଶ୍ୟ କହି ଶୁଣାଇବେ ବୋଲି ନିର୍ଦ୍ଦେଶ ଦେଉଥିଲେ । ସିଏ ନିଜେ ମଧ୍ୟ ସର୍ବଦା ସେହି ଗଳ୍ପଗୁଡ଼ିକୁ

କହୁଥିଲେ ଓ ତା'ପରେ ପିଲାମାନଙ୍କ ସହିତ ସେଗୁଡ଼ିକ ନିଜେ ଶୁଣୁଥିଲେ । ପିଲାଏ ବାର ତେର ବୟସର ହୋଇଯିବା ପରେ, ଅନ୍ୟତ୍ର ପଢୁଥିବା ପିଲାମାନେ ଗଳ୍ପଗୁଡ଼ିକ ଠାରୁ ବିଦାୟ ନେଇ ଚାଲି ଯାଉଥିବା ସମୟରେ ସୁଖୋମ୍‌ଲିନ୍‌ସ୍କିଙ୍କର ପିଲାମାନେ ତଥାପି ସେଗୁଡ଼ିକୁ ଉଦ୍‌ଭାବନ କରିବାରେ ତତ୍ପର ହୋଇ ରହିଥିଲେ । ପାଭଲିଶ୍ ବିଦ୍ୟାଳୟରେ ବହୁତ ଯତ୍ନରେ ପିଲାମାନଙ୍କ ପରୀଗଳ୍ପ ଗୁଡ଼ିକୁ ସଂଗ୍ରହ କରା ଯାଉଥିଲା ଓ ମୋଟା ଖାତାମାନଙ୍କରେ ସୁରକ୍ଷିତ ରଖା ଯାଉଥିଲା । କିଏଭ୍ ସହରରେ ଥିବା ଦୂରଦର୍ଶନର କେନ୍ଦ୍ରମାନେ ଇତିମଧ୍ୟରେ ସେଗୁଡ଼ିକୁ "ପାଭ୍‌ଲିଶ୍‌ର କାହାଣୀ" ବୋଲି ଶୀର୍ଷକ ଦେଇ ଏକ ଧାରାବାହିକ କାର୍ଯ୍ୟକ୍ରମରେ ପ୍ରସାରିତ କରି ସାରିଲେଣି ।

ପିଲାମାନଙ୍କର ଦୃଷ୍ଟିରେ ପ୍ରକୃତରେ କିଏ ଦୟାଳୁତାର ପ୍ରତିମୂର୍ତ୍ତି ପରି ଦୃଷ୍ଟିଗୋଚର ହୋଇଥାଏ ? ସିଏ ହେଉଛି ସେହି ବୁଢ଼ା ଗଳ୍ପ କହୁଥିବା ବ୍ୟକ୍ତିଟିର ଯେ ଏକ କାଳ୍ପନିକ ମୂର୍ତ୍ତି, ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ । ଯେତେବେଳେ ପାଭ୍‌ଲିଶ୍‌ର ପିଲାମାନେ ପ୍ରଥମଥର ପାଇଁ ସେମାନଙ୍କର ଏହି ଇସ୍କୁଲକୁ ଆସିଲେ, ସେତେବେଳେ ଏହିପରି ଜଣେ ଗଳ୍ପକୁହାଳି ହିଁ ସେମାନଙ୍କର ସ୍ୱାଗତ କରିଥିଲା । ତେଣୁ ବିଦ୍ୟାଳୟଟି ଅଚିରେ ନାନା ଜାଦୁଗରିରେ ଭରା ଆକର୍ଷକ ସ୍ଥାନରେ ପରିଣତ ହୋଇ ଯାଇଥିଲା । ଠିକ୍ ଗୋଟିଏ ଜାଦୁଭରା ଆକର୍ଷଣରେ ଭରା ପରୀଗପ - ପରୀଗପ ପରି ସେମାନଙ୍କୁ ସ୍ୱାଗତ ଜଣାଇଥିଲା ଏବଂ ମୁଗ୍ଧ କରି ରଖିଥିଲା ।

ପରୀଗପ ମାନଙ୍କ ପରେ ବହିମାନେ ଆସି ପହଞ୍ଚିଲେ । ବହୁ ପୂର୍ବରୁ ସୁଖୋମ୍‌ଲିନ୍‌ସ୍କି ଦେଖି ପାରିଥିଲେ ଯେ, ଏକ ସାଧାରଣ ଗ୍ରନ୍ଥାଗାର ଭିତରେ ଯାଇ ପ୍ରବେଶ କରିବା ମାତ୍ରକେ ପିଲାମାନଙ୍କର ଆଉ କିଛି ବାଛବିଚାରର ବିବେକ ରହେନାହିଁ ଓ ହାତ ଆଗରେ ଯାହାଗୋଟାଏ ପଡ଼ିଲା, ସେଇଟାକୁ ହିଁ ବାଛି ପକାନ୍ତି । ତେଣୁ ପିଲାମାନଙ୍କର ବହି ପଢ଼ିବାର ଅଭ୍ୟାସକ୍ଷେତ୍ରରେ କିଛି ମାର୍ଗଦର୍ଶନ ଦେଇ ପାରିବା ସର୍ବଦା ଏକ ଅତ୍ୟନ୍ତ କଷ୍ଟକର କାର୍ଯ୍ୟ ହୋଇଥାଏ । ତେଣୁ, ବହୁତ ସମୟରେ ଏପରି ହୋଇଥାଏ ଯେ, ଜଣେ ବୟସ୍କ ବ୍ୟକ୍ତି ସେମାନଙ୍କ ନିମନ୍ତେ ବାଛିଥିବା ବହିଟିକୁ ସେମାନେ ସାଧାରଣତଃ ବର୍ଜନ ହିଁ କରିଥାନ୍ତି । ସୁଖୋମ୍‌ଲିନ୍‌ସ୍କି

ତାଙ୍କର ପିଲାଙ୍କ ପାଇଁ ଏକ ଭିନ୍ନ ପ୍ରକାରର ପାଠାଗାର ତିଆରି କରିଥିଲେ ଯାହାର କି ସେ "ଚିନ୍ତା କରିବାର କୋଠରୀ'' ବୋଲି ନାମକରଣ କରିଥିଲେ ।

ସେଥିରେ ମୋଟେ ତିନିଶହ ବହି ରହିଥିଲା; ବିଶ୍ୱ-ସାହିତ୍ୟର ତିନିଶହ ଶ୍ରେଷ୍ଠ ପୁସ୍ତକ ରହିଥିଲା, ଯାହାକୁ ଥରେ ପଢ଼ିବା ପରେ ଆଉଥରେ ମଧ୍ୟ ପଢ଼ିବାକୁ ମନ ହେବ । ପିଲାମାନେ ସେମାନଙ୍କର ପ୍ରିୟ ପୁସ୍ତକଗୁଡ଼ିକୁ ଏକାବେଳେକେ ଏକାଧିକ ଥର ସକାଶେ ପାଠ କରନ୍ତୁ ବୋଲି ସୁଖୋମ୍ଲିନ୍‌ସ୍କି ସେମାନଙ୍କୁ ସବୁବେଳେ ହିଁ ପ୍ରବର୍ତ୍ତାଉ ଥିଲେ । ପାଠାଗାରରେ ହୋମର୍‌ଙ୍କ ଠାରୁ ଆରମ୍ଭ କରି ହେମିଙ୍ଗ୍‌ୱେଙ୍କ ପର୍ଯ୍ୟନ୍ତ ଲେଖକମାନଙ୍କର ପୁସ୍ତକ ରହିଥିଲା; ପ୍ରାଚ୍ୟର ପ୍ରସିଦ୍ଧ ଗ୍ରନ୍ଥମାନ ଥିଲା, ଋଷିଆ ତଥା ସୋଭିଏଟ୍ କାଳର ବହିସବୁ ମଧ୍ୟ ରହିଥିଲା । ପାଠାଗାରର ପରିବେଶରେ ସାହିତ୍ୟ-ଜଗତର ଏହି ମୁକ୍ତାଗୁଡ଼ିକ ପ୍ରତି ଶ୍ରଦ୍ଧା ଏବଂ ସମ୍ମାନ ଭରପୂର ହୋଇ ରହିଥିଲା । ଦିନେ ନା ଦିନେ ଏହି ସବୁଯାକ ବହିକୁ ପାଠ କରି ଅବଶ୍ୟ ଶେଷ କରିବେ ବୋଲି ଆଶା ନେଇ ତା'ଭିତରକୁ ଯାଉଥିବା ସମସ୍ତଙ୍କୁ ହିଁ ଅଶେଷ ପ୍ରେରଣା ଦାନ କରୁଥିଲା । ତେଣୁ, ଏଠାରେ ମଧ୍ୟ ପରିବେଶ ତଥା ଏକ ଅନୁକୂଳ ଇଚ୍ଛା, ଏହି ଦୁଇଟି କଥା ହିଁ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇ ରହିଥିଲେ । ତେଣୁ "ଏକ ବିଶେଷତ୍ୱଯୁକ୍ତ ସାହିତ୍ୟିକ ପୃଷ୍ଠଭୂମି'' ଉପଲବ୍ଧ ହୋଇ ପାରୁଥିଲା, ଲିଖିତ ଶବ୍ଦଗୁଡ଼ିକ ନିମନ୍ତେ ଏକ ଶ୍ରଦ୍ଧା ହିଁ ଅନୁସିକ୍ତ କରି ରଖୁଥିଲା । ଏହି ପରିବେଶର ଫାନ୍ଦ ଭିତରେ ପଡ଼ିଯାଇ ପୁସ୍ତକଗୁଡ଼ିକୁ ପାଠ କରିବାକୁ ପ୍ରକୃତରେ ଇଚ୍ଛା କରୁନଥିବ, - ଏପରି ପିଲା ନିଶ୍ଚୟ ଖୁବ୍ ବିରଳ ଥିବେ ।

ପାଭ୍‌ଲିଶ୍ ବିଦ୍ୟାଳୟରେ ସଂଗୀତର କାର୍ଯ୍ୟକ୍ରମ ଗୁଡ଼ିକ ବିଷୟରେ ବିଶଦ ବର୍ଣ୍ଣନା ଦେଇ କହିବା ନିମନ୍ତେ ଏଠାରେ ଆଦୌ ଜାଗା ନାହିଁ । ହଁ, କଳାର ସଂସାରଟିକୁ ମଧ୍ୟ ସମୁଚିତ ଭାବରେ ବୁଝିବା ନିମନ୍ତେ ଅବସରମାନ ରହିଥିଲା । ଏହି ସବୁଗୁଡ଼ିକର ହିଁ ବିଦ୍ୟାଳୟର ପାଠ୍ୟକ୍ରମରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଥିଲା ।

ଏହି ସବୁକିଛିର ସାରାଂଶ ହେଉଛି ପିଲାମାନଙ୍କର ଜୀବନଗୁଡ଼ିକୁ ଋଦ୍ଧିମନ୍ତ କରି ଆଣିବାଲାଗି ଏହି ସବୁକିଛି ସାଧନ- ଅଧ୍ୟୟନ, ଶ୍ରମ, ପୁସ୍ତକ, ସଂଗୀତ, ଚିତ୍ରାଙ୍କନ ତଥା ଶିକ୍ଷକମାନଙ୍କ ଠାରୁ ଉପଲବ୍ଧ ହେଉଥିବା ଯାବତୀୟ

ସୁପରାମର୍ଶ, ସାମୂହିକ ବୃହତ୍ତର ଜୀବନଟିର ମତ ତଥା ନିଷ୍ପତ୍ତିମାନ, ଶିକ୍ଷକଙ୍କୁ ମାଧ୍ୟମ କରି ପ୍ରାପ୍ତ ହେଉଥିବା ପିତାମାତା ମାନଙ୍କର ପ୍ରଭାବ, - ଏହି ସକଳକିଛିକୁ ଏକତ୍ର ଏକ ବହୁମୁଖୀ ସମ୍ପନ୍ନ ଭଣ୍ଡାର ବୋଲି କୁହାଯିବ, ଯାହାର କି ପରିପୂର୍ଣ୍ଣ ସଦ୍-ବ୍ୟବହାର କରା ଯାଉଥିଲା । ଏହି ପାଠଶାଳାକୁ ଯିଏ ବି ଆସୁ ନା କାହିଁକି, ତାହାର ପ୍ରତିଭା କ୍ଷେତ୍ରରେ ଯେତେ ମନ ସେତେ ଅଭାବ ଥାଉ ପଛକେ, ଏଥିରେ କେବେହେଲେ କୌଣସି ସନ୍ଦେହ ନାହିଁ ଯେ, ପିଲାଟି କଦାପି ନିଷ୍କ୍ରିୟ ହୋଇ ରହିଯିବ ବା ନିଜର ପାଠରୁ ଆନନ୍ଦ ଲାଭ କରିବାରେ ଅସମର୍ଥ ହୋଇ ରହିବ । ପିଲାମାନେ ଶେଷ ଅର୍ଥାତ୍ ଦଶମ କ୍ଲାସ୍‌ରେ ଯାଇ ପହଞ୍ଚିବା ବେଳକୁ ସେମାନେ ସମାନ ଉତ୍ସାହର ସହିତ ସେହି ସବାପ୍ରଥମ କ୍ଲାସ୍‌ରେ ଥିବା ବେଳଟି ପରି ମଧ୍ୟ ଶିକ୍ଷକ ପଚାରୁଥିବା ପ୍ରଶ୍ନର ଉତ୍ତର ଦେଇ ପାରୁଥିଲେ ।

ଯେଉଁ ପିଲାମାନେ ଉକ୍ତ ଶିକ୍ଷାନୁଷ୍ଠାନରେ ପାଠ ପଢ଼ିବାର ସୁଯୋଗ ଲାଭ କରିଥିଲେ, ଜ୍ଞାନ ଲାଭ କରିବାର ପ୍ରେରଣା, କଳାତ୍ମକ କାର୍ଯ୍ୟସାମର୍ଥ୍ୟ, ଉତ୍ତମ ଆଚରଣ, ସୌନ୍ଦର୍ଯ୍ୟବୋଧ, - ଏଥିରୁ କୌଣସିଟି କ୍ଷେତ୍ରରେ ମଧ୍ୟ କଦାପି ପଛରେ ପଡ଼ି ରହିବେନାହିଁ; ସେମାନେ ସୁଯୋଗ୍ୟତା ଏବଂ ଆଗ୍ରହରେ ଭରି ରହିଥିବା ତରୁଣ ଓ ତରୁଣୀରୂପେ ଅବଶ୍ୟ ଏଠୁ ପୃଥିବୀକୁ ବାହାରିବେ ।

ଏଭଳି ଗୋଟିଏ ଶିକ୍ଷା ପ୍ରୟୋଗରୁ ପ୍ରକୃତରେ କ'ଣସବୁ ଫଳ ପ୍ରାପ୍ତ ହୁଏ ଏବଂ ଅନ୍ୟ ବିଦ୍ୟାଳୟଗୁଡ଼ିକର ପିଲାମାନଙ୍କ ତୁଳନାରେ ସୁଖୋମ୍‌ଲିନ୍‌ସ୍କିଙ୍କର ଛାତ୍ରମାନଙ୍କ ଠାରେ ଆମେ କ'ଣସବୁ ଫରକ ଦେଖିବାକୁ ପାଇବା, ଅନେକ ସମୟରେ ଏଭଳି ଗୋଟିଏ ପ୍ରଶ୍ନ ବି ପଚରା ହୋଇଥାଏ । ଏଇଟି ପ୍ରକୃତରେ ଗୋଟିଏ ଅତ୍ୟନ୍ତ କଷ୍ଟକର ପ୍ରଶ୍ନ; କାରଣ ଏପର୍ଯ୍ୟନ୍ତ ଆଦୌ ସେପରି କୌଣସି ମାପଦଣ୍ଡମାନ ବାହାରିନାହିଁ, ଯାହାର ସାହାଯ୍ୟ ନେଇ ଆମେ ମନୁଷ୍ୟର ଗୁଣଗୁଡ଼ିକୁ ମାପି ଦେଇ କମ୍ ବେଶୀ କହିଦେଇ ପାରିବା । ଏହି ବିଷୟରେ ସମ୍ଭବତଃ କେବଳ ଏତିକି କୁହାଯାଇ ପାରିବ ଯେ, ସେହି ଗ୍ରାମରୁ ବାହାରୁଥିବା ବହୁସଂଖ୍ୟକ ପୁଅ ଓ ଝିଅ ଦେଶର ବିଭିନ୍ନ ଅଞ୍ଚଳରେ ଥିବା ବିଶ୍ୱବିଦ୍ୟାଳୟ ମାନଙ୍କରେ ପ୍ରବେଶ କରିବାରେ ସଫଳତା ଲାଭ କରୁଛନ୍ତି । ଏବଂ, ଆଉ ଯେଉଁମାନେ ନିଜର ସେହି ସ୍ଥାନୀୟ ଗାଆଁଟିରେ ହିଁ ରହୁଛନ୍ତି, ସେମାନେ ନିଜକୁ ଜଣେ ଜଣେ ଉତ୍ତମ ଶ୍ରମଜୀବୀ ବୋଲି ପ୍ରତିପାଦିତ କରି ପାରୁଛନ୍ତି । ପୁନଶ୍ଚ, ସୁଖୋମ୍‌ଲିନ୍‌ସ୍କିଙ୍କ

ବିଦ୍ୟାଳୟରୁ ବାହାରିଥିବା ପ୍ରତ୍ୟେକ ପୁରାତନ ଛାତ୍ରର ଘରେ ନିଜର ଗୋଟିଏ ପାଠାଗାର ମଧ୍ୟ ରହିଛି । ପରିଶେଷରେ, ଏହା ଏକ ସୁବିଦିତ କଥା ଯେ, ସେହି ବିଦ୍ୟାଳୟରୁ ବାହାରିଥିବା ଛାତ୍ରମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଆଇନ୍ ଆଖିରେ ଅପରାଧ ବୋଲି କୁହାଯିବା ଭଳି କୌଣସି କାର୍ଯ୍ୟ କରିନାହାନ୍ତି ।

ପିଲାମାନଙ୍କ ସହିତ କାର୍ଯ୍ୟ କରିଥିବା ପ୍ରତ୍ୟେକ ବ୍ୟକ୍ତି ନିଶ୍ଚୟ ଜାଣିଛନ୍ତି ଯେ, ବେଳେ ବେଳେ ଏକାଧିକ ବାର ଏପରି ମନେ ହେବାକୁ ଆରମ୍ଭ କରେ, ସିଏ ଯାହା ଏତେସବୁ କରୁଛି, ତାହା ସତେଅବା କାହାରି ହେଲେ କୌଣସି କାମରେ ମୋଟେ ଲାଗିବନାହିଁ, - ତା' ନିଜର ଅଥବା ପିଲାମାନଙ୍କର ମଧ୍ୟ କୌଣସି କାମରେ ଲାଗିବନାହିଁ । ଅର୍ଥାତ୍, ଯେଉଁ ବୁଦ୍ଧିମାନ୍‌ମାନେ ଏକଦା ତା'ର ଏହି ବିଦ୍ୟାଳୟକୁ ଆସିଥିଲେ, ସେହିମାନେ ହିଁ ବୁଦ୍ଧିମାନ୍ ହୋଇ ରହିଲେ ଓ ଯେଉଁମାନେ ନିର୍ବୁଦ୍ଧିଆ ହୋଇ ଆସିଥିଲେ, ସେମାନେ ନିର୍ବୁଦ୍ଧିଆ ହୋଇ ଏଠାରୁ ଗଲେ । ଏହିପରି ଭାବି ଶିକ୍ଷକମାନେ ଅନେକ ସମୟ ବେଶ୍ ଅଶ୍ୱସ୍ତ ହୋଇ ପଡ଼ନ୍ତି ଯେ, ସେମାନେ ଗୋଟିଏ ପିଲାର ଅନ୍ତର୍ନିହିତ ଶକ୍ତିଗୁଡ଼ିକର କ୍ଷେତ୍ରରେ ଆଦୌ କିଛିହେଲେ କରି ପାରିଲେନାହିଁ କିମ୍ବା ପିଲାଟି ବାସ କରୁଥିବା ବାତାବରଣଟିକୁ ମଧ୍ୟ ମୋଟେ ଆୟତ୍ତ କରି ପାରିଲେ ନାହିଁ ।

ଏହି ସଂଶୟ ମଧରେ ରହି ଯାଉଥିବା ଶିକ୍ଷକମାନଙ୍କ ନିମନ୍ତେ ମଧ୍ୟ ସୁଖୋମ୍ଲିନସ୍କି ଶିକ୍ଷା ମଧ୍ୟରେ ନିହିତ ହୋଇ ରହିଥିବା ବିଶ୍ୱାସଟିକୁ ବହନ କରି ଆଣିବାରେ ନିଶ୍ଚୟ ସଫଳ ହୋଇଛନ୍ତି । ଏବଂ ସେହି କାରଣରୁ ହିଁ, ଯେଉଁମାନେ ବିଦ୍ୟାଳୟର ଭୂମିକା ଉପରେ ନିଜର ବିଶ୍ୱାସକୁ ହରାଇ ବସିଛନ୍ତି ତଥା ଯେଉଁମାନେ ସେଥିରେ ତଥାପି ବିଶ୍ୱାସ ରଖିଛନ୍ତି, ତାଙ୍କର ଲିଖିତ ପୁସ୍ତକଗୁଡ଼ିକୁ ଉଭୟେ ଅତ୍ୟନ୍ତ ଆଗ୍ରହର ସହିତ ପାଠ କରୁଛନ୍ତି । ପ୍ରଥମୋକ୍ତମାନେ ଆପଣାର ସେହି ବିଶ୍ୱାସକୁ ପୁନର୍ବାର ଫେରି ପାଇବା ନିମନ୍ତେ ଏକ ବ୍ୟଗ୍ରତା ପ୍ରକାଶ କରୁଛନ୍ତି ଏବଂ ଅନ୍ୟମାନେ ଏବେ ମଧ୍ୟ ହରାଇ ଦେଇନଥିବା ନିଜର ସେହି ବିଶ୍ୱାସଟିକୁ ଅଧିକ ଦୃଢ଼ କରି ରଖିବାକୁ ଇଚ୍ଛା କରୁଛନ୍ତି ।

\+ \+ \+

ସବାଶେଷରେ, ସୋଭିଏଟ୍ ରୁଷିଆର ଏହି ପ୍ରଖ୍ୟାତ୍ ଶିକ୍ଷାବିତ୍‌ଙ୍କ

ଆଡ଼ମ୍ବରଶୂନ୍ୟ ଓ ବାଧାରେ ପରିପୂର୍ଣ୍ଣ ଜୀବନ ସହିତ ସମ୍ପର୍କିତ କେତୋଟି କଥା କିଞ୍ଚିତ୍ ବିସ୍ତାରିତ ଭାବରେ କହିଲେ ତାହା ଆଦୌ ଅପ୍ରାସଙ୍ଗିକ ହେବନାହିଁ ।

ଭାସିଲି ସୁଖୋମ୍ଲିନସ୍କି ୧୯୧୮ ମସିହା ସେପ୍ଟେମ୍ବର ମାସରେ ପାଭ୍ଲିଶ୍ ନିକଟରେ ଜନ୍ମ ଗ୍ରହଣ କରିଥିଲେ । ସେହି ଜିଲ୍ଲାରେ ତ ତାଙ୍କ ଜୀବନର ସମ୍ପୂର୍ଣ୍ଣ ସମୟଟି ହିଁ ପରେ ଅତିବାହିତ ମଧ୍ୟ ହୋଇଥିଲା । ବାପା ବଢ଼େଇ କାମ କରୁଥିଲେ, କିଛି ଚାଷକାମ ମଧ୍ୟ ଥିଲା ଏବଂ ଭାସିଲିଙ୍କ ବ୍ୟତୀତ ତାଙ୍କର ଆଉ ଦୁଇଟି ପୁଅ ମଧ୍ୟ ଥିଲେ । ଝିଅ ବି ଗୋଟିଏ । ଏହି ଚାରିଜଣଯାକ ହିଁ ପରେ ଶିକ୍ଷକ ହେଲେ ।

ତାଙ୍କ ପିଲାଦିନଟି ବହୁତ ବାଧା ମଧ୍ୟରେ କଟିଥିଲା; ଘରେ ଅନେକ ସମୟରେ ଯଥେଷ୍ଟ ଖାଦ୍ୟ ନଥିଲା । ପନ୍ଦରବର୍ଷ ବୟସ ସମୟରେ ଯେତେବେଳେ ଭାସିଲି ଅଧ୍ୟୟନ ନିମନ୍ତେ କ୍ରେମେଞ୍ଚୁଗ୍ ଯିବାକୁ ଘରୁ ବାହାରିଲେ, ସେତେବେଳେ ତାଙ୍କୁ ଦେବା ସକାଶେ କେବଳ କେତୋଟି ମାତ୍ର ଆଳୁର ବରା ଓ ଦୁଇମାଣ ଭଜା ସୋୟାବିନ୍ ଛଡ଼ା ତାଙ୍କ ମାଆଙ୍କ ପାଖରେ ଆଉ ଅଧିକ କିଛିହେଲେ ନଥିଲା ।

ପ୍ରଥମେ ସୁଖୋମ୍ଲିନସ୍କି ରୋଗୀମାନଙ୍କର ଶୁଶ୍ରୂଷା ପାଇଁ ନିଯୋଜିତ ଜଣେ ଆଜ୍ଞାପାଳନକାରୀ ତଳିଆ କର୍ମଚାରୀ ହେବାଲାଗି ଏକ ପ୍ରଶିକ୍ଷଣ ଗ୍ରହଣ କରିବା ଆରମ୍ଭ କଲେ । କିନ୍ତୁ, ଥରେ ଶବମାନଙ୍କର ବ୍ୟବଚ୍ଛେଦ କରା ଯାଉଥିବା ଏକ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କରୁକରୁ ସେ ସେଠାରୁ ଦଉଡ଼ି ପଳାଇଗଲେ ଏବଂ ଶିକ୍ଷକ ହେବା ନିମନ୍ତେ ତାଲୀମ ନେବାପାଇଁ ସ୍ଥିର କରିଥିଲେ । ସେତେବେଳେ ସିଏ କବିତା ମଧ୍ୟ ଲେଖୁଥିଲେ । (ସଂପ୍ରତି ମସ୍କୋରୁ ପ୍ରକାଶିତ 'ପାୟୋନିୟର୍'ନାମକ ଶିଶୁପତ୍ରିକାର କର୍ମୀମାନେ ପତ୍ରିକାଟିର ଗୋଟିଏ ପୁରାତନ ସଂଖ୍ୟାରେ ଭାସ୍ୟା ସୁଖୋମ୍ଲିନ୍ସ୍କି ନାମକ ଜଣେ କବିଙ୍କର ସ୍ୱାକ୍ଷର ଥିବା କେତେଗୁଡ଼ିଏ କବିତା ଆବିଷ୍କାର କରିଛନ୍ତି ) ଏହାର ଅର୍ଥ ହେଉଛି ଯେ, ନିତାନ୍ତ ଅଳ୍ପ ବୟସରୁ ସିଏ ନିଜର କବିତାଗୁଡ଼ିକୁ ଛାପିବା ମଧ ଆରମ୍ଭ କରି ଦେଇଥିଲେ ।

ସତର ବର୍ଷ ବୟସରେ ସୁଖୋମ୍ଲିନସ୍କି ନିଜ ଘରକୁ ଫେରି ଆସିଥିଲେ ଓ ଏକ ପ୍ରାଥମିକ ବିଦ୍ୟାଳୟରେ ଜଣେ ଶିକ୍ଷକରୂପେ ଯୋଗ ଦେଇଥିଲେ । ଏହି କାର୍ଯ୍ୟଟିରେ ଅବସ୍ଥାପିତ ରହିଥିବା ବେଳେ ସେ ପୋଲ୍‌ଟାଭା ଶିକ୍ଷା ଇନ୍‌ଷ୍ଟିଚିଉଟ୍‌ର

ଜଣେ ଘରୋଇ ଛାତ୍ର ହିସାବରେ ଡିଗ୍ରୀସ୍ତରୀୟ ଏକ ଅଧ୍ୟୟନକୁ ମଧ୍ୟ ସମ୍ପୂର୍ଣ୍ଣ କଲେ । ତା'ପରେ ଦେଶର ରକ୍ଷା କରିବାର ସେହି ମହାନ୍ ଯୁଦ୍ଧରେ (୧୯୪୧-୧୯୪୫) ସୁଖୋମ୍ଲିନ୍‌ସ୍କି ସର୍ବପ୍ରଥମ ସୁଯୋଗଟିକୁ ପାଇଯିବା ମାତ୍ରକେ ହିଁ ସମ୍ମିଳିତ ହେବାକୁ ଯାଇଥିଲେ । ଫ୍ୟାସିଷ୍ଟ୍ ଆକ୍ରମଣକାରୀମାନେ ତାଙ୍କର ନିଜ ଗାଆଁଟିକୁ ତଥା ତା'ର ଚତୁର୍ଦ୍ଦିଗସ୍ଥ ଅଞ୍ଚଳଟିକୁ ମଧ୍ୟ ଦଖଲ କରି ନେଇଥିଲେ । ଶତ୍ରୁ ହାତକୁ ଚାଲି ଯାଇଥିବା ସେହି ଅଞ୍ଚଳଟିରେ ତାଙ୍କର ୧୮ ବର୍ଷୀୟା ପତ୍ନୀ ଭେରା ପୋଭ୍‌ଣା ଶତ୍ରୁର ପ୍ରତିରୋଧ କରୁଥିବା ପକ୍ଷଟିକୁ ସାହାଯ୍ୟ କରୁଥିଲେ । ଶତ୍ରୁର ସାମରିକ ପୋଲିସ୍ ତାଙ୍କୁ ଧରି ନେଇଥିଲେ ଏବଂ ଏକ ନାତ୍‌ସୀ ବନ୍ଦୀଶିବିରରେ ରହିଥିବା ସମୟରେ ଭେରା ଗୋଟିଏ ପୁତ୍ରସନ୍ତାନକୁ ଜନ୍ମ ଦେଇଥିଲେ । ଶତ୍ରୁପକ୍ଷର ଜଣେ ଅଫିସର ନବଜାତ ବାଳକଟିକୁ ଭେରାଙ୍କ ପାଖକୁ ନେଇ ଆସିଥିଲେ, - ପିଲାଟିକୁ ମାତ୍ର କେତେ ଦିନ ହିଁ ହୋଇଥାଏ, - ଏବଂ କହିଥିଲେ ଯେ ସ୍ଥାନୀୟ ପ୍ରତିରୋଧକାରୀ ସଂସ୍ଥାଟିର ନେତାଙ୍କର ନାଆଁଟି ସିଏ ତାଙ୍କୁ ନକହିଲେ ସିଏ ତାଙ୍କର ଏହି ସନ୍ତାନଟିକୁ ହତ୍ୟା କରିବାକୁ ଅବଶ୍ୟ ବାଧ୍ୟ ହେବେ । ବାସ୍ତବରେ ସେହି କଥା ହିଁ ହେଲା ଏବଂ ଭେରା ପୋଭ୍‌ଣା ବହୁତ ଦିନ ଯାଏ ନାନା ଉତ୍ପୀଡ଼ନ ସହ୍ୟ କରିବାପରେ ତାଙ୍କୁ ଶେଷକୁ ଫାଶୀରେ ହିଁ ଝୁଲାଇ ଦିଆ ଯାଇଥିଲା ।

....ସୁଖୋମ୍ଲିନ୍‌ସ୍କି ଏଥିରେ ଗଭୀର ଦୁଃଖ ହିଁ ପାଇଲେ, ସାରା ଜୀବନଟା ହିଁ ସେହି ଦୁଃଖରେ ଅଭିଭୂତ ହୋଇ ରହିଥିଲେ । ନିଜ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ନିଜ ପତ୍ନୀଙ୍କର ମୃତ୍ୟୁ ବିଷୟରେ ଲେଖିଥିଲେ : "ମୁଁ ଦୁଇଟି ଆବେଗକୁ ନେଇ ହିଁ ଜୀବନଧାରଣ କରିଛି, - ଗୋଟିଏ ଭଲ ପାଇବା ଓ ଆଉଗୋଟିଏ ହେଉଛି ଘୃଣା କରିବା । ମୁଁ ପିଲାମାନଙ୍କୁ ଭଲ ପାଏ ଏବଂ ଫ୍ୟାସିଷ୍ଟମାନଙ୍କୁ ଘୃଣା କରେ । ମୋ' ହୃଦୟଟା ସର୍ବଦା ହିଁ ଘୃଣାଦ୍ୱାରା ନିଶ୍ଚୟ ସ୍ପନ୍ଦିତ ହେବାରେ ଲାଗିଥିବ ସତ, ମାତ୍ର ଏଣେ ଅପର ପକ୍ଷରେ ମୁଁ ମୋ' ଦେଶର ସବୁ ପିଲାଙ୍କୁ ମୋ' ଛାତିପାଖକୁ ଟାଣି ଆଣିବା ନିମନ୍ତେ ଏକ ବଳବତୀ ଇଚ୍ଛା ବି ଅନୁଭବ କରୁଥିବ, - ସେମାନେ ଯେପରି କେହିହେଲେ ଦୁଃଖ ବା କଷ୍ଟ ନ ଭୋଗନ୍ତୁ, ସେଥିଲାଗି ଉଦ୍‌ଗ୍ରୀବ ହୋଇ ରହିଥିବି । ମୁଁ ପ୍ରତ୍ୟେକ ଦିନ ଏବଂ ପ୍ରତ୍ୟେକ ଘଟିକାରେ ହିଁ ଆଦୌ କୌଣସି ବାଡ଼ ନମାନି ପିଲାମାନଙ୍କ ମଧ୍ୟରେ ରହିଥିବା ମନୁଷ୍ୟପଣର ଅଭିବୃଦ୍ଧି ନିମନ୍ତେ କାର୍ଯ୍ୟ କରୁଥିବି, ଆଉଜଣେ ମନୁଷ୍ୟର ହୃଦୟତଳେ ଅର୍ଥାତ୍ ଆତ୍ମା ଭିତରେ ହିଁ

ନାନାପ୍ରକାରର ବ୍ୟକ୍ତ ହେବାରେ ଲାଗିଥିବା ସ୍ପନ୍ଦନଗୁଡ଼ିକୁ ଅନୁଭବ କରି ପାରିବାର ସେହି ସୂକ୍ଷ୍ମ ସମର୍ଥତାଟିକୁ ଅର୍ଜନ କରୁଥିବି ।''

ଶତ୍ରୁଦ୍ୱାରା ଅଧିକୃତ ପାଭ୍‌ଲିଶ୍‌ଠାରେ ସେହି ଅତୀବ ଦୁଃଖପୂର୍ଣ୍ଣ ଘଟଣାଟି ଘଟୁଥିବା ସମୟରେ, ଏଣେ ନିଜେ ସୁଖୋମ୍‌ଲିନ୍‌ସ୍କି ମଧ୍ୟ ମସ୍କୋ ନିକଟବର୍ତ୍ତୀ ରଣକ୍ଷେତ୍ରରେ ଗମ୍ଭୀର ଭାବରେ ଆହତ ହୋଇ ପଡ଼ିଥିଲେ । ବସ୍ତୁତଃ ଗୋଟିଏ ତୋପର ଭଗ୍ନ ଅଂଶଗୁଡ଼ିକ ତାଙ୍କର ଛାତିଭିତରେ ଜୀବନଯାକ ରହି ଯାଇଥିଲେ । ଦେଶର ଦୂର ଗ୍ରାମାଞ୍ଚଳରେ ଉଦ୍‌ମୁର୍ସିଆ ପରେ ତାଙ୍କର ଚିକିତ୍ସା କରା ଯାଇଥିଲା ଓ ଯେତେବେଳେ ସେ ଡାକ୍ତରଖାନାରୁ ବାହାରକୁ ଆସିଲେ, ସେତେବେଳେ ଜଣାଗଲା ଯେ ଏହିସବୁ କ୍ଷତ ହେତୁ ସେ ଆଉ ରଣକ୍ଷେତ୍ର ମାନଙ୍କରେ ସିଧା ଯୁଦ୍ଧ କରିବା ନିମନ୍ତେ ଆଉ ଆଦୌ ସମର୍ଥ ହେବେନାହିଁ । ଏଣେ ତାଙ୍କର ନିଜ ବାସସ୍ଥାନଟି ଏବେ ମଧ୍ୟ ନାତ୍‌ସୀମାନଙ୍କର ଅଧିକାରରେ ରହିଥାଏ । ....ସୁଖୋମ୍‌ଲିନ୍‌ସ୍କିଙ୍କୁ ତୁରନ୍ତ ଗୋଟିଏ କାର୍ଯ୍ୟ ମିଳି ଯାଇଥିଲା ଏବଂ, ଯେଉଁଠାରେ ସେ ଚିକିତ୍ସିତ ହେଉଥିଲେ, ସେହିଠାରେ ହିଁ ସେହି ଉପାନ୍ତରେ ସ୍କୁଲର ନିର୍ଦ୍ଦେଶକରୂପେ କାର୍ଯ୍ୟ କରିବାକୁ ସେ ଜାଗାଟିଏ ପାଇଗଲେ । ତା'ପରେ ଇଉକ୍ରେନ୍ ଅଞ୍ଚଳଟି ଶତ୍ରୁହାତରୁ ମୁକ୍ତ ହେବା ପରେ ସେ ନିଜ ଘରକୁ ଫେରିଆସିଲେ ଏବଂ ଜିଲ୍ଲା ଶିକ୍ଷାବିଭାଗର ଦାୟିତ୍ୱରେ ରହିଥିଲେ । ଏହାର ପରବର୍ତ୍ତୀ ବର୍ଷଗୁଡ଼ିକରେ ବହୁ କଷ୍ଟର ସମ୍ମୁଖୀନ ହେବାକୁ ପଡ଼ିଥିଲା; କାରଣ ଯୁଦ୍ଧ ସମୟରେ ବହୁ ବିଦ୍ୟାଳୟ ନଷ୍ଟ ହୋଇ ଯାଇଥିଲେ, ସେଗୁଡ଼ିକରେ ଯଥେଷ୍ଟ ସଂଖ୍ୟାରେ ଶିକ୍ଷକ ନଥିଲେ, ଏବଂ ପାଠ୍ୟପୁସ୍ତକ କିମ୍ବା ଖାତାପତ୍ର ମଧ୍ୟ ନଥିଲା । ପୁନଶ୍ଚ, ଯୁଦ୍ଧଟା ଆସି ପିଲାମାନଙ୍କର ଏହି ଶୈଶବଟାକୁ ହିଁ ସେମାନଙ୍କ ଠାରୁ ଅପହରଣ କରି ନେଇଥିଲା । ସେମାନେ ନିଜର ବାପାମାଆ ମାନଙ୍କୁ ଦେଖିନଥିଲେ, ସେମାନଙ୍କୁ ଜାଣି ବି ନଥିଲେ । ତେଣୁ, କେତେ ପ୍ରକାରେ ମାର୍ଗଟିରୁ ହୁଡ଼ି ଯାଇଥିଲେ ଓ ଶତ୍ରୁ ସେମାନଙ୍କର ଗାଆଁଟିକୁ ଅଧିକାର କରି ନେଇଥିବା ସମୟଟିର ବିଭୀଷିକାଗୁଡ଼ିକ ଫଳରେ ଅତିମାତ୍ରାରେ ସବୁକିଛି ପ୍ରତି ବିତୃଷ୍ଣ ଏବଂ ବିରକ୍ତ ହୋଇ ପଡ଼ିଥିଲେ । ଠିକ୍ ସେହି ବର୍ଷଗୁଡ଼ିକରେ ହିଁ ସୁଖୋମ୍‌ଲିନ୍‌ସ୍କିଙ୍କର ଶିକ୍ଷାର ତତ୍ତ୍ୱଟି ନିଜର ଆକାରଟିକୁ ଲାଭ କରିଥିଲା, - ପିଲାମାନଙ୍କୁ ଭରସା ଏବଂ ବିଶ୍ୱାସ ଦେଇ ସୁରକ୍ଷିତ କରି ରଖିବା ହିଁ ସେହି ତତ୍ତ୍ୱର ଆଧାରରୂପେ କାର୍ଯ୍ୟ

କରିଥିଲା । ଶିକ୍ଷାର ଇତିହାସରେ ଏଭଳି ଏକ ସ୍ଥିତି ଯେ ପ୍ରଥମଥର ପାଇଁ ଆସି ପହଞ୍ଚିଥିଲା, ସେକଥା ଆଦୌ ନୁହେଁ । ନେପୋଲିଆନ୍‌ଙ୍କ ସମୟର ଯୁଦ୍ଧବେଳେ ପେଷ୍ଟାଲଜିଙ୍କର ଆବିର୍ଭାବ ହୋଇଥିଲା, ରୁଷିଆରେ ଗୃହଯୁଦ୍ଧ ହେବାର ଠିକ୍ ପରେ ହିଁ ମାକାରେଙ୍କୋ ଆସିଥିଲେ ଏବଂ ଫ୍ୟାସିଷ୍ଟମାନଙ୍କ ସହିତ ଲାଗିଥିବା ଏହି ମହାନ୍ ଯୁଦ୍ଧଟି ପରେ ସଂପ୍ରତି ସୁଖୋମ୍ଲିନ୍ସ୍କି ମଧ୍ୟ ଆସିଲେ । ପିଲାମାନଙ୍କ ପରି ଆଉ କେହିହେଲେ ଯୁଦ୍ଧ ଲାଗିବାଦ୍ୱାରା ଏତେ ଭୟାନକ ଭାବରେ ଏତେ କଷ୍ଟ ଓ ଦୁଃଖର ସମ୍ମୁଖୀନ ନ ହୋଇନଥାନ୍ତି ଏବଂ, ଏହି ଯୁଦ୍ଧପରବର୍ତ୍ତୀ ଏହି ପର୍ଯ୍ୟାୟମାନଙ୍କରେ ହିଁ ଶିକ୍ଷକମାନଙ୍କର ସର୍ବାଧିକ ପ୍ରୟୋଜନ ଥାଏ ।

ଠିକ୍ ସେହି କାରଣରୁ ହିଁ ସୁଖୋମ୍ଲିନ୍ସ୍କି ନିଜର କାର୍ଯ୍ୟଟି ଆରମ୍ଭ କରିବା ସମୟଠାରୁ ତାଙ୍କର ଶେଷ ଦିନଗୁଡ଼ିକ ଯାଏ ପିଲାମାନଙ୍କର ଦୁଃଖ ତଥା କଷ୍ଟଗୁଡ଼ିକ ବିଷୟରେ ଏତେ ଏତେ କଥା ଲେଖିବାକୁ ଇଚ୍ଛା କରିଛନ୍ତି । ସେ ଶିକ୍ଷକମାନଙ୍କୁ ଯଥାସମ୍ଭବ ନିଜର ଦୃଷ୍ଟିଗୁଡ଼ିକୁ ଅଧିକରୁ ଅଧିକ ପ୍ରସାରିତ କରିଦେଇ ପିଲାମାନଙ୍କ ଆଡ଼କୁ ଅନାଇବା ନିମନ୍ତେ ନିବେଦନ କରିଛନ୍ତି, - ଏବଂ ନିଜର କାର୍ଯ୍ୟମଧ୍ୟରେ ନିହିତ ଯାବତୀୟ ସତ୍ୟକୁ ଆବିଷ୍କାର କରିବାଲାଗି କେତେ କ'ଣ କହିଛନ୍ତି । ପିଲାମାନଙ୍କର ଦୁଃଖଟିକୁ ସେ ସର୍ବଦା ନିତାନ୍ତ ଅସହନୀୟ ବୋଲି ଆବିଷ୍କାର କରିଛନ୍ତି ।

ଦିନେ ସାନ ଝିଅଟିଏ କାନ୍ଦି କାନ୍ଦି ତାଙ୍କ ପାଖରେ ଆସି ପହଞ୍ଚିଲା; ତା'ର ବାପା ଠିକ୍ ସେହି ସମୟରେ ଘର ଛାଡ଼ି କୁଆଡ଼େ ଚାଲି ଯାଇଥାନ୍ତି ଏବଂ ସେଥିଲାଗି ବିଦ୍ୟାଳୟରେ କେତେ ପିଲା ଅତ୍ୟନ୍ତ ନିଷ୍ଠୁର ଭାବରେ ତାକୁ ଚିଡ଼ାଇବାରେ ଲାଗିଛନ୍ତି; ସେମାନେ ତାକୁ କହୁଛନ୍ତି ଯେ ବର୍ତ୍ତମାନ ତା'ର ବାପା ବୋଲି ଆଉ କେହିହେଲେ ନାହାନ୍ତି । ସୁଖୋମ୍ଲିନ୍ସ୍କି ତା'ପରେ ତାକୁ କହିଲେ

" ଏଣିକି ମୁଁ ହେଉଛି ତୋ'ର ବାପା । ତୁ ଏକଥା ଯାଇ ସବୁ ପିଲାଙ୍କୁ କହିଦେବୁ; ମୁଁ ହେଉଛି ତୋ'ର ବାପା ।''

ସେହି ସମୟରେ ତାଙ୍କର ନିଜର ବି ଗୋଟିଏ ପରିବାର ରହିଥିଲା, - ସ୍ତ୍ରୀ, ପୁଅ ଓ ଝିଅ ସମସ୍ତେ ଥିଲେ । କିନ୍ତୁ ସିଏ ଆଉ ଅନ୍ୟ କୌଣସି ଉତ୍ତର ଦେବାକୁ ସମର୍ଥ ହୋଇନଥିଲେ ।

ପିଲାମାନଙ୍କ ସହିତ ଆହୁରି ଅଧିକ ନିବିଡ଼ ଭାବରେ କାର୍ଯ୍ୟ କରିବା ସକାଶେ ସୁଖୋମ୍ଲିନ୍‌ସ୍କି ୧୯୪୭ ମସିହାରୁ ହିଁ ନିଜର ପରିଚାଳନାଗତ ଦାୟିତ୍ୱଟିକୁ ଛାଡ଼ି ଦେଇଥିଲେ ଏବଂ ତାଙ୍କୁ ପାଭ୍‌ଲିଶ୍‌ଠାରେ ଅବସ୍ଥିତ ସ୍କୁଲଟିର ଦାୟିତ୍ୱଟି ଗ୍ରହଣ କରିବା ନିମନ୍ତେ ପଠାଇ ଦିଆଗଲା । ଏହି ବିଦ୍ୟାଳୟ ସେହି ଦିନଠାରୁ କେବଳ ସୋଭିଏଟ୍ ରୁଷିଆରେ ନୁହେଁ, ଅନ୍ୟାନ୍ୟ ଦେଶଗୁଡ଼ିକରେ ମଧ୍ୟ ପ୍ରସିଦ୍ଧ ହୋଇ ପାରିଛି ।

ତା'ପରେ ଯେଉଁ ଦିନଗୁଡ଼ିକ ଆସିଲା, ସେଗୁଡ଼ିକ ଗୋଟିଏ ପ୍ରକାର ହୋଇ ହିଁ ପରସ୍ପରର ଅନୁଗମନ କରିଥିଲେ, - ବର୍ଷ ବର୍ଷ ଯାବତ୍ ସବୁ ସେହିପରି ଚାଲିଲା । ପ୍ରତ୍ୟେକ ଦିନ ସକାଳେ ସୁଖୋମ୍ଲିନ୍‌ସ୍କି ଚାରି ଅଥବା ପାଞ୍ଚଟା ସମୟରେ ଶଯ୍ୟାତ୍ୟାଗ କରୁଥିଲେ, ବିଦ୍ୟାଳୟର ଅଟ୍ଟାଳିକାରେ ଥିବା ତାଙ୍କର ଗୃହମଧ୍ୟରୁ ବାହାରକୁ ଆସୁଥିଲେ ଏବଂ ନିର୍ଦ୍ଦେଶକଙ୍କର ପଢ଼ିବା ଘରେ ନିଜର କାର୍ଯ୍ୟ ଆରମ୍ଭ କରି ଦେଉଥିଲେ । ସେହିଠାରେ ହିଁ ସିଏ ଆଠଟା ବାଜିବାଯାଏ ବସୁଥିଲେ, ଆପଣାର ବହି, ପ୍ରବନ୍ଧ ତଥା ଅନ୍ୟ ଲେଖାଗୁଡ଼ିକ ବିଷୟରେ ଚିନ୍ତା କରୁଥିଲେ ଓ ନିଜର ସ୍ପଷ୍ଟ, କ୍ଷୁଦ୍ର ତଥା ସୁଅନୁପାତଯୁକ୍ତ ହସ୍ତାକ୍ଷରରେ ସବୁକିଛି ଲେଖିବାରେ ଲାଗି ଯାଉଥିଲେ ।

ଆଠଟା ବେଳକୁ ସେ ପଢ଼ାଘର ଭିତରୁ ବାହାରକୁ ଆସୁଥିଲେ ଏବଂ ପିଲାମାନଙ୍କୁ ସ୍ୱାଗତ ଜଣାଇବା ସକାଶେ ବାରଣ୍ଡା ପାଖରେ ଯାଇ ଛିଡ଼ା ହେଉଥିଲେ । ବିଦ୍ୟାଳୟରୁ ସେ କ୍ୱଚିତ୍ ଅନୁପସ୍ଥିତ ରହୁଥିଲେ, ଏପରିକି ଶିକ୍ଷାବିଜ୍ଞାନ ସମ୍ପର୍କିତ କେନ୍ଦ୍ର ଏକାଡ଼େମୀର ଜଣେ ସଦସ୍ୟ ହୋଇ ନିର୍ବାଚିତ ହେବା ପରେ ମଧ୍ୟ ସ୍କୁଲରୁ ଅନୁପସ୍ଥିତ ରହୁନଥିଲେ । ଆଦୌ କେବେ ଅନୁପସ୍ଥିତ ରହିଲେ ଯଥାଶୀଘ୍ର ବାହୁଡ଼ି ଆସୁଥିଲେ । ଗ୍ରୀଷ୍ମଋତୁରେ ଅନ୍ୟ ସବୁଯାକ ଶିକ୍ଷକଙ୍କୁ ସେ ଛୁଟୀରେ ସେମାନଙ୍କର ଘରକୁ ଯିବାଲାଗି ଛାଡ଼ି ଦେଉଥିଲେ ଏବଂ ସ୍ୱୟଂ ବିଦ୍ୟାଳୟରେ ରହୁଥିଲେ । ବିଦ୍ୟାଳୟରେ ହେଉଥିବା ମରାମତି କାମଗୁଡ଼ିକୁ ଦେଖୁଥିଲେ ଏବଂ ପିଲାମାନଙ୍କ ସହିତ ସେଠାରେ ଥିବା ବଗିଚା ଓ ଅଙ୍ଗୁରବାଡ଼ିମାନଙ୍କରେ କାର୍ଯ୍ୟ କରୁଥିଲେ । ଜୀବନର ଅଳ୍ପ କେତେଗୋଟି ଅନ୍ତିମ ବର୍ଷମାନଙ୍କରେ ସୁଖୋମ୍ଲିନ୍‌ସ୍କି ନିଜର ଅନ୍ତିମ ସମୟ ହୋଇ ଆସୁଛି ବୋଲି ବେଶ୍ ଜାଣି ପାରିଲେ ; ତାଙ୍କର ଛାତି ଭିତରେ ରହି ଯାଇଥିବା ତୋପର ଭଗ୍ନ ଅଂଶଗୁଡ଼ିକ

ସ୍ପଷ୍ଟତଃ ନିଜର ପ୍ରଭାବ ବିସ୍ତାର କରୁଥିଲେ । ମାତ୍ର, ସେହି ବିଷୟରେ କେହିହେଲେ ତାଙ୍କଠାରୁ କେବେ କୌଣସି ଅଭିଯୋଗ କରିବାର ଶୁଣି ହିଁ ନଥିଲେ ।

ତାଙ୍କର ସତୀର୍ଥ ଶିକ୍ଷକମାନେ ସ୍ମରଣ କରି କହନ୍ତି ଯେ, ସୁଖୋମ୍ଲିନସ୍କି ବେଳେ ବେଳେ ହଠାତ୍ ବିବର୍ଣ୍ଣ ଦେଖା ଯାଉଥିଲେ, ନିଜ ଛାତିଟିକୁ ବହୁତ ବିକଳରେ ଯାବୁଡ଼ି ଧରୁଥିଲେ, ଉଠି ପଡ଼ି ନିଜର ଅଧ୍ୟୟନ-ପ୍ରକୋଷ୍ଠଟିକୁ ଯେକୌଣସି ମତେ ଚାଲି ଯାଉଥିଲେ । ଅଳ୍ପ କେତେ ମିନିଟ୍ ପରେ ସେଠାରୁ ପୁଣି ଫେରି ଆସୁଥିଲେ । କ'ଣ ହେଲା ବୋଲି ପଚରାଗଲେ ସିଏ ସମସ୍ତଙ୍କୁ ଆଦୌ ଚିନ୍ତିତ ନହେବା ସକାଶେ କହୁଥିଲେ । ତା'ପରେ, ପୂର୍ବରୁ ଯେଉଁସବୁ ଅନ୍ୟ କଥା ପଡ଼ିଥିଲା, ସମସ୍ତେ ପୁନର୍ବାର ସେହି କଥାକୁ ଫେରି ଯାଉଥିଲେ । ଶିକ୍ଷକପ୍ରକୋଷ୍ଠରେ ତାଙ୍କର ସହଶିକ୍ଷକମାନେ କେବେହେଲେ ତାଙ୍କର ଅସୁସ୍ଥତା କିମ୍ବା ପାରିବାରିକ ଦୁର୍ଗତି ସମ୍ବନ୍ଧରେ କେବେହେଲେ କିଛି ନପକାଇବା ନିମନ୍ତେ କଠୋର ନିର୍ଦ୍ଦେଶ ଦେଇ ରଖିଥିଲେ ।

ସୁଖୋମ୍ଲିନସ୍କି ଏହିପରି ଭାବରେ କୋଡ଼ିଏ ବର୍ଷ କାର୍ଯ୍ୟ କରିଥିଲେ । ପ୍ରତ୍ୟୁଷ ସମୟଟି ଲେଖାଲେଖିରେ, ପୂର୍ବାହ୍ନର ବେଳଟି ନିଜେ ଶ୍ରେଣୀମାନଙ୍କରେ ପାଠ ପଢ଼ାଉଥିଲେ ଏବଂ ଅନ୍ୟ ସାଥୀଶିକ୍ଷକମାନେ ନେଉଥିବା ଶ୍ରେଣୀଗୁଡ଼ିକରେ ଯାଇ ବସୁଥିଲେ । ସ୍କୁଲ ପରେ ପିଲାମାନଙ୍କ ସହିତ ବୁଲି ବାହାରୁଥିଲେ ଏବଂ ବହୁସଂଖ୍ୟାରେ ସବୁବେଳେ ସେଠାକୁ ଆସୁଥିବା ପରିଦର୍ଶକମାନଙ୍କ ସକାଶେ ମଧ ସମୟ ରଖୁଥିଲେ । ହଜାର ହଜାର କିଲୋମିଟର ଦୂରରେ ଥିବା ସ୍ଥାନମାନଙ୍କରୁ ଲୋକମାନେ ପାଭ୍‌ଲିଶ୍ ସ୍କୁଲ ଦେଖିବାକୁ ଆସୁଥିଲେ । ଏକା ଏକା ଅଥବା ଗୋଟିଏ ଗୋଟିଏ ଗୋଷ୍ଠୀ ହୋଇ ଆସୁଥିଲେ । ସେହି ଗୋଷ୍ଠୀରେ ଅନେକ ସମୟରେ ୪୦ ରୁ ୫୦ ପର୍ଯ୍ୟନ୍ତ ବ୍ୟକ୍ତି ମଧ୍ୟ ରହୁଥିଲେ । ଶିକ୍ଷକମାନେ ଆସୁଥିଲେ, ବହୁ ବିଦ୍ୟାଳୟର ନିର୍ଦ୍ଦେଶକମାନେ ଆସୁଥିଲେ, ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଆସୁଥିଲେ ଓ ଶିକ୍ଷାବିତ୍‌ମାନେ ଆସୁଥିଲେ ।

ଯେକୌଣସି ବିଦ୍ୟାଳୟ ପରି ପାଭ୍‌ଲିଶ୍ ବିଦ୍ୟାଳୟରେ ମଧ୍ୟ ଗୋଟିଏ ବିଶେଷ ଖାତା ସ୍ୱତନ୍ତ୍ର ଭାବରେ ରଖା ଯାଉଥିଲେ, ଯେଉଁଥିରେ କି ବିଦ୍ୟାଳୟର ସରକାରୀ ପରିଦର୍ଶକମାନେ ବିଦ୍ୟାଳୟଟିକୁ ପରିଦର୍ଶନ କରି ନିଜର ମନ୍ତବ୍ୟଗୁଡ଼ିକୁ

ଲେଖୁଥିଲେ । ଆଉଗୋଟିଏ ଖାତା ବି ଥିଲା ଯେଉଁଥିରେ କି ସେଠାକୁ ନିଜ ଆଗ୍ରହଦ୍ୱାରା ପରିଚାଳିତ ହୋଇ ଆସୁଥିବା ବେସରକାରୀ ବ୍ୟକ୍ତିମାନେ ମଧ୍ୟ ନିଜ ମନ୍ତବ୍ୟଗୁଡ଼ିକୁ ଲିପିବଦ୍ଧ କରୁଥିଲେ । ଏଠାରେ ସେହିଭଳି କେତୋଟି ମନ୍ତବ୍ୟ ପ୍ରଦତ୍ତ କରାଯାଉଛି :

" ଏହି ଅସାଧାରଣ ଏବଂ ଆଗ୍ରହ-ଉଦ୍ଦୀପକ ବିଦ୍ୟାଳୟରେ ମୁଁ କେବଳ ଗୋଟିଏ ଦିନ ହିଁ ରହିଲି । କିନ୍ତୁ ଚାରିବର୍ଷ କାଳ ଶିକ୍ଷା ବିଷୟରେ ବିଶେଷ ଅଧ୍ୟୟନ କରୁଥିବା ଜଣେ ଛାତ୍ର ହିସାବରେ ମୁଁ ଯେତିକି ଶିକ୍ଷା କରିଥିଲି, ଏଠାରେ ଗୋଟିଏ ଦିନରେ ମଧ ପ୍ରକୃତରେ ସେତିକି ଶିକ୍ଷା କରିଛି ।"

" ମୁଁ ସୁଖୋମ୍‌ଲିନ୍‌ସ୍କି ଲେଖୁଥିବା ବହିଗୁଡ଼ିକୁ ଆଗରୁ ପଢ଼ିଥିଲି ଏବଂ, ସେଗୁଡ଼ିକରେ ମୋତେ ଯେଉଁସବୁ କଥା ଆକର୍ଷକ ମନେ ହୋଇଥିଲା, ଏବେ ଏଠାକୁ ଆସି ନିଜ ଆଖିରେ ହିଁ ସେଗୁଡ଼ିକ ଦେଖିପାରିଲି । ଏଗୁଡ଼ିକୁ ଦେଖିବାପରେ ପୂର୍ବାପେକ୍ଷା ମୁଁ ଆହୁରି ଅଧିକ ପ୍ରେରଣା ଲାଭ କରି ପାରିଛି ।"

" ପାଭ୍‌ଲିଶ୍‌ଠାରେ ଅବସ୍ଥିତ ମାଧମିକ ବିଦ୍ୟାଳୟଟିର ପୁନର୍ବାର ଏକ ଶ୍ରେଣୀନିର୍ଣ୍ଣୟ ହେବା ଉଚିତ ଓ ଏହାକୁ ଗୋଟିଏ ବିଶ୍ୱବିଦ୍ୟାଳୟ ବୋଲି କୁହାଯିବା ଉଚିତ! ସମ୍ପୂର୍ଣ୍ଣ ଗମ୍ଭୀରତା ସହିତ ହିଁ ମୁଁ ଏହି କଥାଟିକୁ କହୁଛି : ପିଲାମାନଙ୍କ ସହିତ କାର୍ଯ୍ୟ କରୁଥିବା ଏବଂ ବିଦ୍ୟାଳୟସ୍ତରର ଶିକ୍ଷା ସହିତ ସଂପୃକ୍ତ ରହିଥିବା ଯେକୌଣସି ବ୍ୟକ୍ତି ଯଦି ନିଜକୁ ପ୍ରକୃତରେ ସଂଶ୍ଳିଷ୍ଟ ବୋଲି ଅନୁଭବ କରୁଥିବ, ତେବେ ସିଏ ଏଠାକୁ ଆସି ଓ ସବୁକିଛି ଦେଖି ଅବଶ୍ୟ ବିସ୍ମିତ ହିଁ ହେବ ଓ ତାହାର ପ୍ରଶଂସା କରିବାକୁ ଆରମ୍ଭ କରିବ ।"

ସୁଖୋମ୍‌ଲିନ୍‌ସ୍କି ଗୋଟିକ ପରେ ଗୋଟିଏ କରି ବହୁ ପୁସ୍ତକ ରଚନା କରି ଯାଇଛନ୍ତି । ପ୍ରଥମ କାଳରେ ସେ ଜଣେ ଶିକ୍ଷକର କାର୍ଯ୍ୟଟିର ହିଁ ବିଶ୍ଳେଷଣ କରୁଥିଲେ; ଶିକ୍ଷାର କୌଣସି ଗୋଟିଏ ଦିଗର ଆଲୋଚନା ଉପରେ ଆପଣାକୁ ସଂକେନ୍ଦ୍ରିତ କରି ରଖୁଥିଲେ, ପିଲାମାନଙ୍କର ଯତ୍ନ ନେବା ବିଷୟରେ ଚର୍ଚ୍ଚା କରୁଥିଲେ ଓ ତା'ପରେ ଯାଇ ଆଉଗୋଟିଏ ଦିଗ ବିଷୟରେ ବର୍ଣ୍ଣନା କରୁଥିଲେ । .... ୧୯୬୦ ଦଶକର ଶେଷ ଆଡ଼କୁ ସେ ନିଜର ବିଚାରଗୁଡ଼ିକର ସାରାଂଶଗୁଡ଼ିକୁ ମଧ୍ୟ ଉପସ୍ଥାପିତ କରିବା ଆରମ୍ଭ କଲେ ଏବଂ ସବୁଗୁଡ଼ିକୁ ଗୋଟିଏ ସମଗ୍ର ଭିତରକୁ

ଠୁଳ କରି ଆଣି ଶିକ୍ଷାର ଏକ ସମ୍ପୂର୍ଣ୍ଣ ତତ୍ତ୍ୱ ମଧ୍ୟ ପରିବେକ୍ଷଣ କରି ଦେଇଥିଲେ ।....

ସୁଖୋମ୍ଲିନ୍‌ସ୍କି ଖୁବ୍ ଜାଣି ପାରୁଥିଲେ ଯେ କ୍ରମେ ତାଙ୍କର ମୃତ୍ୟୁ ନିକଟ ହୋଇ ଆସୁଛି ଓ ସେ ସେହି ଅନୁସାରେ ନିଜକୁ ପ୍ରସ୍ତୁତ ମଧ୍ୟ କରୁଥିଲେ । ସେହି ପ୍ରତିକୂଳ ପର୍ଯ୍ୟାୟଟିରେ ସେ ମସ୍କୋ ସହରରେ ବାସ କରୁଥିବା ଜଣେ ସହକର୍ମୀଙ୍କ ପାଖକୁ ଲେଖିଥିଲେ : " ବର୍ତ୍ତମାନ ମୋ'ର ସ୍ୱାସ୍ଥ୍ୟ ଏପରି ଗୋଟିଏ ଅବସ୍ଥାକୁ ଆସିଲାଣି ଯେ, ଯୁଦ୍ଧ ବେଳୁଁ ମୋ' ଛାତିଭିତରେ ରହି ଯାଇଥିବା ଧାତୁତିଆରି ଦୁଇଟି ଭଗ୍ନ ଖଣ୍ଡ ଗୋଟିଏ ରକ୍ତବାହିକା ଆଡ଼କୁ ଖୁବ୍‌ଶୀଘ୍ର ଅଳ୍ପ କେତେ ମିଲିମିଟର୍ ନିକଟ ହୋଇ ଆସିବ । ସେହି ବାହିକାଟି ମୋ' ହୃଦ୍‌ଯନ୍ତ୍ରର ଅନତିଦୂରରେ ହିଁ ଅବସ୍ଥିତ । ତୁମେ ବିଶ୍ୱାସ କର, ତା'ପରେ ଯେଉଁ ଘଟଣାଟି ଘଟିବ, ମୁଁ ଶାନ୍ତ ଭାବରେ ନିଜକୁ ସେଥିଲାଗି ପ୍ରସ୍ତୁତ କରି ହିଁ ରଖିଛି । ଅବଶ୍ୟ ମୁଁ ଭଲ କରି ଜାଣେ ଯେ, ଏହି ପରିଣାମଗୁଡ଼ିକ ବିଷୟରେ ଆଗରୁ କିଛି ନଜାଣିବା ହିଁ ପ୍ରକୃତରେ ଅଧିକ ଭଲ ହେବ । କିନ୍ତୁ ଦୁର୍ଭାଗ୍ୟବଶତଃ ମୁଁ ତାହା ଜାଣି ସାରିଲିଣି । କାରଣ ସ୍ୱୟଂ ଡାକ୍ତର ଏକଥା ମୋତେ କହିଛନ୍ତି । ଆଉଗୋଟିଏ ଅପରେଶନ୍ କରିବାର ଆଦୌ କୌଣସି ପ୍ରଶ୍ନ ନାହିଁ, - କାରଣ ମୋ'ର ହୃଦ୍‌ଯନ୍ତ୍ର ସେପରି ଆଉ ଗୋଟିଏ ଉପଚାରକୁ ଆଦୌ ସହ୍ୟ କରି ପାରିବନାହିଁ ।

" ଏହି ଧାତୁନିର୍ମିତ ସାନ ଟୁକୁଡ଼ାମାନେ ମୋ' ଛାତିଭିତରେ ରହିଥିବା ହେତୁ ମୋ' ପାଇଁ ଯେତିକି ଦିନ ବାକୀ ରହିଛି, ସେହି ଅବଧିଟି ମଧରେ ମୁଁ ଯଥାସମ୍ଭବ ଅଧିକରୁ ଅଧିକ ହାସଲ କରି ପାରିବାର ଚିନ୍ତାରେ ଭାରି ଉଦ୍‌ଗ୍ରୀବ ହୋଇ ଯାହାକିଛି କରୁଛି । ମୋ' ଲାଗି ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଯେଉଁସବୁ କାର୍ଯ୍ୟ ରହିଛି, ସେଗୁଡ଼ିକୁ ସମ୍ପୂର୍ଣ୍ଣ କରିବାରେ ହିଁ ମୁଁ ପୂର୍ଣ୍ଣ ତାକତ ଦେଇ କାର୍ଯ୍ୟ କରିବି: ଅର୍ଥାତ୍, ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବରେ ଲେଖି ପାରିନଥିବା ବହିଗୁଡ଼ିକୁ ମୁଁ ଏହାରି ଭିତରେ ଲେଖି ଶେଷ କରିବି ।"

ତାଙ୍କ ବହିଗୁଡ଼ିକୁ ଛପାଉଥିବା କିଏଭ୍ ସହରର ଏକ ପ୍ରକାଶନସଂସ୍ଥା ପାଖକୁ ମଧ୍ୟ ଗୋଟିଏ ପତ୍ର ପଠା ଯାଇଥିଲା । ସେଇଟି ନିମ୍ନଲିଖିତ ପ୍ରକାରେ ଆରମ୍ଭ ହୋଇଥିଲା : "ମୋ'ର ଏହି ଅସୁସ୍ଥତା ଆରୋଗ୍ୟ ହେବାର ଆଉ କୌଣସି ସମ୍ଭାବନା ନାହିଁ ଏବଂ ନିକଟ ଭବିଷ୍ୟତରେ ମୋ' ଉପରେ ନ୍ୟସ୍ତ ରହି ଆସିଥିବା

ଏକାଡ଼େମିକ୍ ତଥା ଶିକ୍ଷାଦାନର କାର୍ଯ୍ୟକୁ ମଧ୍ୟ ଅଗତ୍ୟା ବହୁତ ପରିମାଣରେ କମାଇ ଦିଆଯିବ;'' - ତା'ପରେ ସମ୍ପୂର୍ଣ୍ଣ ହିସାବନିକାଶର ଢ଼ଙ୍ଗରେ କେତେଟା ମାମୁଲି କଥା ଲେଖା ହୋଇଥିଲା । ପ୍ରକାଶନ-ସଂସ୍ଥାର ନିର୍ଦ୍ଦେଶକଙ୍କ ପାଖକୁ ପ୍ରଦତ୍ତ ସେହି ପତ୍ରରେ ସୁଖୋମ୍ଲିନ୍‌ସ୍କି ଶେଷକୁ ଲେଖିଥିଲେ, "ଜଣେ ଲେଖକ ଏବଂ ଶିକ୍ଷକ ହିସାବରେ ମୋର କାର୍ଯ୍ୟଟି ହଠାତ୍ ବନ୍ଦ ହୋଇଯିବା ପର୍ଯ୍ୟନ୍ତ, ଏହି ଚିଠିରେ ଲେଖା ହୋଇଥିବା କଥାଗୁଡ଼ିକୁ ଅତ୍ୟନ୍ତ ଗୁପ୍ତ ରଖିଲେ ମୁଁ ଆପଣଙ୍କ ପାଖରେ ବହୁତ କୃତଜ୍ଞ ରହିବି, - ଏହା କେବଳ ଆପଣ ହିଁ ପଢ଼ିବେ ବୋଲି ଲେଖାଯାଇଛି । ଆମ ଦୁଇଜଣଙ୍କ ମଧ୍ୟରେ ରହିଥିବା ସହଯୋଗୀ ଉଦ୍ୟମଟିର ଏଇଟି ହେଉଛି ସର୍ବପ୍ରଧାନ ସର୍ତ୍ତ ।''

" ମୋ'ର ଏକାଡ଼େମିକ୍ ଓ ଶିକ୍ଷାଦାନଗତ କାର୍ଯ୍ୟଟିକୁ ଅଗତ୍ୟା ହ୍ରାସ କରି ଦିଆଯିବ,'' - ! କେଡ଼େ ସାହସପୂର୍ଣ୍ଣ ଓ ସଂଯତ ଭାବରେ ସୁଖୋମ୍ଲିନ୍‌ସ୍କି ନିଜର ଆସନ୍ନ ମୃତ୍ୟୁକୁ ସୂଚିତ କରି ଦେଇଥିଲେ ।

ଜଣେ କମୁନିଷ୍ଟ ହିସାବରେ ସୁଖୋମ୍ଲିନ୍‌ସ୍କି ବିଶ୍ୱାସ କରୁଥିଲେ ଯେ, ଆପଣାର କର୍ମ ହିଁ ଜଣେ ମନୁଷ୍ୟ ଅମରତ୍ୱ ହାସଲ କରିଥାଏ; ଆପଣାର ଭଲ ପାଇବାଟିକୁ ସିଏ ଯେଉଁ ମନୁଷ୍ୟସମୂହଙ୍କ ସକାଶେ ଉତ୍ସର୍ଗ କରିଥାଏ, ସେହିମାନଙ୍କର ମାଧ୍ୟମରେ, ଆପଣାର ଅଭିଜ୍ଞତାର ମାଧ୍ୟମରେ ତଥା ସବୁଠାରୁ ଯାହା ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ, ପିଲାମାନଙ୍କର ମାଧ୍ୟମରେ ହିଁ ସେ ସେହି ଅମରତ୍ୱକୁ ହାସଲ କରେ । ସିଏ କହୁଥିଲେ ଯେ, ନିକଟସମ୍ପର୍କୀୟ ଆତ୍ମୀୟସ୍ୱଜନଙ୍କର ମୃତ୍ୟୁକୁ ଆମେ କେବେହେଲେ ପିଲାମାନଙ୍କ ପାଖରୁ ଲୁଚାଇ ରଖିବା ନାହିଁ: "ଯେତେବେଳେ ଜଣେ ପିଲାର ହୃଦୟ ଜଣେ ପ୍ରିୟଜନର ମୃତ୍ୟୁ ଘଟିଛି ବୋଲି ସମ୍ବାଦଟିର ସମ୍ମୁଖୀନ ହୁଏ, - ତଦ୍ୱାରା ଏହି ଜୀବନ ବିଷୟରେ ସେ ଏକ ନୂତନ ଦୃଷ୍ଟିର ଅଧିକାରୀ ହୋଇଥାଏ । ବିସ୍ମୟନିମଜ୍ଜିତ ଭାବରେ ପିଲାଟି ଏହି ବାସ୍ତବସତ୍ୟଟିର ଯଥାର୍ଥ ମୂଲ୍ୟଟିକୁ ଆବିଷ୍କାର କରିବାରେ ସମର୍ଥ ହୁଏ ଯେ, ସିଏ ସ୍ୱୟଂ ଜୀବନଧାରଣ କରି ରହିଛି, ସିଏ ଅନୁଭବ କରି ପାରୁଛି, ଦେଖି ପାରୁଛି ଏବଂ ଜୀବନବାଟଟିକୁ ଚାଲିବା ଜନିତ ଆନନ୍ଦରେ ଅଭିଭୂତ ହୋଇ ଯାଇଥାଏ । ସେହି ଅନୁଭବଟି ତା'ଲାଗି ଅପାର ଜ୍ଞାନଲାଭର କାରଣ ମଧ୍ୟ ହୋଇଥାଏ ।''

ଶିକ୍ଷକ ସୁଖୋମ୍ଲିନ୍ସ୍କି ପ୍ରଥମତଃ ତଥା ପ୍ରଧାନତଃ ଜଣେ ଶିକ୍ଷକ ହିସାବରେ ମୃତ୍ୟୁକୁ - ଏପରିକି ତାଙ୍କ ନିଜର ମୃତ୍ୟୁକୁ ମଧ୍ୟ ବୁଝିବା ନିମିତ୍ତ ଚେଷ୍ଟା କରୁଥିଲେ ।

ସୁଖୋମ୍ଲିନ୍ସ୍କିଙ୍କର ଶେଷକୃତ୍ୟରେ ସମଗ୍ର ପାଭ୍ଲିଶ୍, ତାଙ୍କର ଛାତ୍ର ତଥା ସହକର୍ମୀମାନେ ତାଙ୍କଠାରୁ ବିଦାୟ ନେଇଥିଲେ । ସେହି ଅବସ୍ୱରରେ ସେଠାରେ ଆହୁରି ବହୁସଂଖ୍ୟକ ବ୍ୟକ୍ତି ମଧ୍ୟ ଉପସ୍ଥିତ ରହିଥିଲେ । ଖୁବ୍ ସାନ ପିଲାମାନେ ଯେପରି ସେହି ଭିଡ଼ରେ ଦଳି ମକଚି ହୋଇ ନଯିବେ, ସେଥିପାଇଁ ଦଶମ ଶ୍ରେଣୀର ଛାତ୍ରଛାତ୍ରୀମାନେ ସେମାନଙ୍କର ଚାରିପାଖରେ ବ୍ୟୁହଟିଏ ନିର୍ମାଣ କରି ରହିଥିଲେ ଏବଂ ଶୋଭାଯାତ୍ରାରେ ସମସ୍ତଙ୍କର ଆଗରେ ହିଁ ସେମାନଙ୍କୁ ପରିଚାଳିତ କରି ନେଉଥିଲେ । ଗାଆଁର କ୍ଲବ୍‌ଘର ଠାରୁ ଆରମ୍ଭ କରି ଶ୍ମଶାନ ପର୍ଯ୍ୟନ୍ତ ସମଗ୍ର ରାସ୍ତାଟି ଫୁଲ ବିଛା ହୋଇ ରହିଥିଲା । ସାନ ଝିଅ ଓ ପୁଅମାନେ ଫୁଲଗୁଡ଼ିକର ସେହି ଗାଲିଚା ଉପରେ ଅଗ୍ରସର ହେଉଥାନ୍ତି, - ସେମାନଙ୍କର ଶିକ୍ଷକ ମଧ୍ୟ ସେମାନଙ୍କ ପଛରେ ଥାଆନ୍ତି । ଏହିପରି ଭାବରେ ସେହି ମରଣର ମୁହୂର୍ତ୍ତଟିରେ ମଧ ସୁଖୋମ୍ଲିନ୍ସ୍କି ନିଜ ବିଦ୍ୟାଳୟଟିର ଅତି ନିକଟ ହୋଇ ରହିଥିଲେ ଏବଂ ବର୍ତ୍ତମାନ ତାହାରି ପାର୍ଶ୍ୱରେ ହିଁ ସର୍ବକାଳ ସକାଶେ କବର ଦିଆ ହୋଇ ରହିଛନ୍ତି । ତାଙ୍କର ବିଦ୍ୟାଳୟଟି ଅବସ୍ଥିତ ସେହି ମାର୍ଗଟିର ନାମକରଣ ତାଙ୍କରି ନାମ ଅନୁସାରେ ହୋଇଛି, - ଏବଂ ନ୍ୟାୟତଃ ବିଦ୍ୟାଳୟଟି ମଧ୍ୟ ତାଙ୍କରି ନାମକୁ ବହନ କରୁଛି ।

ତାଙ୍କର ମୃତ୍ୟୁ ପରେ ମଧ୍ୟ ପାଭ୍ଲିଶ୍‌କୁ ଆସୁଥିବା ପରିଦର୍ଶକ ମାନଙ୍କର ସଂଖ୍ୟା ସେହି ପୂର୍ବବତ୍ ରହିଥିଲା, ବସ୍ତୁତଃ ଆହୁରି ଅଧିକ ହୋଇ ଯାଇଥିଲା । ବିଦ୍ୟାଳୟରେ ଶ୍ରୀ ସୁଖୋମ୍ଲିନ୍ସ୍କିଙ୍କର ଜଣେ ବନ୍ଧୁ ଓ ସହଯୋଗୀ ନିକୋଲାଇ କୋଡ଼ାକ୍ ପରିଦର୍ଶକ ମାନଙ୍କୁ ସ୍ୱାଗତ କରି ନିଅନ୍ତି ! ନିକଟସ୍ଥ ଆଉ ଏକ ବିଦ୍ୟାଳୟରେ ଏହି ନିକୋଲାଇ ଅଠରବର୍ଷ କାଳ ନିର୍ଦ୍ଦେଶକ ରୂପେ କାର୍ଯ୍ୟ କରିଥିଲେ । ସୁଖୋମ୍ଲିନ୍ସ୍କିଙ୍କ ପରେ ପାଭ୍ଲିଶ୍ ବିଦ୍ୟାଳୟର ଶିକ୍ଷକମାନେ ନିଜର ଇଚ୍ଛା ଅନୁସାରେ ଜଣେ ନିର୍ଦ୍ଦେଶକଙ୍କୁ ବାଛିବାର ସୁଯୋଗ ପାଇଥିଲେ । ଏବଂ, ସେମାନେ ଶ୍ରୀ କୋଡ଼ାକ୍‌ଙ୍କୁ ବାଛିଲେ । ବିଦ୍ୟାଳୟଟିର ପରିବେଶ, ବସ୍ତୁତଃ ବିଦ୍ୟାଳୟଟିର ସବୁକିଛି ହିଁ ସୁଖୋମ୍ଲିନ୍ସ୍କିଙ୍କ ସମୟରେ ଯେପରି ଥିଲା, ଏବେ

ମଧ୍ୟ ସେହିପରି ରହିବ ବୋଲି ପ୍ରତ୍ୟେକ ବ୍ୟକ୍ତି ଚିନ୍ତିତ ରହିଥିଲେ । ସୁଖୋମ୍ଲିନ୍ସ୍କିଙ୍କ ପରେ ବିଦ୍ୟାଳୟ-ଜୀବନଟିର ଟିକିନିଖି ସମସ୍ତ କିଛି ଆପଣାର ଏକ ସ୍ୱତନ୍ତ୍ର ମହତ୍ତ୍ୱ ଧାରଣ କରିଛି । ଏହିଭଳି କ୍ଷେତ୍ରମାନଙ୍କରେ ସର୍ବତ୍ର ହିଁ ଏହିପରି ଘଟିଥାଏ; ଏବଂ, ସେହି ପ୍ରଖ୍ୟାତ ଶିକ୍ଷକ ଯାହାକିଛି କହିଥିଲେ ଅଥବା ଲେଖି ଯାଇଥିଲେ, ସମସ୍ତେ ଅତୀବ ଯତ୍ନ ସହିତ ସେଗୁଡ଼ିକର ଅଧ୍ୟୟନ କରୁଛନ୍ତି ।

\+ \+ \+

ଏହି ପୁସ୍ତକରେ ସୁଖୋମ୍ଲିନ୍ସ୍କିଙ୍କ ଦ୍ୱାରା ଲିଖିତ ପ୍ରଧାନ ଗ୍ରନ୍ଥ ତଥା ପ୍ରବନ୍ଧଗୁଡ଼ିକରୁ ନିର୍ବାଚିତ ହୋଇଥିବା କେତେକ ଅଂଶକୁ ପ୍ରଦାନ କରାଯାଇଛି । କହିବା ବାହୁଲ୍ୟ ଯେ, ଏପରି ଗୋଟିଏ ସଂକଳନ କେବେହେଲେ ସେହି ଖାସ୍ ଗ୍ରନ୍ଥଗୁଡ଼ିକୁ ଅଧ୍ୟୟନ କରିବାର ସମତୁଲ ହୋଇ ପାରିବନାହିଁ । ଏଭଳି ନିର୍ବାଚିତ ସାମଗ୍ରୀମାନେ ସମ୍ଭବତଃ ପାର୍ଶ୍ୱବର୍ତ୍ତୀ ଅନ୍ୟାନ୍ୟ କଥାଗୁଡ଼ିକ ସହିତ ନ୍ୟାୟୋଚିତ ଖିଅଗୁଡ଼ିକୁ ମଧ୍ୟ ହରାଇ ପକାଇଛନ୍ତି ବୋଲି ସର୍ବଥା ମନେ ହେବ । ପାଠକମାନେ ଆଗ୍ରହ କଲେ ସେଗୁଡ଼ିକୁ ସ୍ୱୟଂ ଖୋଜି ଅବଶ୍ୟ ପାଠ କରି ପାରିବେ । ତଥାପି, ଏହି ଉଦ୍ୟମଟିରେ ସୁଖୋମ୍ଲିନ୍ସ୍କିଙ୍କର ବିଚାର-ପ୍ରକ୍ରିୟାଟି ମଧ୍ୟରେ ରହିଥିବା ସମଗ୍ର ନ୍ୟାୟଗତ ଆବେଦନଟିକୁ ରକ୍ଷା କରିବାର ସକଳ ପ୍ରୟାସ କରାଯାଇଛି, ତାଙ୍କର ତତ୍ତ୍ୱଗତ ଅନୁସନ୍ଧାନଗୁଡ଼ିକୁ ମଧ୍ୟ ଆଦୌ ଖଣ୍ଡିତ କରିଦିଆ ଯାଇନାହିଁ;- ବରଂ ସେଗୁଡ଼ିକୁ ଅପେକ୍ଷାକୃତ ଅଧିକ ମହତ୍ତ୍ୱ ସହିତ ସୂଚିତ କରି ଦିଆଯାଇଛି ।

*ସିମନ୍ ସୋଲୋଭେଇଚିକ୍*

( ଓଡ଼ିଆ ଅନୁବାଦ - ଚିତ୍ତରଞ୍ଜନ ଦାସ)

# ପ୍ରଥମ ଅଧ୍ୟାୟ

# ଶିକ୍ଷା ଓ ଶିକ୍ଷକ

## ଶିକ୍ଷାର ଅଶେଷ ଶକ୍ତି ଅଛି ବୋଲି ମୋର ଦୃଢ଼ ବିଶ୍ୱାସ

ମୋର ଶିକ୍ଷକ ଜୀବନର ସର୍ବମୋଟ ତିନିହଜାରସାତ ପୃଷ୍ଠାର ଟିପାଖାତା ମୋ' ପାଖରେ ରହିଛି ଏବଂ ପ୍ରତ୍ୟେକ ପୃଷ୍ଠା କେବଳ ମୋର ଛାତ୍ରମାନଙ୍କ ପାଇଁ ଉତ୍ସର୍ଗୀକୃତ ।

ଆମ ଗାଁ'ରେ ସର୍ବମୋଟ ତିନିହଜାରସାତଶହ ଲୋକ ବାସ କରନ୍ତି । ସମସ୍ତେ ବୟସ୍କ ଶ୍ରେଣୀର । ଏବେ ସେସବୁ ପୃଷ୍ଠାକୁ ଖୋଲିଦେବା ଆବଶ୍ୟକ ବୋଲି ମନେ କରୁଛି । ପ୍ରତି ପିଲାର ବର୍ଣ୍ଣନା ସେହି ପିଲାର ଜଗତ ଏବଂ ଏହି ଜଗତ ଅନନ୍ୟ ଏବଂ ଅଦ୍ୱିତୀୟ ।

ମୋର ମସ୍ତିଷ୍କ ଓ ହୃଦୟ ବିଷୟରେ ଆଲୋଚନା ନକରି ଯଦି ଜଣେ ଯୁବକ ବା ଯୁବତୀ ମୋର ଜୀବନ ଉପରେ କୌଣସି ଟିପ୍ପଣୀ କରନ୍ତି ତାହା ମୋ ପାଇଁ ସବୁଠାରୁ ବଡ଼ ଦଣ୍ଡ ହେବ । ଜଣେ ଛାତ୍ର ଯଦି ଜଣେ ଶିକ୍ଷକଙ୍କ ବିଷୟରେ କିଛି ମନ୍ତବ୍ୟ ଦେଇ ନପାରେ, ତାହାର ଅର୍ଥ ଛାତ୍ରକୁ କିଛି ଶିକ୍ଷା ଦିଆଯାଇ ପାରିଲା ନାହିଁ । ପ୍ରକୃତରେ ଏହା ଯେକୌଣସି ଶିକ୍ଷକ ପକ୍ଷରେ ଏକ ଦୁଃଖଦ ଘଟଣା । ଶିକ୍ଷା ପାଇବା ଏକ ଚମତ୍କାରୀ ପୁନର୍ଜନ୍ମ ପାଇବା ସହ ସମାନ ବୋଲି ଧରାଯିବା ଉଚିତ । (୨୪)

ପ୍ରକୃତରେ ସାମ୍ୟବାଦୀ ଶିକ୍ଷା ପ୍ରଥମେ ମଣିଷର ଆନ୍ତରିକ ଖୁସିକୁ ସବୁଠାରୁ ଅଧିକ ଗୁରୁତ୍ୱ ଏବଂ ଧ୍ୟାନ ଦେଇଥାଏ - ଯାହା ଏକ ବିଚାର ଏବଂ ଆଦର୍ଶର ଜୀବନ ଭିତରେ ନିହିତ ଥାଏ । (୨୯)

ମୋର ଶିକ୍ଷକ ଜୀବନର ଲକ୍ଷ୍ୟ ହେଉଛି ବୌଦ୍ଧିକ ଶକ୍ତିକୁ ବହୁଗୁଣିତ କରିବା । ବଡ଼ଛାତ୍ରମାନଙ୍କ ଆଗରେ ଲେନିନ୍‌ଙ୍କୁ ଉଦାହରଣ ହିସାବରେ ଉପସ୍ଥାପନା କରିବାକୁ ନିଆଯାଇପାରେ । ଲେନିନ୍‌ଙ୍କ ପରି ଜ୍ଞାନ ଆହରଣ କରିବା ଏବଂ ଠିକ୍ ସେହି ଉତ୍ସାହରେ ଜ୍ଞାନଭଣ୍ଡାର ବୃଦ୍ଧିକରିବା ହେଉଛି ଆମ ସ୍କୁଲର ସାମାଜିକ ଏବଂ ରାଜନୈତିକ ସଚେତନତା ଶିକ୍ଷାର ମୂଳମନ୍ତ୍ର । (୧୨,୨୨୬)

ଭବିଷ୍ୟତ ପାଇଁ ଦିଗ ନିର୍ଣ୍ଣୟ ହେଉଛି ନୂତନ ମଣିଷର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏବଂ ମୂଲ୍ୟବାନ ନୈତିକଗୁଣ । ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବର ତତ୍ତ୍ୱଗୁଡ଼ିକ ଏହି ଗୁଣର ଉତ୍ସ ହୋଇପାରେ । (୭,୮୦)

ଆମେ ଶିକ୍ଷିତ କରିବାକୁ ଯାଉଥିବା ମଣିଷମାନଙ୍କ ମଧ୍ୟରେ ଉଚ୍ଚ ସାଂସ୍କୃତିକ ପୃଷ୍ଠଭୂମି ଓ ଶାରୀରିକ ପୂର୍ଣ୍ଣତା ମଧ୍ୟରେ ସମନ୍ୱୟ ରହିବା ଆବଶ୍ୟକ । ଏହି ସମନ୍ୱୟ ଉପରେ ଶିକ୍ଷାଦାନର କୌଶଳ ନିର୍ଭର କରେ । ସାମ୍ୟବାଦୀ ମଣିଷ ସବୁ ଭଲ ପରିଭାଷା ଓ ଗୁଣଗୁଡ଼ିକର ଏକ ଯାନ୍ତ୍ରିକ ସମାହାର ନୁହେଁ, ବରଂ ଉଭୟର ମିଶ୍ରଣ ।

ଜୀବନ ଯେତିକି ସରଳ ହେବ ; ସେତେ ଅଧିକ ପ୍ରାଚୁର୍ଯ୍ୟ ଏବଂ ସାଂସ୍କୃତିକ ଲାଭ ଆମ ଯୁବଗୋଷ୍ଠୀକୁ ମିଳିବ । ଯେଉଁମାନେ ଶିକ୍ଷାସହିତ ସମ୍ପୃକ୍ତ ଅଛନ୍ତି ସେମାନଙ୍କ ଦାୟିତ୍ୱ ବଢ଼ିଯିବ ଏବଂ ଏହା ଶିକ୍ଷାର ସବୁଠାରୁ କଠିନ କାମ ହେବ । (୨,୧୪୩)

ବାଲ୍ୟାବସ୍ଥା ଦିନକୁ ଦିନ ପୃଥିବୀକୁ ନୂଆ ରୂପରେ ଆବିଷ୍କାର କରେ । ପିଲାଟି ତା'ର ଚାରିପାଖର ମଣିଷମାନଙ୍କୁ ଏବଂ ମାତୃଭୂମିକୁ କିପରି ଭାବରେ ଦେଖୁଛି, ଜଣେ ପ୍ରକୃତ ମଣିଷର ଅନ୍ତରର ସୌନ୍ଦର୍ଯ୍ୟକୁ କିପରି ଉପଲବ୍ଧି କରୁଛି, ଏବଂ ମାତୃଭୂମିର ମହାନତା ଓ ଅତୁଳନୀୟ ସୌନ୍ଦର୍ଯ୍ୟ ତା'ର ମନ ଓ ମସ୍ତିଷ୍କ ଉପରେ କିପରି ପ୍ରଭାବ ପକାଉଛି, - ପିଲାଟି ଜୀବନରେ ଏହି ସବୁ ଦିଗ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । (୨୯)

ମଣିଷ ହିଁ ସବୁଠାରୁ ଉନ୍ନତ ଓ ଜଟିଳପ୍ରାଣୀ । ବ୍ୟକ୍ତିର ସର୍ବାଙ୍ଗୀନ ଉନ୍ନତି ଓ ନୈତିକ ମୂଲ୍ୟବୋଧ ହିଁ ସାମ୍ୟବାଦୀ ଶିକ୍ଷାର ଲକ୍ଷ୍ୟ । ଏହି ଲକ୍ଷ୍ୟ ହାସଲ କରିବାର ବାଟ ଯେତିକି ଜଟିଳ,ମଣିଷ ନିଜେ ମଧ୍ୟ ସେତିକି ଜଟିଳ । (୨୪)

ଯଦି ମତବାଦଗୁଡ଼ିକୁ ଆଦୌ ବିଚାର ନକରି କେବଳ ଯାନ୍ତ୍ରିକ ଭାବରେ ପରୀକ୍ଷା କରାଯାଏ, ତେବେ ତାହା ଶିକ୍ଷାର ମୂଳଉଦ୍ଦେଶ୍ୟକୁ ଧ୍ୱଂସ କରିଦିଏ । ଘଟଣାଗୁଡ଼ିକୁ ନୂଆ କରି ଦେଖିବା ଓ ସେଥିରୁ ଆନନ୍ଦ ପାଇବାର ଗୁଣଟି ପିଲାମାନେ ହିଁ ଶିକ୍ଷକଙ୍କୁ ଯୋଗାଇ ଦେଇଥାଆନ୍ତି । ସେହିମାନେ ହିଁ କିଛି ନୂଆ ଗଢ଼ି ତୋଳିବାର ଉତ୍ସାହ ଦେଇଥାଆନ୍ତି, - ଏହି ସବୁଗୁଣ ଯାହାକି ଶିକ୍ଷାର ମୂଳକଥା, ତା'ର ଆତ୍ମା - ବିଚାରନକରି ଯାନ୍ତ୍ରିକ ଭାବରେ ପରୀକ୍ଷା କରିବାର ପ୍ରକ୍ରିୟାରେ ଧ୍ୱଂସ ପାଇଯାଏ ।

ନିଜ ଜୀବନର ଅନୁଭୂତିରୁ ଗ୍ରହଣ କରିବା ପର୍ଯ୍ୟନ୍ତ ତତ୍ତ୍ୱଗୁଡ଼ିକ ଶିକ୍ଷକଙ୍କୁ ତାଙ୍କରା ନିଜସ୍ୱ କାର୍ଯ୍ୟଦକ୍ଷତାକୁ ଉନ୍ନତ କରିବାରେ ଓ ବୃଦ୍ଧି କରାଇବାରେ ପ୍ରେରଣାର ଉତ୍ସ ହୋଇ ରହିଥାଏ । ଥରେ ଯେତେବେଳେ ଏହି ତତ୍ତ୍ୱଗୁଡ଼ିକ ପ୍ରକୃତରେ ପରିକ୍ଷିତ ହୋଇ ସତ୍ୟ ରୂପେ ବିବେଚିତ ହୁଅନ୍ତି, ଏହାର ଆବଶ୍ୟକତା ଅତ୍ୟଧିକ ବଢ଼ିଯାଏ ଏବଂ ଏହା ଆପେ ଆପେ ଆହୁରି ସୁଦୃଢ଼ ହୋଇଯାଏ । ଏହା ଜରିଆରେ ଜୀବନକୁ ଦେଖିହୁଏ ଓ ବଞ୍ଚି ହୁଏ । ଯେଉଁ ସବୁ ତତ୍ତ୍ୱଗୁଡ଼ିକ ପୁରୁଣା ବା ପରିହାର୍ଯ୍ୟ ମନେହୁଏ, ସେସବୁକୁ ପ୍ରତ୍ୟାଖ୍ୟାନ କରାଯାଇପାରେ ।(୨୮)

ବାସ୍ତବରେ ଶିକ୍ଷା ଏବଂ ଶିକ୍ଷଣ ପ୍ରକ୍ରିୟା କ'ଣ ହୋଇପାରେ ? ଏହାର ତିନୋଟି ଉପାଦାନ ଅଛି - ବୈଜ୍ଞାନିକ ଚିନ୍ତାଧାରା, ଦକ୍ଷତା ଓ କଳା, ଶିକ୍ଷାର ବ୍ୟାପକ ଅର୍ଥ ଏକ ବହୁମୁଖୀ ପ୍ରକ୍ରିୟା ଯାହା ଅନବରତ ଭାବରେ ଶିକ୍ଷାର୍ଥୀ ଓ ଶିକ୍ଷକଙ୍କ ଆଧ୍ୟାତ୍ମିକ ଅଭିବୃଦ୍ଧି କରାଇବାରେ ସାହାଯ୍ୟ କରେ । ଏଭଳି ପ୍ରକ୍ରିୟାରେ ଘଟଣାଗୁଡ଼ିକ ପ୍ରତ୍ୟେକ ବ୍ୟକ୍ତି ପାଇଁ ଅଲଗା ଅଲଗା ଭାବେ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥାଏ । କୌଣସି ଶିକ୍ଷାଗତ ଚିନ୍ତାଧାରା ଜଣକ ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥିବାବେଳେ, ଦ୍ୱିତୀୟ ଜଣକ କ୍ଷେତ୍ରରେ କିଛି ପ୍ରଭାବ ନଥାଏ ଏବଂ ତୃତୀୟ ଜଣକ କ୍ଷେତ୍ରରେ ଅବାସ୍ତବ ମଧ୍ୟ ମନେହୁଏ । ଏହା ହେଉଛି ଆମ ଶିକ୍ଷାଗତ କାର୍ଯ୍ୟର ଧାରା । (୧୩,୯)

ଯଦି ବୈଜ୍ଞାନିକ ଉପାୟରେ ପୂର୍ବ ସୂଚନା ନିମିଳିଥାଆନ୍ତା, ଅଥବା କେହି ମଣିଷ ମନରେ ଯୁଗ ଯୁଗପରେ ମିଳୁଥିବା ସୁଫଳର ବୀଜ ରୋପି ନଥାଆନ୍ତା, ତାହାହେଲେ ଶିକ୍ଷା କେବଳ ପୁରୁଣାକାଳିଆ ପରିଦର୍ଶନର ବିଷୟ ହୋଇ ଆମକୁ ଦେଖା ଯାଇଥାଆନ୍ତା । ଶିକ୍ଷକ କେବଳ ଜଣେ ଶିଶୁ ସୁଲଭ ବ୍ୟକ୍ତି ହୋଇଥାନ୍ତେ ଏବଂ ବିଜ୍ଞାନ ଶିକ୍ଷା, ବିଦ୍ରୂପରେ ପରିଣତ ହୋଇଥାନ୍ତା । ବିଜ୍ଞାନ ସମ୍ମତ ପୂର୍ବ ସୂଚନାର ଆବଶ୍ୟକତା ବହୁତ ଏବଂ ନିଶ୍ଚିତ ଭାବରେ ଏହା ଶିକ୍ଷାର ପ୍ରକ୍ରିୟାରେ ଜରୁରୀ ଅଟେ । ପୂର୍ବ ସୂଚନାଗୁଡ଼ିକ ଯେତିକି ସୂକ୍ଷ୍ମ ଏବଂ ଚିନ୍ତା ଉଦ୍ରେକକାରୀ ହେବ, ସେତିକି କମ୍ ଦୁର୍ଗତି ଆମକୁ ଭୋଗିବାକୁ ପଡ଼ିବ । (୧୨,୫୦)

ବ୍ୟକ୍ତି ତାର ଜୀବନର ପ୍ରଥମ ସୋପାନରେ ଅନେକ ବ୍ୟକ୍ତି ସଂସ୍ପର୍ଶରେ ଆସିଥାଏ । ଏପରିକି ଦୈବାତ୍ ଭେଟ ହୋଇଥିବା କିମ୍ବା ସ୍ୱଭାବିକ ଭାବରେ ଜୀବନ ବିତାଉଥିବା ସମୟରେ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତିମାନେ ତା'ପାଇଁ ଗୁରୁତ୍ୱପୂର୍ଣ୍ଣ

ହୋଇଥାଆନ୍ତି । ଜୀବନର ପ୍ରତିଟି ମୁହୂର୍ତ୍ତ ଏବଂ ପୃଥିବୀର ପ୍ରତିଟି ମାଟିଖଣ୍ଡ ଶିକ୍ଷାପାଇଁ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । (୧୪,୨)

ପିଲାମାନଙ୍କର ମାନସିକ ଓ ବୌଦ୍ଧିକ ଜଗତର ବିକାଶ କରାଇବା ପାଇଁ ଶ୍ରେଣୀଗୃହରେ କୌଣସି କାର୍ଯ୍ୟକ୍ରମ ଚିନ୍ତାକରିବା ଉଚିତ ନୁହେଁ । ଆମେ ଯଦି ଆମ ତରଫରୁ ପିଲାମାନଙ୍କର ମାନସିକ ଓ ବୌଦ୍ଧିକ ବିକାଶ ପାଇଁ କୌଣସି ସୂଚନା ପିଲାଙ୍କୁ ଦେଉ; ତାହାହେଲେ ପିଲାମାନଙ୍କର ଜୀବନ ଅସହ୍ୟ ହୋଇପଡ଼ିବ । ପିଲାଟି କେବଳ ବିଦ୍ୟାଳୟର ଜଣେ ଶିଶୁ ନୁହେଁ, ସେ ପ୍ରଥମେ ହେଉଛି ଜଣେ ବ୍ୟକ୍ତି ଯାହାର ସୁଦୂର ପ୍ରସାରୀ ଆଗ୍ରହ, ସମ୍ଭାବନା ଓ ଇଚ୍ଛା ରହିଛି । (୩୪)

ଶିକ୍ଷାର ପ୍ରକୃତ ସଂଜ୍ଞା ନିମ୍ନ ପ୍ରକାରେ ହେବ ବୋଲି ମୋର ଦୃଢ଼ ବିଶ୍ୱାସ : ଶିକ୍ଷକ ଓ ଛାତ୍ର ଯେତେବେଳେ ତାଙ୍କର ଆଧାତ୍ମିକ ଜୀବନରେ, ଆଦର୍ଶରେ, ଆକାଂକ୍ଷାରେ, ଆଗ୍ରହ ଓ ଅନୁଭୂତିକୁ ନେଇ ଏକାଠି ହୋଇଥାନ୍ତି ସେତେବେଳେ ଶିକ୍ଷାଗତ ପ୍ରକ୍ରିୟାର ପରିପ୍ରକାଶ ହୋଇଥାଏ । (୧୩,୧୧)

ଶିକ୍ଷକ ଓ ପିଲାଙ୍କର ମସ୍ତିଷ୍କ ଓ ଆବେଗ ମଝିରେ ଶହ ଶହ ଖୋପ ରହିଛି । ସେହି ଖୋପଗୁଡ଼ିକର ସଂଯୋଗହେଲେ ହୃଦୟର ବିକାଶ ହେବ ଏବଂ ସେହି ସଂଯୋଗର କୁନିକୁନି ମାଧ୍ୟମ ହେଉଛନ୍ତି ପିଲାମାନେ । ଖୋପଗୁଡ଼ିକ ଶିକ୍ଷକ ଓ ପିଲାମାନଙ୍କ ଭିତରେ ଡୋରି ବାନ୍ଧିବାର ପୂର୍ବାବସ୍ଥା ।

ଶିକ୍ଷକ ଓ ଛାତ୍ରମାନଙ୍କ ଭିତରେ ସେମାନଙ୍କର ଇଚ୍ଛା ଏବଂ ଅଭିଳାଷର ଆଦାନ ପ୍ରଦାନ କରାଇବା ପାଇଁ ମୁଁ ଏବଂ ମୋ'ର ସହକର୍ମୀମାନେ କାର୍ଯ୍ୟ ପରିଷର ବାହାରକୁ ଚାଲିଯାଇ ସାହାଯ୍ୟ କରୁ । ସେଥିପାଇଁ ସେମାନଙ୍କର ସାମୂହିକ ଇଚ୍ଛା ରହିବା ଦରକାର । ଭାବ ଆଦାନପ୍ରଦାନ ସମୟରେ ପିଲାମାନେ ଶିକ୍ଷକଙ୍କୁ ସେମାନଙ୍କର ଜଣେ ଉପଦେଷ୍ଟା ବୋଲି ଭୁଲିଯାଇଥାନ୍ତି । ଜଣେ ଶିକ୍ଷକ ଯେତେବେଳେ ଥରେ ଶିଶୁର ବନ୍ଧୁ ହୋଇଯାଏ ଏବଂ ଯଦି ସେହି ବନ୍ଧୁତ୍ୱ ମନ ଆକର୍ଷକ ମହତ୍ ଉଦ୍ଦେଶ୍ୟ, ସକାରାତ୍ମକ ଓ ସମ୍ବେଦନଶୀଳ ଆକାଂକ୍ଷା ନେଇ ହୋଇଥାଏ ତାହାହେଲା ଶିଶୁର ହୃଦୟ ମହତ୍ ହେବ । ଯଦି କୌଣସି ସ୍ତରରେ କେତେକ ପିଲା ଅଛନ୍ତି, ଯେଉଁମାନେ ସମାଲୋଚନା ପ୍ରତି ଅତ୍ୟଧିକ ସମ୍ବେଦନଶୀଳ ହୋଇଥାନ୍ତି, ଅବିଶ୍ୱାସୀ ଓ ଈର୍ଷାପରାୟଣ ହୋଇଥାଆନ୍ତି । ତା'ର କାରଣ ଶିକ୍ଷକ ସେମାନଙ୍କୁ ଭଲ ଭାବରେ ଜାଣିପାରିନଥାନ୍ତି । ପିଲାମାନଙ୍କୁ ଶୃଙ୍ଖଳିତ କରିବା ପାଇଁ ଉପଯୁକ୍ତ ପନ୍ଥା ପାଇନଥାଆନ୍ତି, ତେଣୁ ସେମାନଙ୍କର

ଆପଣାର ହୋଇ ପାରି ନ ଥାଆନ୍ତି । ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ବନ୍ଧୁତ୍ୱ ଏବଂ ଖୁସିର ଭାବ ବିନିମୟ ବିନା ଶିକ୍ଷାର ଅର୍ଥ ମୂଲ୍ୟହୀନ । (୯,୭୮)

ନିର୍ଦ୍ଦିଷ୍ଟ ଢାଞ୍ଚାରେ ଗଢ଼ିବା ପାଇଁ ଉଦ୍ଦିଷ୍ଟ ଚିରାଚରିତ ଶିକ୍ଷା ବ୍ୟବସ୍ଥାରେ ମୁଁ ଜଣେ ପରିଦର୍ଶକ ହେବାପାଇଁ ରାଜି ହେବି ନାହିଁ - ବରଂ ପିଲାଟିଏ ଏବଂ ସବୁ ପିଲାଭଳି ଜଣେ ଶ୍ରମଜୀବୀ, ପିଲାମାନଙ୍କର ବନ୍ଧୁ ହେବା, ସାଥୀ ହେବା, ସେମାନଙ୍କର ସଫଳତାରେ ଖୁସିହେବା, ଏବଂ କୌଣସି କାର୍ଯ୍ୟରେ ଅସଫଳ ହେଲେ ପ୍ରକୃତ କାରିଗରମାନଙ୍କର ଠିକ୍ ମତାମତ ଶୁଣିବା କେତେ ଖୁସୀର କଥା । ଯେତେବେଳେ ପିଲାମାନେ ତାଙ୍କ ଭିତରେ ତୁମକୁ ଜଣେ ଭାବନ୍ତି ଏବଂ ସେମାନେ ତାଙ୍କର ସବୁ କଥାକୁ ଖୋଲିକରି କହି ଦିଅନ୍ତି, ସେତେବେଳେ ଚିରାଚରିତ ଶିକ୍ଷକଙ୍କ କ୍ଷେତ୍ରରେ କେବେ ଏହା ହୋଇନଥାଏ । ( ୯,୭୭)

ପିଲାମାନଙ୍କୁ ଭଲପାଇ ଶିଖିବା କୌଣସି ଶିକ୍ଷା ଅନୁଷ୍ଠାନ କିମ୍ବା ପାଠ୍ୟପୁସ୍ତକରୁ ହୋଇନଥାଏ । ଭଲ ପାଇବାର ଦକ୍ଷତା, ସମାଜଜୀବନ ସହିତ ପ୍ରତ୍ୟେକ ବ୍ୟକ୍ତିର ଅଂଶଗ୍ରହଣ ଏବଂ ବ୍ୟକ୍ତିର ବ୍ୟକ୍ତିସହିତ ସମ୍ପର୍କରୁ ଆସିଥାଏ । ବାସ୍ତବରେ ଶିକ୍ଷକମାନଙ୍କ ଶିକ୍ଷାଦାନ ପ୍ରକ୍ରିୟାରେ ପ୍ରତ୍ୟେକ ଦିନ ପିଲା ସହିତ ସମ୍ପର୍କରୁ ଆମର ମଣିଷ ପ୍ରତି ଭଲ ପାଇବା ଗଭୀର ହୋଇଥାଏ ଏବଂ ମଣିଷ ପ୍ରତି ବିଶ୍ୱାସ ବଢ଼ିଥାଏ । ପାଠ ପଢ଼େଇବାର ଦକ୍ଷତା ପାଠ ପଢ଼େଇବାର ପ୍ରକ୍ରିୟାରେ ବିକଶିତ ହୋଇଥାଏ । (୧୧,୨୫)

ଅନ୍ୟମାନଙ୍କଠାରୁ ଶିଖିବାକୁ ଇଚ୍ଛାକରୁଥିବା ବ୍ୟକ୍ତି ହିଁ ଜଣେ ଭଲ ଶିକ୍ଷକ ହୋଇ ପାରିବ । ଯଦି ବ୍ୟକ୍ତିର ବିସ୍ତୃତ ଶିକ୍ଷା ସହିତ ଶିକ୍ଷାର କୌଣସି ସମ୍ପର୍କ ନଥିବ, ତାହାହେଲେ ଶିକ୍ଷାର ସମସ୍ତ ପଦ୍ଧତି ଏବଂ ଜ୍ଞାନର ସିଦ୍ଧାନ୍ତ କେବଳ ଉପରଠାଉରିଆ ବୋଲି ଗଣା ହେବ ।

ମୁଁ ସବୁବେଳେ ନିଜେ ଆଗ୍ରହ ପ୍ରକାଶ କରି ଶିକ୍ଷକମାନଙ୍କୁ ବୁଝେଇବା ପାଇଁ ଚେଷ୍ଟା କରୁଥିଲି । ଯଦି ଶିକ୍ଷକମାନେ କେବଳ ଶିକ୍ଷକଙ୍କ ଆସନରେ ବସିଥିବା ବେଳେ ପିଲାମାନଙ୍କ ସହିତ କଥାବର୍ତ୍ତା କରନ୍ତି ଏବଂ ପିଲାମାନେ ଶିକ୍ଷକମାନଙ୍କ ପାଖକୁ ଆସିଥିବା ବେଳେ ସେମାନଙ୍କୁ ଶିକ୍ଷକଙ୍କ ପ୍ରଶ୍ନର ଉତ୍ତର ଦେବାକୁ ପଡ଼େ । ଏହାର ଅର୍ଥ ପିଲାମାନଙ୍କର କଥାବାର୍ତ୍ତା କେବଳ ଶିକ୍ଷକଙ୍କ ଉତ୍ତର ହିସାବରେ ହୋଇଥାଏ । ଏପରି ହେଲେ ମନୋବିଜ୍ଞାନର ଜ୍ଞାନ ପାଠପଢ଼ାରେ କୌଣସି ସାହାଯ୍ୟ କରିବ ନାହିଁ । ପିଲାମାନଙ୍କୁ ସବୁବେଳେ ଜଣେ ବନ୍ଧୁ, ଜଣେ ସତିର୍ଥ

ହିସାବରେ ଗ୍ରହଣ କରିବାକୁ ପଡ଼ିବ, - ଯାହା ସହିତ ନିଜର ଖୁସି ଏବଂ ଦୁଃଖରେ ଭାଗୀ କରିହେବ । (୧୧,୩୩)

ଆମେମାନେ ସମସ୍ତେ ଶିକ୍ଷାଗତ ଜ୍ଞାନର କାଳ୍ପନିକ ନିଦର୍ଶନ ହେବା ଉଚିତ ନୁହେଁ । ଜଣେ ଜୀବନ୍ତବ୍ୟକ୍ତି ହିସାବରେ ଯୁବକମାନଙ୍କୁ କେବଳ ପୃଥିବୀ ବିଷୟରେ ନୁହେଁ, ନିଜ ବିଷୟରେ ମଧ୍ୟ ଜ୍ଞାନ ଆହରଣ କରିବା ପାଇଁ ସାହାଯ୍ୟ କରିବା ଉଚିତ । ବାଳକ ବାଳିକାମାନେ ଆମକୁ ଜଣେ ଆଦର୍ଶ ମଣିଷ ହିସାବରେ ଗ୍ରହଣ କରିଥାଆନ୍ତି । ଆମେମାନେ ସେମାନଙ୍କ ପାଇଁ ଉନ୍ନତ ଅର୍ନ୍ତଦୃଷ୍ଟି ସମ୍ପନ୍ନ ମଣିଷର ଉଦାହରଣ ହେବାକୁ ପଡ଼ିବ । ତା'ପରେ ଯାଇ ଆମେ ନୈତିକତା ଦୃଷ୍ଟିରୁ ଶିକ୍ଷାଦାନ ପାଇଁ ଯୋଗ୍ୟ ହୋଇପାରିବା । ଜଣେ ଚତୁର, ବୁଦ୍ଧିମାନ୍ ଏବଂ ଉଦାର ବ୍ୟକ୍ତି ହିସାବରେ ଶିଖିବା ଇଚ୍ଛାକୁ ଯୁବକମାନଙ୍କ ମଧ୍ୟରେ ବଳପୂର୍ବକ ଜାଗ୍ରତ କରାଯାଇ ପାରେନା । ଆମ ପିଲାମାନଙ୍କ ମଧ୍ୟରୁ ସୁପ୍ତ ପ୍ରତିଭାବାନ ଗଣିତଜ୍ଞ, ପଦାର୍ଥବିଜ୍ଞାନୀ, ଜୀବ ବିଜ୍ଞାନୀ, ଇତିହାସବିତ୍, ଯନ୍ତ୍ରୀ ଏବଂ କୌଶଳୀ-କାରିଗର କୃଷକ ଏହିପରି ବିଭିନ୍ନ କାର୍ଯ୍ୟକ୍ଷେତ୍ରରେ ଅଛନ୍ତି । ଏହି ପ୍ରତିଭାମାନେ ବିକଶିତ ହୋଇପାରିବେ, ଯଦି ଜଳ ପ୍ରତିଭାମାନଙ୍କୁ ବିକଶିତ କରିବାରେ ଶିକ୍ଷକଙ୍କ ଭୂମିକା ଜଳ ( ଜଳଜୀବଜଗତକୁ ବଞ୍ଚେଇ ରଖିଛି) ପରି ହେବ । ଏଭଳି ବ୍ୟକ୍ତିତ୍ୱର ଶିକ୍ଷକଙ୍କ ବିନା ପ୍ରତିଭାମାନେ ଶକ୍ତିହୀନ ଓ ଫିକା ପଡ଼ିଯିବେ । ମନ ମନ ଦ୍ୱାରା ହିଁ ପରିପୁଷ୍ଟ ହୁଏ ଏବଂ ବିବେକ ବିବେକ ଦ୍ୱାରା ଅତଏବ ଗୋଟିଏ ଦେଶ ପ୍ରତି ଅନୁରାଗ ସେହି ଦେଶ ଫଳପ୍ରଦ ସେବା ଦ୍ୱାରା ସମୃଦ୍ଧ ହୋଇ ପାରିବ । (୧୨,୧୧୪)

ଯଦି ଶିକ୍ଷକ ପିଲାମାନଙ୍କର ଆଗ୍ରହ ଜନ୍ମାଇଲା ଭଳି ବିଷୟବସ୍ତୁ ଏବଂ ମାଧ୍ୟମରେ ଶିକ୍ଷାଦାନ କରେ, ବିଦ୍ୟାଳୟ ପିଲାମାନଙ୍କର ବୌଦ୍ଧିକ ଏବଂ ମାନସିକ ବିକାଶର ଏକ କେନ୍ଦ୍ର ହୋଇଯାଏ । ବିଦ୍ୟାଳୟରେ ଉତ୍କୃଷ୍ଟ ଧରଣର ପାଠପଢ଼ା ହୁଏ । କିନ୍ତୁ ବିଦ୍ୟାଳୟର ନିର୍ଦ୍ଧାରିତ ବିଷୟବସ୍ତୁ ବ୍ୟତୀତ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ଜାଣିବାର ଥାଏ । ତାହା ପିଲାମାନଙ୍କର ବିଭିନ୍ନ ଦକ୍ଷତା ବୃଦ୍ଧି କରିବା ପାଇଁ ସମ୍ପୂର୍ଣ୍ଣ ଭାବରେ ସାହାଯ୍ୟ କରିଥାଏ ଏବଂ ପିଲାମାନେ ମଧ୍ୟ ଏହାକୁ ଭଲ ଭାବରେ ଗ୍ରହଣ କରିଥାନ୍ତି । (୧୪,୪)

'ଶିକ୍ଷା' ଶବ୍ଦଟି ପ୍ରତ୍ୟେକ ବିଦ୍ୟାଳୟରେ ବାରମ୍ବାର ଉଚ୍ଚାରିତ ହୋଇଥାଏ । ଶିକ୍ଷାର ବିଷୟବସ୍ତୁଗୁଡ଼ିକ ଗଭୀର ଭାବରେ ଘରେ ଏବଂ ସର୍ବସାଧାରଣରେ ଅଧିକରୁ ଅଧିକ ଆଲୋଚନା ହେଉଛି । ସମସ୍ତ ଶିକ୍ଷକ ଏବଂ ସମସ୍ତ ଅଭିଭାବକମାନଙ୍କର

ଶିକ୍ଷା ସମ୍ପର୍କରେ ଏକ ବାସ୍ତବଧାରଣା ରହିବା ଦରକାର । ଫଳସ୍ୱରୂପ ସେମାନେ ଜାଣିପାରିବେ ଶିକ୍ଷା କିପରି ହାସଲ ହୋଇପାରିବ । (୧୪,୨) ।

ମୁଁ ଥରେ ଶିକ୍ଷା ବିଭାଗ ତରଫରୁ ଶିକ୍ଷା ପରିଦର୍ଶକଙ୍କ ଦ୍ୱାରା କରାଯାଉଥିବା ଏକ ଶିକ୍ଷା ସର୍ଭେକ୍ଷଣ ବିଷୟରେ ଜାଣିବାକୁ ପାଇଲି । ଏଥିରୁ ଜଣାପଡୁଥିଲା ଯେ, ସେ ବିଦ୍ୟାଳୟରେ ବିଷୟଗୁଡ଼ିକ ଠିକ୍ ଭାବରେ ପଢ଼ାଯାଉଛି ଏବଂ ପିଲାମାନେ ସନ୍ତୋଷଜନକ ଭାବରେ ଜ୍ଞାନ ଆହରଣ କରିଛନ୍ତି । କିନ୍ତୁ ପିଲାମାନଙ୍କର ସାଧାରଣ ବ୍ୟବହାରରେ ଯେତିକି ପରିବର୍ତ୍ତନ ହେବା କଥା ହୋଇ ପାରିନି । ମା ଓ ବାପାମାନଙ୍କର ସବୁବେଳେ ଅଭିଯୋଗ ଥିଲା ପିଲାମାନଙ୍କୁ ପାଠପଢ଼ା ଠିକ୍ ଭାବରେ ହୋଇଛି କିନ୍ତୁ ସେମାନେ ବଢ଼ିଛନ୍ତି ଖରାପ ଭାବରେ । (୧୪,୨)

ଉଭୟ କ୍ଷେତ୍ରରେ ଆମେ ଶିକ୍ଷା ସମ୍ପର୍କରେ ଏଭଳି ଏକତରଫା ମତାମତକୁ ବିରୋଧ କରୁ । ବୃହତ୍ତର ଦୃଷ୍ଟିରୁ ଶ୍ରେଣୀଗୃହର ଶିକ୍ଷାଦାନ ଏବଂ ଶିକ୍ଷା ଭିତରେ ତଫାତ୍ ରହିଛି । ସଙ୍କୁଚିତ ଭାବରେ ଶ୍ରେଣୀଗୃହର ଶିକ୍ଷାଦାନ ସହିତ ଶିକ୍ଷାର କୌଣସି ସମ୍ପର୍କ ନାହିଁ । ଶିକ୍ଷା ବିଶ୍ୱ ଦୃଷ୍ଟିକୋଣ ଏବଂ ନୈତିକ ମନୋଭାବ ପରିପ୍ରକାଶ, ସୌନ୍ଦର୍ଯ୍ୟଜ୍ଞାନ ଓ ଶାରୀରିକ ବିକାଶରେ ସାହାଯ୍ୟ କରେ । (୧୪,୨)

ସଙ୍କୁଚିତ ଅର୍ଥରେ ଶିକ୍ଷାଦାନର ଅର୍ଥ କ'ଣ ହୋଇପାରେ । ପାଠପଢ଼ାକୁ ବାଦ ଦେଇ ବିଶ୍ୱ ଦୃଷ୍ଟିକୋଣ ଅଣାଯାଇ ପାରିବ କି ? ଜଣେ ବ୍ୟକ୍ତି ତା' ଚାରିପାଖରେ ଯାହା ଦେଖେ, ଶିଖେ, ଆବିଷ୍କାର କରେ, ଗ୍ରହଣ କରେ ତା ସହିତ କୌଣସି ସମ୍ପର୍କ ନରଖି ମଣିଷର ଆବେଗ ଓ ମନ ଶିକ୍ଷାଦାନ ପ୍ରକ୍ରିୟା ପ୍ରତି ପ୍ରଭାବିତ ହୋଇପାରିବ କି ? ଅପର ପକ୍ଷରେ ବ୍ୟକ୍ତିଠାରୁ ବିଶ୍ୱଦୃଷ୍ଟିକୋଣ ଯେତେବେଳେ ପୃଥକ୍ ହୋଇପଡ଼େ, ସେତେବେଳେ ଏଭଳି ଶିକ୍ଷା ପ୍ରକ୍ରିୟାକୁ ଚିନ୍ତା କରାଯାଇପାରିବ କି ? (୧୪,୨)

ବିଦ୍ୟାଳୟ ଶିକ୍ଷା ଆଗ୍ରହ ଉଦ୍ଦୀପକ, ଏବଂ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦ୍ୱାରା ପ୍ରେରିତ ହୋଇପାରେ । ଏହା ବିଦ୍ୟାଳୟର ଶ୍ରେଣୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇଁ ଉଦ୍ଦିଷ୍ଟ ହେବା ଉଚିତ ନୁହେଁ । ଯୁବାବସ୍ଥାର ପ୍ରାରମ୍ଭରେ ବାଳକ ଓ ବାଳିକାମାନଙ୍କୁ ପାଠପଢ଼ିବା ପରିବେଶରୁ କାମ କରିବା ପରିବେଶକୁ ପରିବର୍ତ୍ତନ ହେବା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା । ସେମାନଙ୍କର କର୍ମମୟ ଜୀବନର ଆରମ୍ଭରେ ସକାରାତ୍ମକ ମନୋଭାବ ବଢ଼ାଇବା ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହିସାବରେ ଧରିନେବା ଉଚିତ । (୫,୧୦୫)

## ପିଲାଙ୍କର ହୃଦୟକ୍ରିୟାକୁ ବୁଝିବାର ଆବଶ୍ୟକତା

ଡାକ୍ତର ଏବଂ ଶିକ୍ଷକ ପେଷାକୁ ଛାଡ଼ି ଆଉ କିଛି ମାନବିକ ପେଷା ନାହିଁ, ଜଣେ ଡାକ୍ତର ରୋଗୀର ଶେଷ ଅବସ୍ଥା ପର୍ଯ୍ୟନ୍ତ ତା'ର ଜୀବନ ବଞ୍ଚେଇବା ପାଇଁ ଚେଷ୍ଟା କରେ । ରୋଗୀର ଜଟିଳ ଅବସ୍ଥାରେ ରୋଗୀର ଅବସ୍ଥା ସଙ୍କଟ ହୋଇଥିଲେ ବି ତା'ର ଜୀବନରକ୍ଷା ପାଇଁ ତା'ର ଶେଷନିଃଶ୍ୱାସ ଥିବା ପର୍ଯ୍ୟନ୍ତ ଡାକ୍ତର ନିଜର ପ୍ରଚେଷ୍ଟା ଜାରି ରଖିଥାନ୍ତି, ଏହା ଚିକିତ୍ସା-ବିଜ୍ଞାନର ଏକ ମୌଳିକ ନିୟମ । ଆମେ ଶିକ୍ଷକମାନେ ମିଳିତ ହୋଇ ଏକ ଶିକ୍ଷାଗତ ନିୟମ ବାହାର କରିବା ଏବଂ ତାକୁ ପରିପୁଷ୍ଟ କରାଇବା । ପ୍ରତ୍ୟେକ ଶିକ୍ଷକଙ୍କ ତାଲିମ ଓ ଦକ୍ଷତା ହିସାବରେ ଆମେ ନିଶ୍ଚିତ ଭାବରେ ଶିକ୍ଷାରେ ମାନବୀୟ ନୀତିକୁ ବଜାୟ ରଖିବା । ଅନେକ ଶିକ୍ଷକଙ୍କ ପାଇଁ ଭଲ ପାଠପଢୁନଥିବା ପିଲାଟି ଗୋଟିଏ ବନ୍ଧାବହି ହୋଇ ରହିଥିବା ବହି ସହିତ ସମାନ । ଯଦି ଜଣେ ଶିକ୍ଷକ ପିଲାର ହୃଦୟ ଏବଂ ତା'ର ନିର୍ଦ୍ଦିଷ୍ଟ ଚିନ୍ତାଧାରା ଏବଂ ତା' ଚାରିପାଖରେ ପୃଥିବୀକୁ ଦେଖିବାର ଶୈଳୀକୁ ବୁଝିନାହିଁ, ତେବେ ସମ୍ବେଦନଶୀଳତା ବା ଯେକୌଣସି କଥା ତା'ପାଇଁ ମୂଲ୍ୟହୀନ । ପିଲାର ହୃଦୟକୁ ନବୁଝି କୌଣସି ତାଲିମ, ପାଠପଢ଼ା କିମ୍ବା ବୈଜ୍ଞାନିକସମ୍ମତ ସ୍କୁଲ ସଂଗଠନର କିଛି ପ୍ରଭାବ ନାହିଁ । (୧୩,୧୧)

ଯେତେବେଳେ ପିଲାଟିଏ ଗୋଟିଏ ଭାଙ୍ଗିଯାଇଥିବା ଖେଳନା ମୋଟରଗାଡ଼ିର ଯନ୍ତ୍ରଣା ସହିତ ଆଘାତ ଲାଗିଥିବା ବ୍ୟକ୍ତିର ଯନ୍ତ୍ରଣା ତୁଳନା କରେ, ଏହାକୁ ଆମେ ଭାବପ୍ରବଣତା ବୋଲି କହିବା ନାହିଁ; ଏହାକୁ ସମ୍ବେଦନଶୀଳତା ବା ସମ୍ବେଦନଶୀଳ ହେବାର ପାହାଚ ଏବଂ କବିର କଳ୍ପନା ସହିତ ତୁଳନା କରାଯାଇ ପାରିବ । (୧୪,୬)

ପିଲାମାନେ ଅଳ୍ପେ ବହୁତେ ସେମାନଙ୍କର ଉତ୍କଣ୍ଠା, ବୈରାଗ୍ୟ, ବ୍ୟସ୍ତତା ଏବଂ ଦୁଃଖ ଅନୁଭବ କରିଥାଆନ୍ତି । ଜଣେ ସମ୍ବେଦନଶୀଳ ଶିକ୍ଷକ ପିଲାର କିଛି ଅସୁବିଧା ହେଲେ ତାହାକୁ ଲକ୍ଷ୍ୟକରି ଜାଣିପାରିବା । ଏହା ଆମେ ସର୍ବପ୍ରଥମେ ପିଲାର ଆଖିରୁ ଜାଣିପାରିବ । ପିଲାର କୌଣସି ଅସୁବିଧା ଥିବା କଥା ଜାଣିପାରିଲା ପରେ କୌଣସି ଭାବପ୍ରବଣ ଶିକ୍ଷକ ଥରେ ହେଲେ ପ୍ରଶ୍ନ ପଚାରିବ ନାହିଁ । ଏପରି ସ୍ଥଳେ ଶିକ୍ଷକ କୌଣସି ଉପାୟ ବାହାର କରି ପିଲାକୁ ଅନୁଭବ କରାଇପାରିବେ ଯେ ସେ ତାଙ୍କ ଅସୁବିଧା ବିଷୟରେ ଜାଣିଛନ୍ତି । ଯେତେବେଳେ ଅନ୍ୟ ପିଲାମାନେ ନଥିବେ, ପିଲାଟିକୁ ପ୍ରଶ୍ନ ପଚରାଯାଇପାରିବ । ଯଦି ପିଲାଟି ସାହାଯ୍ୟ ଦରକାର କରୁଛି

ବୋଲି ଶିକ୍ଷକ ଅନୁଭବ କରୁଛନ୍ତି, ତାକୁ ସାହାଯ୍ୟ କରିବା ଉଚିତ୍ । (୧୩,୩)

ବେଳେ ବେଳେ ପିଲାଟି କୌଣସି ଘଟଣା ପାଇଁ ନିଜକୁ ଦୋଷୀ ଭାବୁଥାଏ । ତାହା ବଡ଼ମାନଙ୍କ ପାଇଁ ନଗଣ୍ୟ ହୋଇଥାଏ । ଉଦାହରଣ ସ୍ୱରୂପ - ଯେତେବେଳେ ପିଲାର କଣେଇକୁ କିଏ ଲୁଚେଇ ଦିଏ । ଅବଶ୍ୟ ଆମକୁ ମନେ ରଖିବାକୁ ପଡ଼ିବ, ପିଲାମାନଙ୍କର ଖୁସି, ଦୁଃଖ ଏବଂ ଭୁଲ, ଠିକ୍ ମାପିବାରେ ନିଜନିଜର ମାନଦଣ୍ଡ ରହିଛି । ଜଣେ ସମ୍ବେଦନଶୀଳ ଶିକ୍ଷକ ନିଜେ ଜଣେ ବାଳକ ଥିଲା ବୋଲି କେବେ ଭୁଲି ଯାଏ ନାହିଁ । ଶିକ୍ଷକଙ୍କୁ ପିଲାମାନଙ୍କ ସ୍ତରକୁ ଆସିବାକୁ ପଡ଼ିବ ଏବଂ ତା'ର ଦୁଃଖରେ ଭାଗୀ ହୋଇ ସାହାଯ୍ୟ କରିବାକୁ ପଡ଼ିବ । ସବୁବେଳେ ସବୁଠାରୁ ଗ୍ରହଣୀୟ ଓ ଗୁରୁତ୍ୱପୂର୍ଣ୍ଣ ସାହାଯ୍ୟ ହେଉଛି - ସହାନୁଭୂତି, ଶ୍ରଦ୍ଧା ଏବଂ ମନଯୋଗୀ ବୁଝାମଣା । ସେହିପରି ଉଦାସୀନତା ଏବଂ ଭେଦଭାବ ଗୋଟିଏ ପିଲାକୁ ଅସ୍ତବ୍ୟସ୍ତ କରିପକାଏ । (୧୩,୩)

ନିଃସନ୍ଦେହରେ କୁହାଯାଇପାରେ ଯେ, ବଡ଼ ବଡ଼ ବିଦ୍ୟାଳୟଗୁଡ଼ିକ ଶିକ୍ଷାକାର୍ଯ୍ୟକୁ ଅବାଞ୍ଛନୀୟ ଭାବରେ ସଂଗଠିତ କରିଛନ୍ତି । ଯେତେବେଳେ ଜଣେ ସ୍ଥପତି ଦୁଇହଜାର ଦୁଇଶହରୁ ଉର୍ଦ୍ଧ୍ୱପିଲାଙ୍କ ପାଇଁ ବିଦ୍ୟାଳୟ ଯୋଜନା କରେ, ସେତେବେଳେ ମୁଁ ଭାରି ବ୍ୟସ୍ତ ହୋଇପଡ଼େ । ହଜାରେରୁ ଉର୍ଦ୍ଧ୍ୱ ପଢୁଥିବା ବଡ଼ ବିଦ୍ୟାଳୟଗୁଡ଼ିକରେ ପାରିବାରିକ ପରିବେଶ ସୃଷ୍ଟିକରିବା ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନେବା ନିମନ୍ତେ ମୁଁ ପରାମର୍ଶ ଦେଇଥାଏ । ଉଦାହରଣ ସ୍ୱରୂପ ପ୍ରତ୍ୟେକ ବିଦ୍ୟାଳୟ ସମାନ୍ତରାଳ ଭାବରେ ପାଠପଢ଼ା ହେବା ଉଚିତ ଏବଂ ଶ୍ରେଣୀକକ୍ଷଗୁଡ଼ିକ ଏଭଳି ହେବା ଉଚିତ, ଯେପରିକି କୋଳାହଳ ଏବଂ ଭିଡ଼ କମ୍ ହେବ । ଏହା ଉତ୍ତମ ଶିକ୍ଷାଦାନର ଏକ ପ୍ରାଥମିକ ଆବଶ୍ୟକତା । (୧୩,୮)

ମତେ ଯଦି ପାଠପଢ଼ାର ସବୁଠାରୁ କଠିନକାମ କ'ଣ ବୋଲି ପଚରା ଯାଇଥାଆନ୍ତା, ତାହାହେଲେ ମୋର ଉତ୍ତର ଏଭଳି ହୋଇଥାନ୍ତା, - ପିଲାମାନଙ୍କ ସହିତ ସେମାନଙ୍କ ବାପା, ମା'ଙ୍କ ବିଷୟରେ କଥାବାର୍ତ୍ତା କରିବା । ସାମାନ୍ୟତମ ବିଚାରହୀନତା, ଅପ୍ରୀତିକର କଥା, ଭୁଲକଥା ପିଲାମାନଙ୍କୁ ବିପଦ ହୋଇପାରେ । (୧୮)

ଏଭଳି ପରିସ୍ଥିତି ମଧ୍ୟ ଆସିପାରେ ଯେତେବେଳେ ପିଲାଟି ତା ତଣ୍ଟିରେ ସତରେ ଗୋଟେ ଛୁରୀ ଅଛି ବୋଲି ଅନୁଭବ କରିଥାଏ । ସେ ଭୟଙ୍କର କଷ୍ଟପାଏ, ତା'ର ଦେହ ଥଣ୍ଡା ହୋଇଗଲା ବୋଲି ଅନୁଭବ କରିଥାଏ । ଯେଉଁପିଲାର

ବାପା'ମା'ଙ୍କର ପାରିବାରିକ ସମ୍ପର୍କ ଛିନ୍ନ ହୋଇଥାଏ, ସେ କ୍ଷେତ୍ରରେ ପିଲାମାନଙ୍କୁ ବାପା ମା'ଙ୍କ ବିଷୟରେ ପଚାରିଲେ ସେମାନେ ସୂଚାଇଥାନ୍ତି ।

ବାପାମାନଙ୍କୁ ମୁଁ କହିବାକୁ ଚାହେଁ , - ତୁମେମାନେ ଅନୁଭବ କରିବା ଉଚିତ୍ ଏବଂ ମନେ ରଖିବା ଉଚିତ ଯେ ତୁମର ଅସଫଳତା ଏବଂ ଅଧଃପତନ ତୁମର ପିଲାମାନଙ୍କ ପାଇଁ ଦୁଃଖଦାୟକ ହୋଇଥାଏ, ଏବଂ ତୁମର ଖୁସିରେ ସେମାନେ ଆପେ ଖୁସି ଅନୁଭବ କରିଥାନ୍ତି । ତୁମ ପିଲାର ଅନ୍ୟ ପିଲାଙ୍କ ପ୍ରତି ସ୍ନେହକୁ ସଂରକ୍ଷଣ କର ଏବଂ ମଣିଷ ପ୍ରତି ତୁମ ପିଲାର ବିଶ୍ୱାସକୁ ଦୃଢ଼କର । (୧୮)

ଶୈଶବରୁ ଯୌବନରେ ପହଞ୍ଚିବା ରାସ୍ତା ମଉଜିଆ ଏବଂ ଆନନ୍ଦଦାୟକ ହେବା ଉଚିତ । ଏହା ଆମ ଶିକ୍ଷା ବ୍ୟବସ୍ଥାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିୟମ । ମଉଜ ପିଲାମାନଙ୍କୁ ନିଜର ସାମର୍ଥ୍ୟ ଅନୁସାରେ ଆଶାବାଦୀ କରାଇଥାଏ । ଏଭଳି ଆଶାବାଦୀ ବିଶ୍ୱାସ ପିଲାର ଚାରିପାଖର ପୃଥିବୀ ସହିତ ସମ୍ପର୍କ ଯୋଡ଼ିବାର ମାଧ୍ୟମ ହୋଇଥାଏ । ଏହାକୁ ଛାଡ଼ି କୌଣସି ବୌଦ୍ଧିକ ଏବଂ ମାନସିକ ବିକାଶ ସମ୍ଭବ ନୁହେଁ । ( ୬,୩୩)।

ମୁଁ ଯେତେବେଳେ ଭାବେ ଗୁଡ଼ାଏ ସ୍କୁଲ ଅଛି ଯେଉଁଠି ଫେଲ୍ ହୋଇଥିବା ପିଲାମାନେ ପଛଧାଡ଼ିରେ ବସି ସେହି ଶ୍ରେଣୀରେ ପଢ଼ିବା ପାଇଁ ବାଧ୍ୟ ହେବେ, ସେତେବେଳେ ମୋ ମନରେ ବହୁତ ଦୁଃଖ ଆସେ । ସତେ ଯେପରି ସେମାନେ ଦୁସ୍ଥ, ପଛୁଆ ଜାତି ଏବଂ ଚାରିପାଖର ଜିନିଷ ପ୍ରତି ଉଦାସିନ । ଏହା ଅକ୍ଷମଣୀୟ ଅପରାଧ ହେବ ଯଦି ସେମାନେ ଶିକ୍ଷା ପାଇବା ପ୍ରକୀୟାରେ ବିଷାଦପୂର୍ଣ୍ଣ କିମ୍ବା ଉଦାସୀନ ହୋଇ ବିଦ୍ୟାଳୟ ଛାଡ଼ିଦେଇ ଚାଲିଯାଆନ୍ତି । ଜଣେ ସୁସ୍ଥ ମାନସିକ ବ୍ୟକ୍ତି ତା'ର କୌଣସି ଭଲ ଲାଗୁଥିବା ବିଷୟରେ ଅସଫଳ ହୁଏ, ତାହାହେଲେ ବିଦ୍ୟାଳୟ ବ୍ୟବସ୍ଥାରେ କେଉଁଠି ଭୁଲ ରହିଯାଇଛି । (୧୪,୮)

ଯେଉଁମାନେ ମାନବିକତାର ସହିତ ଅନ୍ୟକୁ ବୁଝନ୍ତି (ଶିକ୍ଷକ ମଧ୍ୟ); ସେମାନେ ଯଦି ମିଠା ମିଠା କଥା କହି ଦୟାପରବେଶ ହେବେ ଏବଂ ଗଳା ଚାପି ଅଦୃଶ୍ୟଭାବରେ ଉପଦେଶ ଦେବେ ତାହାହେଲେ ଏହା ବହୁତ ଭାବରେ ଭ୍ରାନ୍ତିଜନକ ହେବ । ସାଧାରଣ କଥାବାର୍ତ୍ତା ଦ୍ୱାରା ଦୟାପରବେଶ ହୋଇହେବ ନାହିଁ । ଏହା ସ୍ୱତନ୍ତ୍ରଭାବେ ବଛାଯାଇଥିବା କେତେକ ଶବ୍ଦଦ୍ୱାରା ହୋଇପାରିବ । ଯେଉଁମାନଙ୍କୁ ଶିକ୍ଷକ ହୋଇ ଜନ୍ମ ହୋଇଛନ୍ତି ବୋଲି କୁହାଯାଇପାରିବ, ସେମାନଙ୍କର ବିସ୍ତୃତ ଭାବରେ ଆବେଗ ରହିଛି । ସେମାନଙ୍କର ଖୁସାରେ ଉତ୍ଫୁଲ୍ଲିତ

ହେବା, ଦୁଃଖରେ ଭାଙ୍ଗିପଡ଼ିବା, ଉଦ୍‌ବେଗ, ରୋଷ ଆଦି ଗୁଣଗୁଡ଼ିକ ବହୁତ ଗଭୀର ଭାବରେ ଥାଏ । ଯଦି ପିଲାମାନେ ତାଙ୍କ ଶିକ୍ଷକଙ୍କ ଆବେଗ ବାସ୍ତବ ବୋଲି ଗ୍ରହଣ କରନ୍ତି, ସେମାନେ ପ୍ରକୃତରେ ଦୟାଶୀଳ ହୋଇଥାଆନ୍ତି । (୧୩,୩)

ଯିଏ ପ୍ରକୃତ ଶିକ୍ଷକ ତାଙ୍କୁ ଅନ୍ୟମାନେ ଭଲ କୁହନ୍ତୁ ବୋଲି କେବେ ଆଶା କରେନାହିଁ । ଶିକ୍ଷକଙ୍କର ଅକପଟ ସତ୍ୟବାଦିତା ଏବଂ ଅଶେଷ ଆନ୍ତରିକତାକୁ ଦେଖି ଛାତ୍ରମାନେ ତାଙ୍କର ହୃଦୟର ଦୟାଳୁଭାବକୁ ଜାଣିପାରନ୍ତି । ଦୟାଳୁଭାବ ସତ୍ୟବାଦିତାର ସରସତାରେ ଥାଏ, ଯାହା ଯେକୌଣସି ଭାବରେ ସୌନ୍ଦର୍ଯ୍ୟପୂର୍ଣ୍ଣରେ ଥିବା ମଣିଷ କଷ୍ଟ ପାଏ କିମ୍ବା 'ସତ୍ୟ'ରେ ଥିବା ମଣିଷ ପ୍ରାୟ ସମୟରେ ତିକ୍ତତା କିମ୍ବା ବ୍ୟସ୍ତତା ଭିତରେ ବଞ୍ଚେ ଯାହା ତାକୁ ଅପମାନିତ କରାଇବ କିମ୍ବା ଭାଙ୍ଗିଯିବାରେ ସାହାଯ୍ୟ କରିବ । ତେବେସୁଦ୍ଧା 'ସତ୍ୟ'ର ସବୁଠାରୁ ତିକ୍ତ ଅନୁଭୂତି ପିଲାର ହୃଦୟରେ ଛାପିହୋଇ ରହିଯାଏ । ତାହା ପରବର୍ତ୍ତୀ ସମୟରେ ତାକୁ ଭଲ ହେବାରେ ସାହାଯ୍ୟ କରିଥାଏ । କାରଣ 'ଦୟାଭାବ' ସ୍ୱଭାବଭାବେ ମଣିଷର ଆତ୍ମମର୍ଯ୍ୟାଦାକୁ କେବେ ନିକୃଷ୍ଟ କରାଏ ନାହିଁ । (୧୩,୩)

## କାମରେ ଲାଗିଯିବା ପାଇଁ ଆଗ୍ରହୀ କରାଇବା

ଜଣେ ବାଦ୍ୟକାରକୁ ଯଦି ସ୍ୱର ଧରୁନଥିବା ଭାଓଲିନକୁ ବଜାଇବାକୁ ପଡ଼ିଲା, ତାର ଫଳାଫଳ କଥା ଭାବନ୍ତୁ । ନିଃସନ୍ଦେହରେ କୁହାଯାଇପାରିବ ଏହାର ଫଳାଫଳ କିଛି ହେବନାହିଁ । (କୌଣସି ବାଦ୍ୟକାର ଏଭଳି ବାଜୁନଥିବା ଭାଓଲିନ୍‌କୁ ନେଇ ନିଜର ଦକ୍ଷତା ପ୍ରମାଣ କରିବାକୁ ଯିବ ନାହିଁ, କାରଣ ଏଥିରେ ତା'ର ଦାନାପାଣି ଜଡ଼ିତ ଅଛି)। ଏ ପର୍ଯ୍ୟନ୍ତ ଆମେ ଅନେକ ଶିକ୍ଷକଙ୍କୁ ଦେଖୁ ଯେଉଁମାନେ ପାଠକୁ ବୁଝିପାରୁନଥିବା ବା ପାଠରେ ଆଗ୍ରହୀ ନଥିବା ପିଲାମାନଙ୍କୁ ଚେଷ୍ଟା କରନ୍ତି । ଶିକ୍ଷାର ପ୍ରଥମ ଏବଂ ସର୍ବପ୍ରଥମ କାମ ହେଉଛି ନିର୍ଦ୍ଦିଷ୍ଟ ପିଲାଙ୍କୁ ଠାବକରିବା ଏବଂ ପାଠପ୍ରତି ଆଗ୍ରହ ବଢ଼ାଇବା । ଶିଖିବାର ଦକ୍ଷତା ହାସଲ କରିବାକୁ ଛାତ୍ର ପାଇଁ ଦରକାର ସୃଜନଶୀଳ ହୃଦୟ, ଶିକ୍ଷକର ପ୍ରତ୍ୟେକ କଥାରେ ନିହିତ ହସ, ତାଙ୍କର ନିରବତା ଇତ୍ୟାଦିରୁ ଅନୁଭବ କରିବାର ଶକ୍ତି । (୨୦)

ଗୋଟିଏ ପିଲାର ନିକଟତର ହେବାର ମାନବୀୟ ବାଟ ହେବ ଯଦି ଶିକ୍ଷକ ସରଳତା ଏବଂ ସତ୍ୟକୁ ପସନ୍ଦ କରିବେ । ପିଲାମାନଙ୍କ ଭିତରୁ ପାଠପଢ଼ିବା ପ୍ରତି ଆପେ ଆପେ ଇଚ୍ଛା ବଳିଷ୍ଠ ଭାବରେ ନ ଆସିଲେ ଭଲ ବିଦ୍ୟାଳୟ କିମ୍ବା ଭଲ ଶିକ୍ଷା ଚିନ୍ତା କରାଯାଇ ନପାରେ । ପିଲାମାନଙ୍କର ଆଗ୍ରହକୁ ଦେଖି ଶିକ୍ଷକ ଭଲ

ପାଠ ପଢ଼ାଉଛନ୍ତି କି ନାହିଁ ଜାଣିହେବ । ପିଲାମାନଙ୍କୁ କେନ୍ଦ୍ରକରି ଶ୍ରେଣୀ ପରିଚାଳନା କରିବା, ଶିକ୍ଷକଙ୍କ ଅନୁସାରେ ପିଲାମାନଙ୍କୁ ବାଧ୍ୟ କରାଇବାର ବାଟକୁ ଦେଖି ଶିକ୍ଷକଙ୍କର ପାଠପଢ଼ାର ମାନ ନିର୍ଦ୍ଧାରଣ କରିହେବ । ଏଗୁଡ଼ିକ ଶିକ୍ଷକମାନେଏଭଳି କରିପାରିବେ, ଯେଭଳି ପିଲାମାନଙ୍କର ଭଲ ହେବା ପାଇଁ ସୂକ୍ଷ୍ମତମ ଇଚ୍ଛା ମଧ୍ୟ ମରିନଯାଏ । ଜଣେ ଭଲଶିକ୍ଷକ ଯେତେବେଳେ ପୁନର୍ବାର ପିଲାକୁ ବୁଝାଇବାକୁ ଚାହୁଁଛି, ପିଲାଙ୍କୁ ନିଜର ଅସନ୍ତୋଷ ଜଣାଇବା ପାଇଁ ଚାହୁଁଛି, କିମ୍ବା କ୍ରୋଧଗୁଡ଼ିକ ପ୍ରକାଶ କରିବାପାଇଁ ଚାହୁଁଛି, (ଶିକ୍ଷକ ଜଣେ ସମ୍ବେଦନଶୀଳ ଶିକ୍ଷିତବ୍ୟକ୍ତି ହିସାବରେ ରାଗିବାର ଅଧିକାର ରହିଛି ) ମନେ ରଖିବାକୁ ପଡ଼ିବ, ଯେମିତି ପିଲାର ଧାରଣାଗୁଡ଼ିକ ମରିନଯାଏ ;- ଲକ୍ଷ୍ୟ ରଖିବାକୁ ପଡ଼ିବ, ଏବଂ ଲକ୍ଷ୍ୟଗୁଡ଼ିକ ହାସଲ କରିବାକୁ ହେଲେ ଯେକୌଣସି ମୂଲ୍ୟ ଦିଆଯାଇ ପାରେ । (୧୩,୩)

ଶିକ୍ଷା ସମ୍ବନ୍ଧରେ ମୋର ମତାମତ ହେଲ. ଶିକ୍ଷକ ଏବଂ ଛାତ୍ରମାନଙ୍କ ଭିତରେ ପ୍ରତ୍ୟେକ ସମୟର ସମ୍ପର୍କ- କାର୍ଯ୍ୟରେ ମଗ୍ନ ହେବାପାଇଁ ସାହାଯ୍ୟ କରୁଥିବ । ଏହାର ଅର୍ଥ ଯେତିକି ରହସ୍ୟପୂର୍ଣ୍ଣ ଏବଂ କୋମଳ ହେବ, ସେତିକି କ୍ଷମତା ପିଲାମାନଙ୍କର ହୃଦୟରୁ ଆସିବ ଏବଂ ସେମାନେ ସେତିକି ନିଜେ ନିଜକୁ ଶିକ୍ଷିତ କରାଇବାକୁ ସଫଳ ହେବେ । (୨୧)

ପ୍ରଥମ ଶ୍ରେଣୀରୁ ମଧ୍ୟ ଜଣେ ଛାତ୍ରର ଆତ୍ମମର୍ଯ୍ୟାଦା କେତେ ଗଭୀରଭାବରେ କ୍ଷତ ହୋଇଥାଏ ତାହା ପ୍ରତ୍ୟେକ ଚିନ୍ତଶୀଳ ଶିକ୍ଷକଙ୍କୁ ଜଣାଥାଏ । ପିଲାଟିଏ ଯେତେବେଳେ ପାଠପଢ଼ିବା ପାଇଁ ଆସେ, ତା ଚାରିପାଖରେ ଥିବା ପିଲାମାନେ ସେ କିଛି ନଜାଣିଥିବା ବ୍ୟକ୍ତି ହିସାବରେ ତାକୁ ଦେଖନ୍ତି । ଅନ୍ୟ ପକ୍ଷରେ, କେତେକ କ୍ଷେତ୍ରରେ ପିଲାଟିଏ ଯଦି ଅନୁଭବ କରୁଛି ଏବଂ ଜାଣି ପାରୁଛି ଯେ ଶିକ୍ଷକ ଏବଂ ତା' ଚାରିପାଖରେ ପିଲାମାନେ ତାକୁ ଜାଣିଛନ୍ତି ଏବଂ ତା'ର କୌଣସି ନିର୍ଦ୍ଦିଷ୍ଟ ଗୁଣକୁ ଭଲ ପାଉଛନ୍ତି ସେ ଆହୁରି ଭଲ ହେବାପାଇଁ ଚେଷ୍ଟା କରିବ । ଏହି ଅନୁରାଗ ଏବଂ ନୈତିକ ପ୍ରଚେଷ୍ଟାରୁ ବାସ୍ତବିକ ଶିକ୍ଷାଦାନର ସମଗ୍ର ଲୁକ୍‌କାୟିତ କଳା କୌଶଳ ପିଲାମାନଙ୍କ ଭିତରେ ଉଦ୍‌ଜୀବିତ ହୋଇଥାଏ । କୌଣସି ଶିକ୍ଷକ ପିଲାର ହୃଦୟରେ ଭଲ ରୋପି ଦେଇପାରିବ ନାହିଁ, ଯେପର୍ଯ୍ୟନ୍ତ ପିଲାଟିଏ ଏ ଦିଗରେ ଇଚ୍ଛା ପ୍ରକାଶ ନକରୁଛି । ଯେତେବେଳେ ଶିକ୍ଷକ ଏବଂ ଅନ୍ୟ ଛାତ୍ରମାନେ ପ୍ରଥମେ ଓ ସର୍ବପ୍ରଥମେ ପିଲାଠାରେ ଭଲକୁ ଦେଖିପାରିବେ,ତାହାର ଅଭିଳାଷ ପୂର୍ଣ୍ଣ ହୋଇପାରିବ । (୫,୧୨)

ଆମ ସମାଜରେ ଚରିତ୍ର ଏବଂ ମୂଳଦୁଆ ଅନୁସାରେ ଉଭୟ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ସେମାନଙ୍କର ଇଚ୍ଛା ମୁଖ୍ୟ ସଂଯୋଗ ହେବା ଦରକାର । ଛାତ୍ରମାନେ ଅଭିଜ୍ଞ ହେବା ପାଇଁ ଶିକ୍ଷକମାନେ ଚେଷ୍ଟା କରିଥାଆନ୍ତି ଏବଂ ଛାତ୍ରମାନେ ଯେଉଁ ସ୍ତରରେ ଅଛନ୍ତି ତା'ଠାରୁ ଅଧିକ ଭଲ ସ୍ତରରେ ଦେଖିବା ପାଇଁ ସେମାନଙ୍କୁ ଭଲ ପାଇଥାନ୍ତି । (୧୨,୩୨)

ଯେତେବେଳେ ଜଣେ ଶିକ୍ଷକ ଜଣେ ଅବୁଝା ପିଲାକୁ କିମ୍ବା ସମଗ୍ର ସ୍କୁଲର ସେଭଳି ପିଲାଙ୍କୁ ସାମନା କରେ ସେ ନିଜକୁ ଅସହାୟ ମନେକରେ । ପିଲାଟିଏ ଉନ୍ନତି କରୁନାହିଁ ବୋଲି ଆମେ କହିପାରିବା ନାହିଁ, କିନ୍ତୁ ପ୍ରକୃତ ଶିକ୍ଷଣ ପ୍ରକ୍ରିୟା ଠିକ୍‌ବାଟରେ ଆଗେଇ ପାରୁନାହିଁ । ଶିକ୍ଷାଦାତା କେବଳ ପିଲା ଭିତରେ ଥିବା ଦୋଷ ଦୁର୍ବଳତାକୁ ଦୂରେଇ ଦେବାକୁ ଚେଷ୍ଟା କରୁଛନ୍ତି କିମ୍ବା ସେମାନଙ୍କର ଉଦ୍ୟମକୁ ଆଗରୁ ନିର୍ଣ୍ଣୟ କରୁଛନ୍ତି । ଅଭିଜ୍ଞତାରୁ ଜଣାଯାଉଛି (ଅନେକ କ୍ଷେତ୍ରରେ ତିକ୍ତ ଅନୁଭୂତିରୁ) ନୈତିକ ବିଶ୍ୱାସକୁ ପରିପୁଷ୍ଟ କରିବା ପାଇଁ ଏହା ଠିକ୍ ବାଟ ନୁହେଁ । ବିଦ୍ୟାଳୟକୁ ଆସିବାର ପ୍ରଥମ ଦିନରୁ ଅକ୍ଳାନ୍ତ ଭାବରେ ପିଲାର ସକାରାତ୍ମକ ଦକ୍ଷତାକୁ ବୃଦ୍ଧି କରିବା ପାଇଁ ମନଯୋଗ ଦେବା ଉଚିତ ବୋଲି ଆମେ ଗ୍ରହଣ କରିବା ଦରକାର । (୫,୪-୫)।

ପିଲାର ହୃଦୟ ବୁଝିବାର ବାଟ ସହଜ ନୁହେଁ । ଶିକ୍ଷକ ଯତ୍ନଶୀଳ ହେଲେ ପିଲାର ଦୋଷ ଦୁର୍ବଳତାକୁ ଦୂରେଇ ଦେଇପାରେ । କିନ୍ତୁ ଶିକ୍ଷକର ସ୍ନେହପୂର୍ଣ୍ଣ କଥା ଉର୍ବର ଜମିରେ ମଞ୍ଜି ପଡ଼ିଲା ଭଳି ହୁଏ । ତାହା ପରବର୍ତ୍ତୀ ସମୟରେ ନୈତିକ ସଦ୍‌ଗୁଣଗୁଡ଼ିକ ଅଙ୍କୁରୋଦ୍‌ଗମ ହୋଇ ଚେର ଧରେ । ଦୋଷ ଦୁର୍ବଳତା ଛାଏଁ ଛାଏଁ ନିର୍ମୂଳ ହୋଇଯାଏ । ଏଭଳି ପ୍ରକ୍ରିୟାରେ ଦୋଷ ଦୁର୍ବଳତା ଦୂରୀକରଣର କୌଣସି ପାର୍ଶ୍ୱ ପ୍ରତିକ୍ରିୟା ନଥାଏ ଯଦି ସେଗୁଡ଼ିକ ଭଲଗୁଣ ଦ୍ୱାରା ଅଙ୍କୁରିତ ହୋଇଥାଏ । (୫ - ୫)

ମୁଁ ଜଣେ ଶିକ୍ଷକ ସେଥିପାଇଁ ମୁଁ ଗର୍ବ ଅନୁଭବ କରେ । ମୁଁ ଯେଉଁ ପିଲାମାନଙ୍କୁ ଭଲ ପାଉଛି ସେମାନେ ମୋର ଆଜ୍ଞାବହ କିମ୍ବା ଶାନ୍ତ ସରଳ ନୁହଁନ୍ତି । ସେମାନେ ମୋର ପ୍ରତ୍ୟେକ କଥାରେ ରାଜି ହେବାପାଇଁ ପ୍ରସ୍ତୁତ ନ ଥାଆନ୍ତି ଏବଂ ସବୁକଥାରେ ସେମାନଙ୍କର ସହମତି ନଥାଏ । କିନ୍ତୁ ସେମାନେ ଦୃଢ଼ମନା, ସେମାନଙ୍କର ମନର ତାକତ ଅନୁସାରେ ଅବିରାମ ପରିଶ୍ରମୀ । ସେମାନେ ବିଭିନ୍ନ ପ୍ରକାରର ଦୁଷ୍ଟାମିରେ ଥାଆନ୍ତି, କିନ୍ତୁ ସବୁପ୍ରକାର ଭୁଲ ଏବଂ ମିଥ୍ୟାକୁ ପ୍ରତିବାଦ

କରନ୍ତି । ସେମାନେ ସେମାନଙ୍କର ନୀତିରେ ଚଳିବାପାଇଁ ଅଟଳ ଥାଆନ୍ତି ଯାହା ସେମାନଙ୍କର ଅନ୍ତର୍ନିହିତ ସତ୍ତା, ସେଭଳିଗୁଡ଼ିକ ଆମେ ଯତ୍ନଶୀଳ ଭାବରେ ସଂରକ୍ଷିତ କରି ରଖିପାରିବା ଏବଂ ସେଭଳି ଗୁଣଗୁଡ଼ିକ ପ୍ରତିପୋଷଣ କରିପାରିବା । ଏଗୁଡ଼ିକ ପ୍ରାଥମିକ ଭାବରେ ସୂକ୍ଷ୍ମ ଆକାରରେ ଥାଏ । କିନ୍ତୁ ସତ୍ୟ ଏବଂ ମହତ୍ ଉଦ୍ଦେଶ୍ୟକୁ ବଜାୟ ରଖିବା ପାଇଁ ସେମାନଙ୍କୁ ସାହାସ ଏବଂ ଉତ୍ତମ ବୁଝାମଣାରେ କାମ କରିବା ପାଇଁ ସାହାଯ୍ୟ କରେ । (୨୧)

ଯୁବସୁଲଭ ଉତ୍ସୁକତା ଓ ଆଗ୍ରହକୁ ସଂରକ୍ଷଣ ଓ ଆଦର କରିବା ଏବଂ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଅଟେ । ଏହାର ଅର୍ଥ ଶିକ୍ଷାଗତ କାର୍ଯ୍ୟରେ କୌଣସି ଭୁଲ କିମ୍ବା ତରବରିଆ କାର୍ଯ୍ୟାନୁଷ୍ଠାନ ପାଇଁ କିମ୍ବା ଯେଉଁ ନିଷ୍ପତ୍ତି କିଶୋରମାନଙ୍କର ଆବେଗିକ ଧାରଣାକୁ ପ୍ରଭାବିତ କରେ ସେଗୁଡ଼ିକୁ ଅଧିକ ଧ୍ୟାନ ଦେବା ଉଚିତ । ଏଭଳି ଭୁଲଗୁଡ଼ିକରେ ସବୁଠାରୁ କ'ଣ ଗୁରୁତ୍ୱପୂର୍ଣ୍ଣ ଏବଂ କ'ଣ ମୂଲ୍ୟବାନ, ନିୟମ ଅନୁସାରେ ଏହାର ସଂପୃକ୍ତି କ'ଣ ? ଏପରି ପ୍ରଶ୍ନର ଉତ୍ତର ନାହିଁ । ନିୟମ ଅନୁସାରେ ସେଗୁଡ଼ିକ ସାଧାରଣ କଥା ନୁହେଁ ଏବଂ ସେମାନଙ୍କର ତାତ୍ପର୍ଯ୍ୟକୁ ଅତିରଞ୍ଜିତ କରାଯିବା ଉଚିତ ନୁହେଁ । (୬,୧୭୧)

ଜଣେ ମଣିଷ ହେବାପାଇଁ ମାନବିକତାର ଅର୍ଥକୁ ବୁଝ । ଛାତ୍ରମାନେ ପ୍ରଥମେ ନିଜକୁ ସମ୍ମାନ ଦେଇ ଶିଖିବା ଉଚିତ । ନିଜକୁ ସମ୍ମାନ ଦେଇ ନଶିଖିଲେ ନିଜ ଭିତରେ ଯାହାସବୁ ଭଲ ଅଛି ତାକୁ ପ୍ରଶଂସା ନକଲେ କୌଣସି ପୂର୍ଣ୍ଣତା ଆସିବ ନାହିଁ, ବରଂ ଅସହିଷ୍ଣୁଭାବ ବଢ଼ିବ ଯାହା ମଣିଷକୁ ନିକୃଷ୍ଟ କରିବା ଆଡ଼କୁ ନେଇଥାଏ । ନିଜକୁ ନିଜେ ଭଲ ପାଇବା ଶବ୍ଦକୁ ପରିତ୍ୟାଗ କରିବାର କୌଣସି ଆବଶ୍ୟକତା ନାହିଁ । ଏହାର 'ଗର୍ବୀ' ଶବ୍ଦସହିତ କୌଣସି ସମ୍ପର୍କ ନାହିଁ । ନିଜେ ନିଜେ ଗର୍ବିତ ହେବା ଏବଂ ନିଜ ଉପରେ ବିଶ୍ୱାସ ରଖିବା ହେଉଛି ଶକ୍ତି । ସାହିତ୍ୟ ମଣିଷର ନିଜ ଭିତରର ଆତ୍ମମର୍ଯ୍ୟାଦା ଫେରେଇ ଆଣିବା ପାଇଁ ଉର୍ଦ୍ଧ୍ୱଷ୍ଟ ହେବା ଉଚିତ । ନିଜ ଭିତରର ଏବଂ ଅନ୍ୟ ଭିତରେ ଥିବା ଆଗ୍ରହ ଓ ସମ୍ମାନକୁ ଫେରାଇ ଆଣିବା, ସାହିତ୍ୟର ଲକ୍ଷ୍ୟ ହେବା ଉଚିତ । (୧୪,୮)

ଆତ୍ମସମ୍ମାନ ବିନା ବ୍ୟକ୍ତି ନୈତିକ ପବିତ୍ରତାରୁ କିମ୍ବା ବୌଦ୍ଧିକତାରୁ ବଞ୍ଚିତ ହୁଏ । ଆତ୍ମସମ୍ମାନ, ଖୁସି ଏବଂ ଆତ୍ମ ମର୍ଯ୍ୟାଦା ଆବେଗିକ-ସମ୍ବେଦନଶୀଳତାର ମୂଳଦୁଆ । ଜଣେ ଯୁବକକୁ ଆତ୍ମସମ୍ମାନ ଦେବାପାଇଁ ଶିକ୍ଷାଦାତା ନିଜେ ନିଜ ଅନୁସାରେ ତାର ବ୍ୟକ୍ତିତ୍ୱକୁ ଗଭୀର ଭାବରେ ସମ୍ମାନ କରିବାକୁ ପଡ଼ିବ । (୧୪,୨)

କେତେକ ଶିକ୍ଷକ ସେମାନଙ୍କର ଛାତ୍ରମାନଙ୍କର ଦୋଷ ଦୁର୍ବଳତାକୁ ସିଧା ସଳଖ ଦୂରେଇ ଦେବାକୁ ଚେଷ୍ଟା କରୁଥାଆନ୍ତି । ଏହା ବଳପୂର୍ବକ ଭଳି ଜଣାପଡ଼ି ପାରେ । ସେମାନେ ପିଲାର ଦୋଷ ଦୁର୍ବଳତାଗୁଡ଼ିକୁ ଉଦାହରଣ ହିସାବରେ ନିଅନ୍ତି । କାରଣ ସେମାନେ ଭାବନ୍ତି ପିଲାମାନେ ନିଜ ବ୍ୟବହାରରେ ଥିବା ଦୋଷଗୁଡ଼ିକ ସମାଲୋଚନାତ୍ମକ ଭାବରେ ଗ୍ରହଣ କରିବେ ବୋଲି । ସେମାନଙ୍କର ସମ୍ବେଦନଶୀଳତାକୁ ବୁଝିବାକୁ ଚେଷ୍ଟା କରନ୍ତୁ ଏବଂ ସେମାନଙ୍କର ଅଭ୍ୟାସଗୁଡ଼ିକ ସୁଧାରି ନିଅନ୍ତୁ । ଯାହାହେଉନା କାହିଁକି ଅନେକ କ୍ଷେତ୍ରରେ ଏହି ପ୍ରଣାଳୀଗୁଡ଼ିକ ବିଫଳ ହେବାର ପ୍ରମାଣିତ ହୋଇଛି । ଏଭଳି ପଦ୍ଧତିରେ ପିଲାଟିଏ ଯେଉଁ କ୍ଷେତ୍ରରେ ସମ୍ବେଦନଶୀଳ ଏବଂ ଅସହାୟ ହୋଇପଡ଼େ ସେତେବେଳେ ସେ ଆଘାତ କରେ । ତାର ଗର୍ବ, ଆତ୍ମମର୍ଯ୍ୟାଦା, ଏବଂ ଆତ୍ମସମ୍ମାନ ଘଡ଼ିସନ୍ଧି ମୁହୂର୍ତ୍ତରେ ପହଞ୍ଚେ । ନିର୍ଦ୍ଦିଷ୍ଟ ଭାବରେ ସେ ଯେତେବେଳେ ଭାବେ ତାର ଦୁଃଖ ତା'ର ଶିକ୍ଷକ ପାଇଁ ଖୁସିର କାରଣ ହୋଇଛି, ସେତେବେଳେ ସ୍ୱଭାବିକ ଭାବରେ ପିଲାଟିଏ ନିଜକୁ ନିଜେ ରକ୍ଷା କରିବାପାଇଁ ଚେଷ୍ଟା କରେ ।

କେବେ କେବେ ପିଲାଟିଏ ଅନୁଭବ କରେ ଜଣେ ବୟସ୍କ ଲୋକର ତାପ୍ରତି ସମ୍ମାନ ନାହିଁ ଏବଂ ତାକୁ ତାର ନୈତିକ ମର୍ଯ୍ୟାଦାକୁ ପ୍ରଦର୍ଶନ କରିବାର କୌଣସି ଉପାୟ ନାହିଁ , ସେହି ପରିସ୍ଥିତିରେ ସେ ନିଜକୁ ଅନ୍ୟମାନଙ୍କ ମାଧ୍ୟମରେ ପରିପ୍ରକାଶ କରିବା ପାଇଁ ବାଟ ଖୋଜେ । ବହୁ ସମୟରେ ଏହାର ପରିଣାମ ସ୍ୱରୂପ ପିଲାର ବ୍ୟବହାର ନିନ୍ଦନୀୟ ହୋଇଥାଏ । (୫,୧୪)

ଶ୍ରେଣୀଗୃହରେ ଏବଂ ସୃଜନାତ୍ମକ କାମରେ ଉଜ୍ଜ୍ୱଳ ହୋଇ ଦିଶିବାର ଇଚ୍ଛା ପିଲାମାନଙ୍କର ଏକ ବୃହତ୍ ମାନବୀୟ ଗୁଣ । ଯାହା ଶିକ୍ଷକମାନେ ପାରୁପର୍ଯ୍ୟନ୍ତ ପରିପୁଷ୍ଟ କରିବା ଉଚିତ । ଆମ ବିଦ୍ୟାଳୟର ଶିକ୍ଷକମାନେ ପ୍ରତ୍ୟେକ ପିଲାଙ୍କର କୌଣସି ନା କୌଣସି ଆବେଗିକ ଏବଂ ବୌଦ୍ଧିକ ବିକାଶର ସ୍ତରରେ ଆଗୁଆ ହେବାର ଯେଉଁ ଖୁସି ଅନୁଭବ ଥାଏ ( ପାଠ ପଢୁଥିବା ପିଲାମାନଙ୍କର ତାହା ଅପ୍ରତିଦ୍ୱନ୍ଦ୍ୱୀ ମୁହୂର୍ତ୍ତ ) ତା' ଯେପରି ନଷ୍ଟ ନହୁଏ, ସେଥିପ୍ରତି ଚେଷ୍ଟା କରାଯିବା ଉଚିତ ।

ନିର୍ଦ୍ଦିଷ୍ଟ ଭାବରେ ବିଭିନ୍ନ ପରିସ୍ଥିତି ଦେଇ ଯେଉଁମାନେ ନିଜକୁ ସାଧାରଣ ଛାତ୍ର ମନେ କରନ୍ତି, ସେମାନଙ୍କ ପାଇଁ ଆମ ସମସ୍ତଙ୍କର ନୈତିକି ସମର୍ଥନ ଦରକାର । ଯେଉଁମାନେ 'ଶିକ୍ଷା' କାର୍ଯ୍ୟରେ ସମ୍ପୃକ୍ତ ଅଛନ୍ତି ସେମାନଙ୍କର ପ୍ରତ୍ୟେକ ପିଲା ଭିତରେ

ଥିବା ସୃଜନାତ୍ମକ ସମ୍ଭାବନାକୁ ଦେଖିବା ପାଇଁ ଜ୍ଞାନ ଥିବା ଦରକାର ଏବଂ ଶିକ୍ଷକଙ୍କ ଦ୍ୱାରା ଯତ୍ନର ସହିତ ବଛାଯାଉଥିବା ଶବ୍ଦଗୁଡ଼ିକ ଯେପରି ସୃଜନାତ୍ମକ କଳାର ବୃଦ୍ଧି ପାଇଁ ନିଜ ଭିତରେ ପ୍ରତିଯୋଗିତା କରିବେ ସେଭଳି ହେବା ଦରକାର । ତାହାହେଲେ 'ସାଧାରଣ ଦକ୍ଷତା' ବୋଲି ସ୍କୁଲରେ କିଛି ରହିବ ନାହିଁ । ଦୁଃସ୍ଥ ପ୍ରୌଢ଼ ମହିଳା କିମ୍ବା ଦୁଃସ୍ଥ ପ୍ରୌଢ଼ ପୁରୁଷ ବୋଲି ଜୀବନରେ କିଛିନାହିଁ । (୧୪,୧୨)

ପିଲାମାନଙ୍କ ଭିତରେ ତୁଳନା କରି ପିଲାମାନଙ୍କୁ ସେ ଭଲ କରୁଛି, ସେ ଖରାପ କରୁଛି ନକହି ଆମ୍ଭେମାନେ କିଶୋର ବୟସର ଛାତ୍ରମାନଙ୍କ ସହିତ ସମୟ ବିତେଇଥିଲୁ । ଛାତ୍ରମାନଙ୍କର ବିଭିନ୍ନ ଦକ୍ଷତାର ବୌଦ୍ଧିକ କାର୍ଯ୍ୟକଳାପକୁ ମୂଲ୍ୟାଙ୍କନ କରିବା ପାଇଁ ବହୁତ ଦକ୍ଷତା ଦରକାର । ଆମର ମୂଲ୍ୟାଙ୍କନ ଛାତ୍ରମାନଙ୍କର ବିଭିନ୍ନ ସ୍ତରରେ ଜ୍ଞାନ ଆହରଣ, ପ୍ରତ୍ୟେକ ପିଲାର ଉନ୍ନତି କରିବାର ଇଚ୍ଛା, ଆମ ଶିକ୍ଷକମାନଙ୍କ ପ୍ରତି ଛାତ୍ରମାନଙ୍କର ବିଶ୍ୱାସଗୁଡ଼ିକ ଅନ୍ତର୍ଭୁକ୍ତ ଥିଲା । (୧୨,୧୯୨)

ଜଣେ ପିଲା ତା'ର ଦୁର୍ବଳତାକୁ ଦୂରେଇବା ପାଇଁ (କୌଣସି ବିଷୟରେ ପଛୁଆ ହେବା ଅନ୍ତର୍ଭୁକ୍ତ ) ସେ ତାର ସଫଳତାରୁ ନୈତିକ ଶକ୍ତି ପାଇଥାଏ । ନିର୍ଦ୍ଦିଷ୍ଟ ଭାବରେ ସେ ନିଜେ ନିଜ ବାଟରେ କରୁଥିବା କାର୍ଯ୍ୟ ଉପରେ ଏବଂ ଯେଉଁ ବାଟରେ ସେ ତାର ଆଧ୍ୟାତ୍ମିକ ଶକ୍ତି ବ୍ୟକ୍ତ କରିପାରୁଥିବ ସେଭଳି କାର୍ଯ୍ୟକ୍ଷେତ୍ରରୁ ସେ ନୈତିକ ଶକ୍ତି ପାଇଥାଏ । ଆମେ ଶିକ୍ଷାଦାତାମାନେ ପିଲାଭିତରେ ଥିବା ସକାରାତ୍ମକ ଗୁଣଗୁଡ଼ିକୁ ଆମକୁ ବୁଝିବାକୁ ପଡ଼ିବ ଏବଂ ବିଦ୍ୟାଳୟ ପାଠ୍ୟକ୍ରମରେ ଯେପରି ଏଗୁଡ଼ିକ ଶୃଙ୍ଖଳାବଦ୍ଧ ନହୁଏ ଚେଷ୍ଟା କରିବାକୁ ପଡ଼ିବ । କାମ କରିବାର ସ୍ୱତନ୍ତ୍ରତା ଏବଂ ସୃଜନଶୀଳତାର ବିକାଶ ପାଇଁ ପିଲାମାନଙ୍କୁ ଉତ୍ସାହିତ କରିବା ଉଚିତ । (୫,୯୩)

ଜଣେ ପିଲା ତାର ବୟସକୁ ନେଇ କିମ୍ବା ଶାରିରୀକ ଶକ୍ତିକୁ ନେଇ ନିନ୍ଦା କରାଯିବା ଉଚିତ ନୁହେଁ, ଯାହା ଦୁର୍ଭାଗ୍ୟବଶତଃ କେତେକ ଶିକ୍ଷକ କରିଥାନ୍ତି । (ତୁମେ ବହୁତ ବଡ଼ ପିଲା ହେଲଣି, ତୁମ ମା'ଙ୍କ ଠାରୁ ଉଚ୍ଚା, କାହିଁକି ପଛରେ ପଡ଼ିଛ ?)

ଛାତ୍ରମାନେ ସେମାନଙ୍କର ନିଜର ଶକ୍ତି ଏବଂ ସାମର୍ଥ୍ୟ ବିଷୟରେ ସଚେତନ ଥାଆନ୍ତି । ସେମାନଙ୍କର ଗୁଣ ବିଷୟରେ ସାମାନ୍ୟତମ ନିନ୍ଦା ସୂଚନା ଅନେକ ସମୟରେ ସେମାନଙ୍କୁ ଗଭୀରଭାବରେ ଅବସାଦ କରିଥାଏ । ଏଥିପାଇଁ ଅନେକ

ପ୍ରକାରର କୌଶଳ ବ୍ୟବହାର କରାଯାଇପାରେ । ଯେତେବେଳେ ସେମାନେ ଅସୁବିଧାର ସମ୍ମୁଖୀନ ହୁଅନ୍ତି, ଛାତ୍ରମାନେ ସେମାନଙ୍କର ଶକ୍ତିପ୍ରତି ଥିବା ଗର୍ବକୁ ପରିପୁଷ୍ଟ କରିବା ଉଚିତ । ଉଦାହରଣ ସ୍ୱରୂପ ସେମାନଙ୍କର ପାଠପଢ଼ାରେ ସେମାନଙ୍କୁ ଉତ୍ସାହିତ କରିବା ଉଚିତ ଏବଂ ସେମାନଙ୍କର ଅସୁବିଧାକୁ ଦୂର କରିବାପାଇଁ ସେମାନଙ୍କୁ ବିଶ୍ୱାସ ଦେବାକୁ ପଡ଼ିବ , ନିର୍ଦ୍ଦିଷ୍ଟ ଭାବରେ ବଡ଼ପିଲାମାନଙ୍କୁ ( ପୁଅ ଓ ଝିଅ) ସମ୍ମାନ ଦେଇ, ସେମାନଙ୍କର ବୌଦ୍ଧିକ ଏବଂ ଶାରୀରିକ ସାମର୍ଥ୍ୟକୁ ଗୁରୁତ୍ୱ ଦେଇ, ଏବଂ ସେମାନଙ୍କର ପରିପୁଷ୍ଟତାକୁ ସ୍ୱୀକାର କରି ସେମାନେ ବଡ଼ ହୋଇଗଲେ ଗ୍ରହଣ କରିବାର ସୂଚନା ଦେବା ଉଚିତ । (୬,୧୬୯)

ପାଠପଢ଼ା ପ୍ରକ୍ରିୟାରେ କେତେକ ସହଜାତ ଦୋଷ ଦୁର୍ବଳତା ରହିଛି । ଏ ବିଷୟରେ ସଚେତନ ହେବା ବହୁତ ଗୁରୁତ୍ୱପୂର୍ଣ୍ଣ । ପାଠପଢ଼ା ପ୍ରକ୍ରିୟାରେ ପ୍ରତ୍ୟେକ ଦିନ ପିଲାମାନଙ୍କ ଭିତରେ ତୁଳନା କରାଯାଇଥାଏ । ଏହାର ପରିଣାମ ସ୍ୱରୂପ ପିଲାମାନେ ନିରାଶ ହୁଅନ୍ତି, ଅନ୍ୟ ଉପରେ ବିଶ୍ୱାସ ହରାଇ ବସନ୍ତି । ସେମାନଙ୍କ ଭିତରେ ଉଦାସୀନ ମନୋଭାବ ଆସେ ଏବଂ କ୍ରୋଧୀ ହୁଅନ୍ତି । ଅନ୍ୟ ଅର୍ଥରେ ଚରିତ୍ରରେ ଏଭଳି ପରିବର୍ତ୍ତନ ଦ୍ୱାରା ମନ ରୁକ୍ଷ ହୋଇଯାଏ ଏବଂ ପିଲାମାନଙ୍କର ସମ୍ବେଦନଶୀଳତା କମିଯାଏ । ଯେତେବେଳେ ଛାତ୍ରମାନେ ସେମାନଙ୍କର ସହୃଦୟ କଥାର ଉତ୍ତର ଉଦାସୀନ ଭାବରେ ଦେଇଥାନ୍ତି, ସେତେବେଳେ ଶିକ୍ଷକମାନେ ଆଶ୍ଚର୍ଯ୍ୟ ହୋଇପଡ଼ନ୍ତି, ଯେପରିକି ସେମାନେ ଶିକ୍ଷକଙ୍କ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କକୁ ଭୁଲ ବାଟରେ ବୁଝିଛନ୍ତି । ତାର କାରଣ ଛାତ୍ରମାନଙ୍କର ମନ ରୁକ୍ଷ ହୋଇଯାଉଛି । ଅବିଶ୍ୱାସ, ସନ୍ଦେହ ଏବଂ ପିଲାମାନଙ୍କର ଆତ୍ମମର୍ଯ୍ୟାଦାକୁ ବାରମ୍ବାର କୁଠାରାଘାତ ଫଳରେ ସେମାନଙ୍କ ମନ କଠୋର ହୋଇଯାଇଛି । ଏଭଳି ନିନ୍ଦାକଥା କହିଥାଆନ୍ତି : "ତୁମର ବନ୍ଧୁ ପରୀକ୍ଷାରେ 'କ' ଶ୍ରେଣୀ ପାଇବାପାଇଁ ଯୋଗ୍ୟ, ତୁମେ 'ଗ' ଶ୍ରେଣୀରୁ ଅଧିକ ପାଇ ପାରିବ ନାହିଁ । କିମ୍ବା "ତୁମେ ନିଜେ ନିଜେ ଲଜ୍ୟା ପାଇବା କଥା, ତୁମର ଆତ୍ମମର୍ଯ୍ୟାଦା ନାହିଁକି ? ଏଭଳି ପ୍ରକୃତରେ କୁହାଯାଇ ନଥାଇପାରେ କିନ୍ତୁ ଏଭଳି ଭାବରେ କୁହାଯାଉଥିବ ଯାହାର ଅର୍ଥ ସେଭଳି ବୁଝାଉଥିବ । ଆତ୍ମମର୍ଯ୍ୟାଦା ପ୍ରତି ବାରମ୍ବାର ଇଙ୍ଗିତ କରିବା ଦ୍ୱାରା ପିଲାଟି ଅଦାହୁଆ ହୋଇଯାଏ ଏବଂ ଶ୍ୱାସରୁଦ୍ଧ ଅନୁଭବ କରେ । କିଶୋରମାନଙ୍କର ହୃଦୟ ଆସ୍ତେ ଆସ୍ତେ ବରଫ ଭଳି ଟାଣ ହୋଇଯାଏ । ଏଭଳି ଅବସ୍ଥାରେ ହୃଦୟକୁ ବିନୟ କଥା ଦ୍ୱାରା ଆଘାତ କଲେ ମଧ୍ୟ କିଛି ଫଳ ମିଳିବ ନାହିଁ, ଯେପରି ମୋଟା ଆକାରରେ ପଡ଼ିଥିବା ବରଫଖଣ୍ଡ ଉପରେ ଗରମ ହାତ ରଖିଲେ କିଛି ଫଳ ହେବ ନାହିଁ । (୧୨,୧୯୧)

ପାଠପଢ଼ାରେ ଏଭଳି ଦୋଷ ଦୁର୍ବଳତାକୁ କିପରି ଦୂର କରାଯାଇ ପାରିବ ? ଆମମାନଙ୍କର କେବେ ଇଚ୍ଛାହୁଏନି ଯୁବକମାନେ ଜାଣନ୍ତୁ ଯେ ଆମର ବିଶ୍ୱାସ ତାଙ୍କ ଉପରେ ନାହିଁ । କାରଣ ସେମାନେ ଯେତେବେଳେ ଏକଥା ଅନୁଭବ କରିବେ ସେମାନେ ନିଜର ଶିକ୍ଷକ ଏବଂ ବାପା ଓ ମା'ଙ୍କୁ ପ୍ରତାରଣା କରିବାର କୌଶଳ ଶିଖିଯିବେ । ସମୟକ୍ରମେ ଏଥିରେ ସେମାନେ ପାରଙ୍ଗମ ହୋଇଯିବେ । ଏଭଳି ଅବିଶ୍ୱାସ ପିଲାମାନଙ୍କୁ ନିଜେ କୌଣସି ନିଷ୍ପତ୍ତି ନେଇ ପାରୁନଥିବା ଏବଂ ସମସ୍ୟାକୁ ସମାଧାନ କରିବା ପାଇଁ ଇଚ୍ଛାଶକ୍ତିକୁ ଜାଗ୍ରତ କରେଇ ପାରୁନଥିବା ଜଣେ ଜଣେ ବ୍ୟକ୍ତି ହିସାବରେ ଗଢ଼ିତୋଳେ । ଏହା ଏଇ ଯୁବାବସ୍ଥାରେ ହୋଇଥାଏ, ସେମାନେ ଏଭଳି ବଶବର୍ତ୍ତୀ ହେବେ କେବଳ ବନ୍ଧୁକମୁନରେ (ଡରାଇ ଧରାଇ) ହିଁ କାମ କରିବେ । ଆମେ ପିଲାର ନୈତିକ ମନୋବଳ ଉପରେ ଭରସା ରଖିଥିଲୁ । ଆମେ ପିଲାମାନଙ୍କୁ ମାଡ଼ ଦେଉନଥିଲୁ କିମ୍ବା ହାତଧରି ପାଠ ବତେଇ ନଥିଲୁ, କିନ୍ତୁ ସେମାନଙ୍କୁ ନିଷ୍ପତ୍ତି ନେବାପାଇଁ ସ୍ୱାଧୀନତା ଦେଉଥିଲୁ । ତା'ପରେ ସେମାନେ ନିଷ୍ପତ୍ତି ଗ୍ରହଣ କଲେ ଯାହା ଆମେମାନେ ଚାହିଁ ବସିଥିଲୁ । ସେମାନେ ଇଚ୍ଛାଶକ୍ତିକୁ ପ୍ରଖର କଲେ ଏବଂ ସମସ୍ୟାର ସମାଧାନ ପାଇଲେ । ଏକ ପ୍ରକ୍ରିୟାରେ ସେମାନଙ୍କର ଆତ୍ମମର୍ଯ୍ୟାଦା ବୃଦ୍ଧି ହେଲା । (୧୨,୧୯୧)

ମୁଁ ଏବଂ ମୋର ସହକର୍ମୀମାନେ ବିଶ୍ୱାସ କରୁ ( ଏବଂ ସବୁବେଳେ ନିଷ୍ପତ୍ତିରେ ଅଟଳ ରହୁ) ଯଦି ସବୁଛାତ୍ରମାନଙ୍କ ଭିତରେ ଜଣେ ଛାତ୍ର କୌଣସି ପାଠର ଉତ୍ତର ଦେଇପାରୁନି ତାର କାରଣ ସେ କିଛି ବୁଝିବାରେ ଅସମର୍ଥ ହୋଇଛି । ସେ ପାଠ ଠିକ୍ କରିପାରୁନି ବୋଲି ଧରକେ ବିବ୍ରତ ହୋଇଯିବା କଥା ନୁହେଁ । ଆମେ ପିଲାମାନଙ୍କୁ କମ୍ ନମ୍ବର ଦେବୁନି ବୋଲି ଠିକ୍ କରିଥିଲୁ । ଆମେ ଯେଉଁ ନିଷ୍ପତ୍ତି ନେଇଥିଲୁ ତା'ର ଫଳାଫଳ ଏପରି ହେଲା : "ତୁମେ ଯଦି ଏପର୍ଯ୍ୟନ୍ତ ବୁଝିନାହିଁ ଟିକେ ଅଧିକ ପରିଶ୍ରମ କର । ଚିନ୍ତା ଗଭୀର କର ଏବଂ ତୁମେ ତୁମ ପାଠରେ ମଗ୍ନ ହୁଅ । ତୁମେ ମଧ୍ୟ ଶ୍ରେଣୀର ଅନ୍ୟ ପିଲାଙ୍କ ଭଳି ପାଠ ସାରିପାରିବ ।" ଯୁବକମାନେ ଖୋଲା ମନ ଏବଂ ଅଧବସାୟୀ ହୋଇ ଆମକୁ ତାଙ୍କର କୃତଜ୍ଞତା ଜଣାଇଲେ । ଯଦି ବିଦ୍ୟାଳୟର ସବୁ ଆଗ୍ରହ ବଡ଼ ଛାତ୍ରମାନଙ୍କର ଆତ୍ମମର୍ଯ୍ୟାଦା ଏବଂ ଆତ୍ମସମ୍ମାନକୁ ପରିପୁଷ୍ଟ ନକରିପାରିଲା, ଏଭଳି ଶିକ୍ଷକ ଓ ଛାତ୍ର ସମ୍ପର୍କ ଅପୂରଣୀୟ ସ୍ୱପ୍ନ ହୋଇ ରହିବ । ମୁଁ ନିଶ୍ଚିତ ଭାବରେ ଗୁରୁତ୍ୱ ଦେଇ କହିବି ଯେ କେବଳ ଶ୍ରେଣୀ ଗୃହର ସମ୍ପର୍କ ଦ୍ୱାରା ଏଭଳି ସମ୍ପର୍କ ଆଣିବା ସମ୍ଭବ ନୁହେଁ । (୧୨, ୧୯୧)

ଉପରଠାଉରିଆ ଏବଂ ଦେଖେଇ ହେବା ଢଙ୍ଗ ଛଳନା କପଟତାକୁ ପ୍ରଶ୍ରୟ ଦିଏ, ଯଦିବା ସେହି ଖରାପଗୁଣର ପରିପ୍ରକାଶ ଅତି ସୂକ୍ଷ୍ମ ଭାବରେ ଆବରଣ ହୋଇଅଛି - ସେଗୁଡ଼ିକ ମୁଖ୍ୟତଃ ଜାଣି ଜାଣି ପୂର୍ବରୁ ଚିନ୍ତା କରିଥିବା କାର୍ଯ୍ୟକ୍ରମ କରିବା ଏବଂ ପାଠ ପଢ଼ାରେ ଅପ୍ରାକୃତିକ ଭାବରେ ପାଠ ପଢ଼େଇବା ଅନ୍ତର୍ଭୁକ୍ତ । ଶିକ୍ଷକଙ୍କ ଏଭଳି କପଟତାକୁ ଛାତ୍ରମାନେ ଜାଣିପାରନ୍ତି ଯେତେବେଳେ ସେମାନେ ଭାବନ୍ତି - ଶିକ୍ଷକମାନେ ସେମାନଙ୍କ ସହିତ କଥାବାର୍ତ୍ତା କରି ଖୁସି ପାଉଛନ୍ତି ବୋଲି କଥା ହେଉନାହାନ୍ତି । ବରଂ ତାଙ୍କୁ ନିର୍ଦ୍ଦିଷ୍ଟ ବିଷୟରେ ପାଠ ପଢ଼େଇବାର ଅଛି ବୋଲି ସେ କଥା ହେଉଛନ୍ତି । ବଡ଼ମାନେ ଏଭଳି ଆଚରଣକୁ ଜାରି ରଖି ପାରନ୍ତି ଏବଂ ପାଠପଢ଼ାକୁ ଗ୍ରହଣ କରନ୍ତି ନାହିଁ ।

ବର୍ତ୍ତମାନ ଏଗୁଡ଼ିକ ଅନେକ ବିଦ୍ୟାଳୟରେ ସବୁଠାରୁ ଖରାପ ଅଭ୍ୟାସ ହୋଇ ରହିଛି । ମୁଁ ଏହାକୁ ପାଠପଢ଼ା ଉଦ୍ୟୋଗର 'ଗଧର କାନ' ବୋଲି କହିବି । ଅର୍ଥାତ୍ ଯେଉଁ ହତଭାଗା କାନଗୁଡ଼ିକ କେବଳ ଶୁଣିବା ପାଇଁ ବାଧ୍ୟ ହେବେ । ଭଲ ଶିକ୍ଷାଗତ କସରତକୁ ଅଦୃଶ୍ୟ କରି ରଖିବା ପାଇଁ ବହୁତ ଚେଷ୍ଟା କରାଯାଇଛି । ଜଣେ ପୁଅ କିମ୍ବା ଝିଅ ଯଦି ଥରେ ଜାଣେ ଯେ ତାକୁ ଯାହା କୁହାଯାଇଛି କହିବାକୁ ପଡ଼ିବ ବୋଲି କୁହାଯାଇଛି ଏବଂ ନିଜ ଶିକ୍ଷାର ବିକାଶ କରିବା ପାଇଁ କେବଳ ଉଦ୍ଦିଷ୍ଟ ଭାବରେ କୁହାଯାଇଛି ତାର ମାନସିକ ଅବସ୍ଥା ସବୁଦିନପାଇଁ ତଳକୁ ହୋଇଯିବ । (୧୩,୭)

ଏକଥା ନିଃସନ୍ଦେହରେ କୁହାଯାଇପାରେ ଥରେ ଜଣେ ପିଲା ଶିକ୍ଷକଙ୍କର ଶିକ୍ଷାଦାନର ଉଦ୍ଦେଶ୍ୟ ଜାଣିସାରିଲା ପରେ ଯେକୌଣସି ଶିକ୍ଷାଦାନର ପଦ୍ଧତିଗୁଡ଼ିକ ତା'ପାଇଁ ଗୁରୁତ୍ୱ ହରାଇବସେ । ଏହି ଅକାଟ୍ୟ ସତ୍ୟକୁ ମୁଁ ପାଠପଢ଼ାର କୌଶଳରେ ଉନ୍ନତି ଆଣିବାର ପ୍ରାଥମିକ ପ୍ରଚେଷ୍ଟା ହିସାବରେ ଗ୍ରହଣ କରେ । ପିଲାମାନଙ୍କର ହୃଦୟକୁ ବୁଝିବା ଏବଂ ନିକଟତର ହେବା ପାଇଁ ଜଣେ ଶିକ୍ଷକଙ୍କ ପାଇଁ ଏହା ପ୍ରାଥମିକ ଦକ୍ଷତା ହେବା ଉଚିତ । ଏହାଦ୍ୱାରା ଯେଉଁ ଜିନିଷରେ ସେମାନେ ସମ୍ପୃକ୍ତ ହେବେ ତାହା ସେମାନଙ୍କର ହୃଦୟ ସହିତ, ଉତ୍କଣ୍ଠିତ ଭାବରେ ଏବଂ ତାହା ସେମାନଙ୍କର ସ୍ୱପ୍ନ ଭାବରେ ଦେଖିବେ । ଏଣୁ ଶିକ୍ଷକ ପିଲାମାନଙ୍କ ବନ୍ଧୁ, ସମଭାବାପନ୍ନ ବନ୍ଧୁ ହୋଇ ରହିବା ଉଚିତ । (୧୧,୧୫)

ମୁଁ ସବୁବେଳେ ବଡ଼ଛାତ୍ରମାନଙ୍କୁ ନିଜ ଲୋକଙ୍କର ସେବା କରିବା ପାଇଁ ଅନୁପ୍ରାଣିତ କରିଥାଏ । ଯେତେବେଳେ ଜଣେ ଲୋକଙ୍କର ସ୍ୱାର୍ଥ ପାଇଁ କାମ

କରୁଛି ସେଥିରୁ ସେ ସବୁଠାରୁ ବେଶୀ ଖୁସୀ ପାଇବା କଥା । ବ୍ୟକ୍ତିଗତ ସ୍ୱାର୍ଥ ସାମୂହିକ ସ୍ୱାର୍ଥ ଠାରୁ ମହତ୍ୱପୂର୍ଣ୍ଣ ଅଟେ । (୧୨,୨୨୬)

## ଶିକ୍ଷକଙ୍କର ସବୁଠୁ ବଡ଼ କଠିନ ପରୀକ୍ଷା

ମୋ ମତରେ ଶବ୍ଦ ଏବଂ ସୌନ୍ଦର୍ଯ୍ୟ କିଶୋରମାନଙ୍କର ମନକୁ ପ୍ରଭାବିତ କରିବାର ସବୁଠାରୁ ସୂକ୍ଷ୍ମବାଟ । ଏକ ସମୟରେ ବିଦ୍ୟାଳୟଗୁଡ଼ିକ ଅତ୍ୟଧିକ ସାହିତ୍ୟ ଓ ଭାଷାକୁ ଗୁରତ୍ୱ ନେଉଥିବାରୁ ସମାଲୋଚିତ ହେଉଥିଲେ । ଏଭଳି ସମାଲୋଚନା (ଏବେ ମଧ୍ୟ ଶୁଣାଯାଇପାରିବ) ବୁଝାମଣାର ଅଭାବ ଯୋଗୁଁ ହୋଇଥାଏ । ମୁଁ ବହୁତଭାବରେ ଏଥିରେ ଆଶ୍ଚର୍ଯ୍ୟ ହୋଇଥିଲି । କେତେକ ବିଦ୍ୟାଳୟରେ ଶବ୍ଦବଳର ଅଭାବ ଯୋଗୁଁ ଶୁଦ୍ଧ ଏବଂ ଉତ୍ତମ ଶିକ୍ଷାର ଅଭାବ ହୋଇ ଅନେକ ସମସ୍ୟା ଦେଖାଦିଏ । ଭାଷା ଓ ସାହିତ୍ୟର ଭଲ ଭିତ୍ତିଭୂମି ନଥାଇ ଛାତ୍ରମାନଙ୍କର ମାନସିକ ଆବେଗର ସମ୍ବେଦନଶୀଳତା ଏବଂ ତାଙ୍କର ନୈତିକ ସମ୍ପର୍କ ସହିତ ବିଶ୍ୱାସକୁ ଏକାଠି କରିବା ଅସମ୍ଭବ । (୨୨)

ଛାତ୍ରମାନଙ୍କ ସହିତ ଉତ୍ତମଭାବେ କଥାବାର୍ତ୍ତା ଜାଣିଥିବା ଶିକ୍ଷକ ଅଭେଦ୍ୟ ବୌଦ୍ଧିକ ଏବଂ ଆବେଗିକ କଳାର ଅଧିକାରୀ । କଥାକହିବା ଏବଂ ନିଜକୁ ଆବେଗିକ ଭାବରେ ପ୍ରକାଶ କରିବା ଶିକ୍ଷାର ପ୍ରଥମ ଏବଂ ସର୍ବଶ୍ରେଷ୍ଠ କଳା । ବିଦ୍ୟାଳୟରେ ଅନେକ ଦ୍ୱନ୍ଦ୍ୱର ସମାପ୍ତି ଦୁଃଖଦପୂର୍ଣ୍ଣ ହୋଇଥାଏ । ଏହାର କାରଣ ଶିକ୍ଷକ ଛାତ୍ରମାନଙ୍କ ସହିତ ଭଲଭାବରେ କଥାବାର୍ତ୍ତା ହୋଇ ପାରନ୍ତି ନାହିଁ । (୧୪,୧୨)

ଶିକ୍ଷକ ପିଲାମାନଙ୍କୁ କେବଳ ସଫଳ ଭାବରେ କହିପାରୁଛନ୍ତି ତାହା ତାଙ୍କର କଥାର ସତ୍ୟତା ଉପରେ ନିର୍ଭର କରୁଛି । ଛାତ୍ରମାନେ ଶିକ୍ଷକଙ୍କର କଥାର ସତ୍ୟାସତ୍ୟ ଉପରେ ଅତ୍ୟଧିକ ସମ୍ବେଦନଶୀଳ । ପିଲାମାନେ ଅସତ୍ୟ ଏବଂ କପଟଚାରିତା ଶବ୍ଦପାଇଁ ଅଧିକ ସମ୍ବେଦନଶୀଳ । (୧୪,୧୨)

ଶିକ୍ଷକ ଯେତେବେଳେ ପାଠ ପଢ଼ାନ୍ତି ତାଙ୍କର ଦୁଇ ତିନୋଟି ଆଚରଣରୁ ତାଙ୍କର ଦୁର୍ବଳ ପାଠପଢ଼ା ବିଷୟରେ ଜାଣିହେବ । ସେଗୁଡ଼ିକ ହେଲା, ଅନୁମୋଦନ, ନିଷିଦ୍ଧ ଏବଂ ନିନ୍ଦା । ଜଣେ କୌଶଳୀ ଶିକ୍ଷକ ଯେତେବେଳେ ଛାତ୍ରମାନଙ୍କୁ ପଢ଼ାଉଛନ୍ତି ସେଥିରେ ଅନେକ ମହତ୍ ଉଦ୍ଦେଶ୍ୟ ନିହିତ ଥାଏ । ତା' ମଧ୍ୟରୁ ନୈତିକ ସତ୍ୟତା ଓ ଏହାର ଧାରଣା ଏବଂ ଶ୍ରେଣୀ ବିଭାଗ ହେଉଛି ଗୋଟିଏ । (୧୪,୧୨)

ସାମ୍ୟବାଦୀ ତତ୍ତ୍ୱ ମଣିଷକୁ ଗୁରୁତ୍ୱ ଦିଏ ବୋଲି ଆମେ ଧରି ନେଉଛୁ । ଏହି ଧାରଣାକୁ ନିର୍ଦ୍ଦିଷ୍ଟଭାବେ ବିଦ୍ୟାଳୟ ଶିକ୍ଷାରେ ନୀତି ହିସାବରେ ରୂପାୟନ କରିବାକୁ ହେଲେ ପାଠପଢ଼ାରେ ଅତ୍ୟଧିକ ନିପୁଣ ଏବଂ ଦକ୍ଷ ହେବାକୁ ପଡ଼ିବ । (୧୪,୪)

ପ୍ରିୟପାଠକେ, ମୁଁ ଆଦେଶ, ଦାବି କିମ୍ବା ଶୃଙ୍ଖଳାରେ ବିଶ୍ୱାସ କରେନି ବୋଲି ଆପଣମାନଙ୍କୁ ବିଶ୍ୱାସ ଜନ୍ମେଇବା ପାଇଁ ମୋର କୌଣସି ଅଭିଳାଷ ନାହିଁ । ଶିକ୍ଷକଙ୍କର ନ୍ୟାୟସମ୍ମତ କଥା କହିବାର ସଦିଚ୍ଛା ନ ରହିଲେ, ସମାଜରୁ ଏକତ୍ରିତ ଭାବରେ ଦାବି ନ ଆସିଲେ, ଶିକ୍ଷା ସମ୍ପୂର୍ଣ୍ଣ ଭାବେ ବିଭ୍ରାଟ ହୋଇଯିବ । ଶିକ୍ଷକଙ୍କର ଶବ୍ଦଗୁଡ଼ିକ ଅବାସ୍ତବ ଓ ସଦୟ ଭାବରେ ହେବା ଛଡ଼ା କିଛି ହେବନାହିଁ । ଯୁବକ ଲୋକମାନେ ସମ୍ମାନ ଓ ସ୍ନେହ କରନ୍ତି ଏବଂ ଯାହାର ଦୃଢ଼ମନୋବଳ ଥାଏ ତାକୁ ମନେ ରଖନ୍ତି । ଅଳସୁଆ ଏବଂ ମେରୁଦଣ୍ଡ ବିହୀନ ବ୍ୟକ୍ତିଙ୍କୁ ସହ୍ୟ କରନ୍ତି ନାହିଁ । ଏଭଳି ଭାବପ୍ରବଣତାଗୁଡ଼ିକ ଆମ ଶିକ୍ଷା ବ୍ୟବସ୍ଥାରେ ଜ୍ଞାନ ସମ୍ମିଳିତ ସତ୍ୟ ଏବଂ ସୁବର୍ଣ୍ଣନୀତି ହୋଇ ରହିଛି । ମୁଁ ନିନ୍ଦା ଏବଂ ଆଗ୍ରହର ଫଳ ବିଷୟରେ ସମସ୍ତଙ୍କୁ ଚେତାଇ ଦେବି । ଯଦିଓ ବିଦ୍ୟାଳୟର ପରିବେଶରେ ଆଦେଶ ଏବଂ ଦାବି ବିନା ଆଉ କିଛି ନଥାଏ ଏବଂ ପୁଅ ଝିଅମାନଙ୍କର ବ୍ୟକ୍ତିଗତ ଇଚ୍ଛାକୁ ବିଚାରକୁ ନିଆଯାଇନଥାଏ । ଶିକ୍ଷକଙ୍କ ସଦିଚ୍ଛା ପିଲାମାନଙ୍କ ଉପରେ ପ୍ରଭାବ ପକାଏ ଏବଂ ସେମାନେ ସେମାନଙ୍କର କର୍ତ୍ତବ୍ୟରେ ସଚେତନ ହୁଅନ୍ତି । ଶିକ୍ଷକ ନିଜର କର୍ତ୍ତବ୍ୟର ଅଙ୍ଗୀକାରବଦ୍ଧତା ଓ ନୈତିକତାର ନିଜେ ଉଦାହରଣ ହୋଇ ଅନ୍ୟମାନଙ୍କୁ ଆକୃଷ୍ଟ ଏବଂ ଅନୁପ୍ରାଣିତ କରନ୍ତି । (୧୨, ୧୦୫)

ଠିକ୍ ଭାବରେ ବୁଝିବା ଏବଂ ତିକ୍ତ ଅନୁଭୂତିକୁ ଆତ୍ମମର୍ଯ୍ୟାଦା ସହିତ ଶୁଣିବା ଏପରିକି ବାସ୍ତବ ସତ୍ୟକୁ ବଡ଼ମାନଙ୍କଠାରୁ ଶୁଣିବା ପିଲାମାନଙ୍କ ପାଇଁ ବହୁତ କଷ୍ଟକର ବ୍ୟାପାର । ପିଲାମାନଙ୍କର ଏଭଳି ବ୍ୟବହାରରେ ପରିବର୍ତ୍ତନ ଆଣିବାକୁ ହେଲେ ଶିକ୍ଷକମାନଙ୍କୁ ଧୈର୍ଯ୍ୟ ଏବଂ ଅଧବସାୟ ଦରକାର । ଆମ ଶିକ୍ଷକମାନଙ୍କୁ ବହୁବାର ଅସମ୍ମତି ପ୍ରକାଶ କରିବାକୁ ପଡ଼ିଥାଏ କିମ୍ବା ଶହ ଶହ ଥର ବିଭିନ୍ନ ଦୋଷଗୁଣ ବାରିବାକୁ ପଡ଼ିଥାଏ । ଏହା ଏଭଳି ହେବା ଦରକାର ଯେପରି ଛାତ୍ରମାନେ ସେମାନଙ୍କର ମନୋଭାବକୁ ଲୁଚାଇ ରଖି, ଆମର ତିକ୍ତପୂର୍ଣ୍ଣ କଥାକୁ ପକ୍ଷପାତ ନଭାବି ପ୍ରକାଶ କରିବାକୁ ପ୍ରସ୍ତୁତ ହେବେ । ଯଦି ଆମ ପେଶରେ ସବୁଠାରୁ ଗୋପନୀୟ ଦିଗ ଏବଂ ମନଓ ହୃଦୟ ଜିଣିବାପାଇଁ ଗୋପନୀୟ ଦକ୍ଷତା କାହା ଉପରେ ନିର୍ଭର କରେ

ବୋଲି ପଚରାଯାଏ, ତେବେ ମୋର ଜବାବ ହେବ - ସମାଲୋଚନା । ଏକ ଅସମ୍ମତି ପ୍ରତି ସକାରାତ୍ମକ ମନୋଭାବରେ ଉନ୍ନତି ଆଣିବାକୁ ହେବ । (୩୧)

କୌଣସି ବାଟରେ ଶିକ୍ଷାରେ ନାସ୍ତିବାଚକ ଶବ୍ଦର ବ୍ୟବହାରକୁ ବନ୍ଦ କରିପାରିବା ନାହିଁ । ଅନେକ ଭୁଲ ଭଟକା ଏଥିରେ ଶାଖା ମେଲେ । କାରଣ ପିଲାମାନେ ଛୁଆବେଳୁ ନିଜ ଇଚ୍ଛାକୁ ନେଇ ଶବ୍ଦର ବ୍ୟବହାର କରିଥାନ୍ତି । 'ହୋଇପାରିବ', 'ଆବଶ୍ୟକ', ଏବଂ 'ନାହିଁ', ଶବ୍ଦଗୁଡ଼ିକ ପ୍ରତି ସକରାତ୍ମକ ମନଭାବ ଆଣିବାପାଇଁ ଶିଖିନଥାନ୍ତି । ଇଚ୍ଛା ଅନୁସାରେ ଜଣେ ବ୍ୟକ୍ତି ତାର ଦକ୍ଷତା ବୃଦ୍ଧି କଲା ବେଳେ ଜଣେ ଶିକ୍ଷକ ସମ୍ମାନ କରିବା ଉଚିତ । ବ୍ୟକ୍ତିକୁ ତଳିଆ ଦୃଷ୍ଟିରେ ଦେଖିବା କଥା ନୁହେଁ । ଯାହା ଶିକ୍ଷକ ଜଣକୁ ଦଣ୍ଡଦେଲା ବେଳେ ସାଧାରଣତଃ କରିଥାଆନ୍ତି । ମୋ' ବିଚାରରେ ବ୍ୟକ୍ତି ପ୍ରତି ସମ୍ମାନବୋଧ ବଢ଼େଇବା ହେଉଛି ଜଣେ ବ୍ୟକ୍ତିର ମୁଖ୍ୟ ନୈତିକ ଦାୟିତ୍ୱ, ଯାହା ଆମେ ତିଆରି କରିବା ପାଇଁ ଆହ୍ୱାନ କରୁଛୁ ।

ଶିକ୍ଷକଙ୍କ ମନ୍ତବ୍ୟ ଶିକ୍ଷା ପ୍ରତି ପ୍ରକ୍ରିୟାରେ କି ପ୍ରଭାବ ପକାଇବ ତାହା ଶିକ୍ଷକଙ୍କ ନୈତିକ ଗୁଣ, ନିପୁଣତା ଏବଂ ପ୍ରଭୁତ୍ୱ ଉପରେ ନିର୍ଭର କରେ । ଜଣେ ଛାତ୍ରର ବ୍ୟବହାରକୁ ଜଣେ ଶିକ୍ଷକ ଯେତେ କଠୋର ମୂଲ୍ୟାଙ୍କନ କଲେ ମଧ୍ୟ (ବିମୁଖ ହେଲେ ମଧ୍ୟ) ଜଣେ ଅନୁଭବୀ ଶିକ୍ଷକ କେବେହେଲେ ଏଭଳି ଦଣ୍ଡ ଦେବନାହିଁ, ଯାହା ଛାତ୍ରର ଜୀବନକୁ ବିପର୍ଯ୍ୟସ୍ତ କରି ପକାଇବ । ବିଚାରପୂର୍ଣ୍ଣ ସମାଲୋଚନାରେ ସବୁବେଳେ ବିସ୍ମୟକର ଏକ ଉପାଦାନ ଥାଏ । "ମୁଁ ତୁମମାନଙ୍କଠାରୁ ଏଭଳି ବ୍ୟବହାର ଆଶା କରୁନଥିଲି । ବର୍ତ୍ତମାନର ବ୍ୟବହାର ଠାରୁ ତୁମେ ଭଲ କାମ କରିବା ପାଇଁ ଅଧିକ ଦକ୍ଷ ବୋଲି ମୁଁ ଭାବୁଥିଲି । " ଏଭଳି ଶବ୍ଦଗୁଡ଼ିକ ସାଧାରଣତଃ ସିଧାସଳଖ ଭାବରେ ବ୍ୟବହାରରେ ହୁଏନାହିଁ । କିନ୍ତୁ ଛାତ୍ରମାନଙ୍କୁ ଶିକ୍ଷକଙ୍କ ଏଭଳି ମନୋଭାବ କଥା ଜଣାଇ ଦିଆଯାଏ - ଏଭଳି କରିବା ହେଉଛି ପ୍ରକୃତ ସମାଲୋଚନାର କଳା । ଯଦି ଜଣେ ଶିକ୍ଷକ ସୂକ୍ଷ୍ମ ଏବଂ ବିଚାର ନକରି ଦୋଷଗୁଣ ନବାରି ଗାଳି ଦେବାରେ ଅଭ୍ୟସ୍ତ ହୋଇଯାଆନ୍ତି, ତାହାଦ୍ୱାରା ଛାତ୍ରମାନଙ୍କର ଆତ୍ମମର୍ଯ୍ୟାଦା ହାନିହୁଏ । ଏହା ଛାତ୍ରର ତିକ୍ତତା, ହତାସ ମନୋଭାବ, ଜାଗ୍ରତ କରାଇ କ୍ରୋଧ ଓ ଅନ୍ତର୍ମୁଖୀ ହେବାରେ ସାହାଯ୍ୟ କରିଥାଏ । ଏହା ହେବାଦ୍ୱାରା ଛାତ୍ରମାନେ ଶିକ୍ଷକଙ୍କ ପ୍ରତି ବିମୁଖ ହୋଇଯାଆନ୍ତି । ଛାତ୍ରମାନଙ୍କର ଭଲ ଗୁଣ ବାଛିବାର କଳା ଉଭୟ କୋଠରତା ଓ କୋମଳତାର ମିଶ୍ରଣରେ

ହୋଇଥାଏ । ଜଣେ ଛାତ୍ର ତା'ର ଶିକ୍ଷକଙ୍କ ଭିତରେ କେବଳ ଯୁକ୍ତିଯୁକ୍ତ କଠୋରତା ଦ୍ୱାରା ନୁହେଁ, ସଦୟଭାବ ମଧ୍ୟ ରହିଛି । (୧୪,୧୨)

ବାଡ଼େଇବା ଏବଂ ମୁଥମାରିବା, ଶିକ୍ଷାଦାନ ପେଷା ପ୍ରତି ଏକ ଲଜ୍ୟାଜନକ ଏବଂ ଦୁଃଖଦ ଘଟଣା । କାରଣ ବିଦ୍ୟାଳୟଗୁଡ଼ିକୁ ଆମେ ପବିତ୍ର ଜାଗା ବୋଲି ମାନୁ, ଏଣୁ ସେଠାରେ ମଣିଷପଣିଆ, ଶୁଭକାମନା ଓ ସତ୍ୟ ହିଁ ମୁଖ୍ୟସ୍ଥାନ'ଗ୍ରହଣ କରିବା ଉଚିତ । ସେଠାରେ ଅନେକ ସମୟରେ ପିଲାମାନଙ୍କୁ ଭୟଭୀତ କରି ରଖାଯାଇଥାଏ । କାରଣ ପିଲାମାନେ ଜାଣିଥାନ୍ତି ଯେ ଶିକ୍ଷକମାନେ ସେମାନଙ୍କ ଖରାପ ବ୍ୟବହାର ଏବଂ ପାଠପଢ଼ାରେ ହେଳା କରୁଥିବା କଥା ସେମାନଙ୍କର ପିତାମାତାଙ୍କୁ କହିଦେବେ । ଫଳରେ ସେମାନଙ୍କ ପିତାମାତାମାନେ ସେମାନଙ୍କୁ ବାଡ଼େଇବେ । ଏଗୁଡ଼ିକ କ୍ରମାନ୍ୱୟରେ ସଜା ହୋଇଥିବା ମନଗଢ଼ା ଘଟଣା ନୁହେଁ. ଏହା ଅତ୍ୟନ୍ତ ଦୁଃଖଦାୟକ ସତ୍ୟ ଘଟଣା ଅଟେ । ମା'ମାନେ ମତେ ପ୍ରାୟ ସବୁବେଳେ ଏକଥାକୁ ନେଇ ଚିଠି ଲେଖୁଥିଲେ । ଏପରିକି ନିଜେ ପିଲାମାନେ ମଧ୍ୟ । ଯେତେବେଳେ ଶିକ୍ଷକ ପିଲାର ଖାତାରେ ଲେଖେ, "ତୁମ ପୁଅ/ଝିଅ କୌଣସି ଜିନିଷ ଶିଖିବା ପାଇଁ ଚାହୁଁନାହିଁ, ଏଥିପାଇଁ ଆପଣ କିଛି କୁହନ୍ତୁ, - ସେ ଏହା କହି ପିଲାର ବହି ବସ୍ତାନିରେ ଗୋଟିଏ ବେତବାଡ଼ ଦେଇଥାନ୍ତି ଯାହା ପିଲାର ବାପା / ମା' ସେ ଘରେ ପହଞ୍ଚିଲେ ତା ଉପରେ ବ୍ୟବହାର କରିବେ ।

ଆମେ ଯଦି ଗୋଟିଏ ଜଟିଳ ଅସ୍ତ୍ରୋପଚାର ହେଉଥିବା ସମୟର କଥା ଚିନ୍ତାକରିବା, "ଜଣେ ନିପୁଣ ଡାକ୍ତର ଘା'ର ଉପର ଅଂଶରେ ଅସ୍ତ୍ରୋପଚାର କରୁଥିବେ । ଯଦି ସେତେବେଳେ ଜଣେ ନିଷ୍ଠୁର ବ୍ୟକ୍ତି (ଘାତକ) ଗୋଟିଏ କୁରାଢ଼ିଧରି ଅସ୍ତ୍ରୋପଚାର କକ୍ଷକୁ ଆକସ୍ମିକ ଭାବରେ ପଶିଆସେ ଏବଂ ବେଲଟ୍‌ଟିକୁ ଛିଣ୍ଡାଇଦେଇ ଘା / କ୍ଷତ ଉପରେ ବଳପୂର୍ବକ ଆଘାତ କରେ । ଏହାର ପରିଣାମ କଥା ଭାବନ୍ତୁ । ମୁଥ ଦେବା ଏବଂ ମାଡ଼ଦେବା ଜଣେ ଘାତକର କୁରାଢ଼ିଠାରୁ କେବେ ଭଲ ନୁହେଁ ।

ପିଲାଟିଏ ତାକୁ ମାଡ଼ ଦେଉଥିବା ବ୍ୟକ୍ତିକୁ ଘୃଣା କରେ । ସେ ଯେତେବେଳେ ଜାଣେ ଯେ ତା' ବାପାଙ୍କ ମାଡ଼ ଦେବାର କାରଣ ଶିକ୍ଷକ, ସେତେବେଳେ ସେ ବାପା ଓ ଶିକ୍ଷକଙ୍କୁ ଏବଂ ଉଭୟ ବିଦ୍ୟାଳୟ ଏବଂ ବହିକୁ ଘୃଣା କରିବା ଆରମ୍ଭ କରେ । (୧୨,୧୭)

ନୀତିଗତ ଭାବରେ ମୁଁ ପିଲାମାନଙ୍କୁ କ୍ଷମା ଦେଇଥାଏ । (ଭୁଲବଶତଃ ସାମାନ୍ୟ ଅପରାଧ କରିଥିଲେ )। କ୍ଷମା ପିଲାର ଆତ୍ମମର୍ଯ୍ୟାଦାର ସବୁଠାରୁ ସମ୍ବେଦନଶୀଳ ସ୍ଥାନକୁ ପହଞ୍ଚ ପାରିବ । ଏହା ଛାତ୍ରକୁ ସେ କରିଥିବା ଭୁଲକୁ ସୁଧାରିବା ପାଇଁ ସକ୍ରିୟ କରାଇବାରେ ସାହାଯ୍ୟ କରିବ । ଜଣେ ପିଲା ତା' ଭୁଲ ପାଇଁ କେବଳ ଗଭୀର ଭାବରେ ପଶ୍ଚାତାପ କରେ ନାହିଁ ବରଂ ସକ୍ରିୟ ପ୍ରଚେଷ୍ଟା ଦ୍ୱାରା ଭୁଲ୍‌କୁ ସୁଧାରିବା ପାଇଁ ଚେଷ୍ଟା କରେ । ଅନେକ କ୍ଷେତ୍ରରେ ଏଭଳି ପରିସ୍ଥିତି ଦେଖାଦେଇଛି ଯେଉଁଠି କ୍ଷମାର ନୈତିକ ପ୍ରଭାବ କ୍ଷମତାଶାଳୀ ହୋଇଛି ଯାହା ଏ ପର୍ଯ୍ୟନ୍ତ ଦଣ୍ଡ ଦ୍ୱାରା ହୋଇନାହିଁ । ( ୫, ୪୨-୪୩)।

ନିଷେଧ ବା ବାରଣ କର୍ତ୍ତବ୍ୟଟାକୁ କୌଶଳରେ ବ୍ୟବହାର କରାଯାଇପାରିଲେ ଏହା ଫଳପ୍ରଦ ଏବଂ ଉପାଦେୟ ଶିକ୍ଷାଗତ ଉପାୟ ହୋଇପାରିବ । ବାରଣ କରିବା ଯଦି ଶିକ୍ଷକଙ୍କର ପିଲାମାନଙ୍କୁ ନିୟନ୍ତ୍ରଣପାଇଁ ହୋଇଥିବ ଆମେ ଅନେକ ବିପର୍ଯ୍ୟୟକୁ ବନ୍ଦ କରିଦେଇପାରିବା, ଯାହା ନିଜ ଜୀବନ କାଳ ମଧ୍ୟରେ ପାଇନାହାନ୍ତି । ( ଯେତିକି ପାଇବା କଥା ତା'ଠାରୁ ଅଧିକ ପାଇବା ପାଇଁ ଉତ୍କଣ୍ଠିତ କରାଇପାରିବ) । (୧୬)

ଅବଶ୍ୟ ଜଣେ ଅପରିପକ୍ୱ ବ୍ୟକ୍ତିର ଇଚ୍ଛାକୁ ଗୋଟିଏ ନୂଆ କରି ଫଳ ଧରୁଥିବା ଗଛର ଶାଖା ସହିତ ତୁଳନା କରାଯାଇପାରିବ । ଅନେକ ଛୋଟ ଛୋଟ ଶାଖା ଏଥିରେ ପ୍ରତୀୟମାନ ହୁଏ ଏବଂ ଏହା ଭିତରେ କେତେକ ଜଙ୍ଗଲୀ । ଫଳ ଦେଉଥିବା ଶାଖାକୁ ଛାଡ଼ି ଅନ୍ୟଗୁଡ଼ିକ ମାଳି କାଟିକୁଟି ସଫା କରିଦିଏ । ଶୈଶବ ଏବଂ ଯୁବାବସ୍ଥାରେ ମଣିଷର ଇଚ୍ଛା ସେହିଭଳି ହୋଇଥାଏ । ବିଦ୍ୟାଳୟରେ ପାଠ ପଢୁଥିବା ପିଲାଙ୍କର ଇଚ୍ଛା ଅସୀମ । ଅବଶ୍ୟ ସବୁ ସବୁଜ ଦେଖାଯାଉଥିବା ଚାରା (ଡ଼ାଳ)କୁ ମୁଣ୍ଡଗଣତି କରି ରଖାଗଲେ ସେଗୁଡ଼ିକ କୋଳାହଳପୂର୍ଣ୍ଣ ହେବ ଏବଂ ପ୍ରଚୁର ପରିମାଣର ଜଙ୍ଗଲି ଗଛର ଉପସ୍ଥିତି ଫଳ ଦେଉଥିବା ଗଛଡାଳକୁ ଶ୍ୱାସରୁଦ୍ଧ କରିପକାଇବ । ଯଦି ଘରର ବୟସ୍କ ଲୋକମାନେ ପିଲାର ସବୁଇଚ୍ଛାକୁ ପୂରଣ କରିବା ପାଇଁ ଚାହିଁବେ, ପିଲାର ଜଣେ ଅସ୍ଥିର ମସ୍ତିଷ୍କ ଏବଂ ପରିବାରର ଜଣେ ନିର୍ଦ୍ଦୟ ବ୍ୟକ୍ତି ହୋଇ ବାହାରିବ । ସେ ନିଜର ଇଚ୍ଛାର ଦାସ ହୋଇଯିବ । ପ୍ରକୃତ ଶିକ୍ଷା ପ୍ରକ୍ରିୟାରେ ଶିକ୍ଷକଙ୍କୁ / ମାଳିକୁ ଜଟିଳ ଏବ ତୀକ୍ଷଣ ଭାବରେ କାର୍ଯ୍ୟ କରିବାକୁ ପଡ଼ିବ । ଶିକ୍ଷକ ନିଶ୍ଚିତ ଭାବରେ ବୁଦ୍ଧିଆ, ଦୃଢ଼ପ୍ରତିଜ୍ଞ, ସମ୍ବେଦନଶୀଳ ଏବଂ କଠୋର ହୋଇଥିବେ । ସେ କୌଶଳରେ ଫଳଗଛକୁ ରଖି ଜଙ୍ଗଲି ଚାରାଗୁଡ଼ିକୁ କାଟି ପକାଇବେ । (୧୪,୧୨) ।

ପାଠପଢ଼ାରେ ଅନ୍ଧ / ଅଜ୍ଞାନତାର ଲକ୍ଷଣ ଅନେକ ପ୍ରଭାବ ରହିଛି । ଅନେକ ଶିକ୍ଷକ ଯେତେବେଳେ ଜଣେ ପିଲା ଉପରେ ଭରଷା ରଖନ୍ତି, ତାକୁ ମନେପକାଇ ଦିଅନ୍ତି ଯେ ଯଦିବା ତାର ଅନେକ ବଦ୍‌ଅଭ୍ୟାସ ଥିବାର ନଜିର ରହିଛି, ତଥାପି ତା' ଉପରେ ଭରଷା ରଖାଯାଇଛି । ଏଥିରୁ ସୂଚନା ମିଳେ ଯେ ଶିକ୍ଷକ ଜଣେ ଦୟାଳୁ ଲୋକ ଏବଂ ପିଲାମାନେ ତାଙ୍କ ନିଜ ତରଫରୁ ମଧ୍ୟ ସେଭଳି ଭଲ ହେବା ଉଚିତ । ଏଭଳି ଶବ୍ଦଗୁଡ଼ିକ ପିଲାର ଘା'ରେ ଲୁଣ ଦେଲାଭଳି କାମ କରେ । ଏହାଦ୍ୱାରା ସେ ଭାବେ ଶିକ୍ଷକ ତା' ଉପରେ ବିଶ୍ୱାସ ରଖିବା ପାଇଁ ସମସ୍ତ ବ୍ୟବସ୍ଥା କରିଛି । ଏହା କେବଳ ପରିସ୍ଥିତିକୁ ନିଜ ଅକ୍ତିଆରରେ ରଖିବା ପାଇଁ ହୋଇଛି । ସବୁବେଳେ ନହେଲେ ମଧ୍ୟ ସେ ଶିକ୍ଷକଙ୍କ ପ୍ରଚେଷ୍ଟାକୁ ସହଯୋଗ କରେ ନାହିଁ । (୧୪,୧୨)

ଜଣେ ବୟସ୍କ ଲୋକ ଅନ୍ୟାୟକୁ ଭୁଲ୍‌ର ଫଳ ବୋଲି ହାଲୁକା ଭାବରେ ଗ୍ରହଣ କରିନିଏ । ଏଭଳି କ୍ଷେତ୍ରରେ ପିଲାଟି ପକ୍ଷରେ ଜୀବନର ଜଟିଳତାକୁ ବୁଝିବା ତା' ପକ୍ଷରେ ସମ୍ଭବ ହୋଇନଥାଏ । ପିଲାଟିକୁ ଯେତେବେଳେ କବି ସଭାରେ ଗାଳି କରାଯାଏ କିମ୍ବା ତାଚ୍ଛଲ୍ୟ କରି ହସାଯାଏ ସେତେବେଳେ ସେ ଅନ୍ୟାୟକୁ ବୁଝିପାରେ । ବଡ଼ମାନଙ୍କର ପିଲାଙ୍କ ପ୍ରତି ଅନୁକମ୍ପା ସବୁଠାରୁ ଗୁରତ୍ୱପୂର୍ଣ୍ଣ ଏବଂ ଗୁରୁତର ମଧ୍ୟ । (୧୩,୩)

ଜଣେ ଉତ୍ତେଜିତ ପିଲା ନ୍ୟାୟ ଓ ନିଜର ଶିକ୍ଷକଙ୍କ ଉପରୁ ବିଶ୍ୱାସ ହରାଏ ନାହିଁ । ପୁନଶ୍ଚ ସେ ତା' ଶିକ୍ଷକମାନଙ୍କଠାରୁ ସତ୍ୟପୂର୍ଣ୍ଣ କଥା ଶୁଣିବା ପାଇଁ ଇଚ୍ଛା ପ୍ରକାଶ କରେ ଏବଂ ସେ ଠିକ୍ ବ୍ୟବହାର ପାଇବ ବୋଲି ଆଶା କରେ । ଜଣେ ବୁଦ୍ଧିମାନ ଶିକ୍ଷକ ତାର ଭୁଲ୍‌କୁ ଅନୁଭବ କରି ସାରିଲା ପରେ ଚାପର ଉପଶମ ପାଇଁ ଅନେକ ଗୁଡ଼ାଏ ବାଟ ଖୋଜେ । ଯଦି ଜଣେ ଶିକ୍ଷକଙ୍କୁ ପାଠ ପଢ଼େଇବାର ପ୍ରାଥମିକ କଳା ଜଣାନଥାଏ, ବିପରୀତ ଭାବରେ ସେ ପିଲାର ଆନ୍ଦୋଳନାତ୍ମକ ମନୋଭାବକୁ ଶ୍ୱାସରୁଦ୍ଧ କରିବାପାଇଁ ଚେଷ୍ଟା କରନ୍ତି ଏବଂ ସେଥିରୁ ପିଲାର ମୁକୁଳିବା ବାଟ ମଧ୍ୟ ବନ୍ଦ କରି ଦେଇଥାନ୍ତି । ଏହାଦ୍ୱାରା ପିଲାଟି ମାନ୍ଦା ଏବଂ ବିନୀତ ହୋଇ ଯାଇଥାଏ । ବେଳେ ବେଳେ ଏଥି ପାଇଁ ତାକୁ କେତେ ମୂଲ୍ୟଦେବାକୁ ପଡିଥାଏ ? ( ୧୩,୩)

ନିର୍ଯ୍ୟାତନା ମନୋଭାବକୁ ବିପଦଜନକ ବିଶୃଙ୍ଖଳା କୁହାଯାଇପାରିବ । ହତୋତ୍ସାହିତ ଏବଂ ଉତ୍ତେଜିତ ହେଉଥିବା ପିତାମାତାଙ୍କଠାରୁ ସାଧାରଣ ପିଲାମାନେ

ଏଭଳି ମନୋଭାବରେ କ୍ୱଚିତ୍ ସମ୍ମୁଖୀନ ହୋଇଥାଆନ୍ତି । ଥରେ ଅନ୍ୟାୟ ଭାବରେ ସମାଲୋଚିତ ହେଲେ ପିଲାଟି ତା' ଚାରିଆଡ଼େ ଅନ୍ୟାୟ ହେବାର ଅନୁଭବ କରେ ।

ଯେତେ ଅଧିକ ସମୟ ପିଲାଟି ଏଭଳି ଅବସ୍ଥା ଦେଇ ଗତିକରେ ସେତିକି ବେଶି ତାର ଇଚ୍ଛାଶକ୍ତି ଦୁର୍ବଳ ହୋଇଯାଏ । ଏଭଳି ପରିସ୍ଥିତି ଚାଲୁ ରହିଲେ, ତା' ପାଇଁ ଏକାଠି ଜୀବନ ବିତେଇବା କଷ୍ଟକର ହୋଇପଡ଼େ । ପାଠ ପ୍ରସ୍ତୁତ ସମୟରେ ସେ ପାଠପଢ଼ାର ବିଷୟବସ୍ତୁ ବାବଦରେ କମ୍ ଚିନ୍ତାକରେ ଏବଂ ତା'ର ଶିକ୍ଷକଙ୍କ ସହିତ କେମିତି ଦେଖାହେବ ଏବଂ ଶିକ୍ଷକ ତାକୁ କେତେ କଠୋର ହେବେ ସେ ବିଷୟରେ ବେଶି ଚିନ୍ତା କରେ । ପିଲାଟିର ମନରେ ନିର୍ଯ୍ୟାତନା ମନୋଭାବ ଧିରେ ଧିରେ କେବଳ ଶିକ୍ଷକଙ୍କ ପ୍ରତି ନୁହେଁ, ସାଧାରଣ ଭାବରେ ବିଦ୍ୟାଳୟକୁ ନେଇ ସମ୍ପୃକ୍ତ ଥିବା ସମସ୍ତ ବିଷୟରେ ଘୃଣାଭାବ ଜାଗ୍ରତ କରେ । ସେ ବିଦ୍ୟାଳୟକୁ ନ ଯାଇ କିପରି ଘରେ ରହିବ ସେଥିପାଇଁ ଚିନ୍ତାକରେ । ଯେତେବେଳେ ଏହି ଅଭ୍ୟାସ ପୁରୁଣା ହୋଇଯାଏ, ସେ ପ୍ରତାରଣା କରିବା ଶିଖେ । ଏଭଳି ପିଲା ଯେତେବେଳେ ତା' ଶିକ୍ଷକ ଏବଂ ତା' ମା'ଙ୍କୁ ଆଖିରେ ଆଖି ମିଳାଇ ଦେଖେ, ମିଛଗୁଡ଼ିକ ତା' ପାଇଁ ସତ୍ୟ ହୋଇ ଦେଖାଯାଆନ୍ତି । ଯେତେବେଳେ ସେ ପାଠପ୍ରସ୍ତୁତି କଥା ଚିନ୍ତା କରେ ତା'ର ନିର୍ଦ୍ଦିଷ୍ଟ ଭାବରେ ଏଭଳି ଘଟେ ଏବଂ ପିଲାଟି ନିଜେ ହୃଦ୍‌ବୋଧ କରେ ଯେ ତାର ମିଛ ହେଉଛି ସତ । (୧୩,୩)

ବାସ୍ତବରେ ବିଷାଦପୂର୍ଣ୍ଣ ଅବସ୍ଥାକୁ ଅନ୍ୟ ପକ୍ଷରେ ଛଳନାପୂର୍ଣ୍ଣ ଉଦାସୀନତା କୁହାଯାଇ ପାରିବ । ପିଲାଟି ସେ ଉଦାସିନ ନୁହେଁ ବୋଲି ଆଳ ଦେଖାଏ । ସବୁଦିନ ପାଉଥିବା ଖରାପ ବ୍ୟବହାର ଏବଂ ପିତାମାତାଙ୍କର ବିଦ୍ୟାଳୟ ଯିବାକୁ ହୁକୁମ୍‌ନାମା ପ୍ରତି ବେଖାତିରି ମନୋଭାବ ଜରିଆରେ ସକ୍ରିୟ ପ୍ରତିରୋଧ କରିବା ତା ପାଇଁ ବାଟ ହୋଇଥାଏ । ପରୀକ୍ଷାରେ ଅଳ୍ପ ନମ୍ବର ପାଇଥିବା ପିଲାଟି ଯେତେବେଳେ ପରୀକ୍ଷାଖାତା ଫେରିପାଏ , ସେଥିରେ ନିଜର ଭୁଲଭଟକାକୁ ନଦେଖି ଖାତାକୁ ଫିଙ୍ଗିଦିଏ । ଅଭିମାନରେ ବନ୍ଧାହୋଇ ସବୁବେଳର ଉତ୍ତେଜନା ଏବଂ ଯନ୍ତ୍ରଣାକୁ ଲୁଚାଇବାକୁ ଚେଷ୍ଟା କରିବା ପାଇଁ ସେ ମୁକ୍ତ ଏବଂ ସହଜ ଭାବରେ ବୁଲାବୁଲି କରେ । ଗଭୀରଭାବରେ ଅଭିମାନ ଥିବା ପିଲାମାନଙ୍କର ଛଳନାପୂର୍ଣ୍ଣ ଉଦାସୀନତା ଆସିବାର ସମ୍ଭାବନା ଥାଏ । (୧୩,୩)

କ୍ରିୟାଶୀଳ, ଶକ୍ତିସମ୍ପନ୍ନ ଏବଂ ଆବେଗମୟ ପିଲାମାନଙ୍କ ମଧ୍ୟରେ ଉପରଠାଉରିଆ ଢଙ୍ଗ ଦେଖା ଯାଇନଥାଏ । ପିଲାଟିର ଅନ୍ତର୍ନିହିତ ଜଗତକୁ ବୁଝିନପାରି ଶିକ୍ଷକ ସେମାନଙ୍କର କାର୍ଯ୍ୟକଳାପ ଏବଂ ଶକ୍ତିକୁ ଏକଜିଦିଆ, ଖିଆଲି ମନୋଭାବ ଏବଂ ବଦ୍‌ମାସୀ ହିସାବରେ ଗ୍ରହଣ କରନ୍ତି, ଯାହା ଶିକ୍ଷକଙ୍କୁ ଅତ୍ୟଧିକ ଅବାନ୍ତର ଓ ଅନାବଶ୍ୟକ ଲାଗେ । ବେହିସାବୀ ଭାବରେ ସେ ଦମନ କରନ୍ତି । ଏହା ଦ୍ୱାରା ପିଲାଟି ଅପମାନିତ ହୋଇଥାଏ । ଶିକ୍ଷକ କ'ଣ ଚାହୁଁଚନ୍ତି ପିଲାଟି ବୁଝି ପାରେନି । କାମ ଓ ପ୍ରକୃତି କିପରି ଅଲଗା ହୋଇ ପାରିବ ସେ ଜାଣିପାରନ୍ତି ନାହିଁ । କାର୍ଯ୍ୟଗୁଡ଼ିକ କିନ୍ତୁ ପିଲାର ସ୍ୱଭାବକୁ ନେଇ ହୋଇଥାଏ । (୧୩,୩)

ବାସ୍ତବରେ ଏହା ମନେରଖିବା ଉଚିତ ଯେ ଛଳନାପୂର୍ଣ୍ଣ ଉଦାସୀନତା କେବଳ ପୁଅପିଲାଙ୍କ କ୍ଷେତ୍ରରେ ଦେଖାଯାଏ । ପ୍ରାୟତଃ ପ୍ରଥମ,ଦ୍ୱିତୀୟ ଏପରିକି ତୃତୀୟ ଶ୍ରେଣୀର ପିଲାମାନେ ସେମାନଙ୍କର ପ୍ରକୃତ ଶକ୍ତି ପ୍ରଦର୍ଶନ କରି ଅନେକ ଭାବରେ ସଫଳ ହୋଇଥା'ନ୍ତି । ତା'ପରେ କିଛି ଅଦ୍ଭୁତ ପରିସ୍ଥିତି ଦେଇ ସେମାନେ ପାରି ହୁଅନ୍ତି । ସେମାନଙ୍କ ମଧ୍ୟରେ ବିଦ୍ୟାଳୟରେ ଅକସ୍ମାତ ଉପସ୍ଥାନ କମିଯାଏ ଏବଂ ସେହି ଅନୁସାରେ ସେମାନଙ୍କର ପରୀକ୍ଷାରେ ନମ୍ବର ମଧ୍ୟ କମିଯାଏ । ଏହାର କାରଣ ଅତି ସ୍ପଷ୍ଟ । ପିଲାମାନେ ଅତି ସହଜ ଭାବରେ ପ୍ରାୟତଃ ବିନା ପରିଶ୍ରମରେ ଫଳ ପାଉଥିଲେ, ଶିକ୍ଷକ ଏକଥାକୁ ଠିକ୍ ସମୟରେ ଲକ୍ଷ୍ୟ କରିପାରନ୍ତିନି । ସେମାନେ ଭଲନମ୍ବର ପାଇବା ସହିତ ଅଭ୍ୟସ୍ତ ହୋଇ ଆଗକୁ ବଢ଼ନ୍ତି ।

ତା'ପରେ ସେମାନେ ଯେତେବେଳେ ପ୍ରଥମଥର ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ କାମ କରିବାକୁ ବାଧ୍ୟ ହୁଅନ୍ତି ଏବଂ କରିବାପାଇଁ ଚେଷ୍ଟା କରନ୍ତି, ସେମାନେ ଏଥିରେ କ'ଣ ସମ୍ପୃକ୍ତ ଅଛି ଏବଂ କେମିତି ଆଗେଇବାକୁ ହେବ ଜାଣିପାରନ୍ତି ନାହିଁ । ସେମାନେ ସେମାନଙ୍କର ଉଶୃଙ୍ଖଳାର ଶିକାର ହୁଅନ୍ତି । ଖରାପ ନମ୍ବର ପାଇଲା ପରେ ସେମାନଙ୍କ ମନୋବଳ ଭାଙ୍ଗିଯାଏ । ସେହି ସମୟରେ ସେମାନଙ୍କର ବଡ଼ିମା ଆଘାତପାଇବାରୁ ହିଁ ବିପର୍ଯ୍ୟୟ ହୁଏ । ଛଳନାପୂର୍ଣ୍ଣ ଉଦାସୀନତା ଅନେକ ଘଟଣା ସହିତ ଅତ୍ୟନ୍ତ ବିଷାଦପୂର୍ଣ୍ଣ ଭାବରେ ଆସେ । କେବଳ ଏକାଗ୍ରତା କାର୍ଯ୍ୟ ଏବଂ ଶକ୍ତି ତାକୁ ହତାଶ ଏବଂ ବ୍ୟାକୁଳତାରୁ ମୁକୁଳିବା ପାଇଁ ସାହାଯ୍ୟ କରେ । ( ୧୩,୩)

କେତେକ ନିର୍ଦ୍ଦିଷ୍ଟ ଶିକ୍ଷକ ପିଲାମାନଙ୍କର ବିଷାଦପୂର୍ଣ୍ଣ ଅବସ୍ଥାକୁ ସେମାନଙ୍କର ଶାନ୍ତ ଏବଂ ସରଳ ଜୀବନଯାପନର ପ୍ରକ୍ରିୟା ହିସାବରେ ଧରି ନିଅନ୍ତି । ଏହାକୁ ଭୟ କରିବାର କିଛି ନାହିଁ ବୋଲି କୁହନ୍ତି । କିଶୋର ବୟସର ପିଲାଟି ଅନୁଭବ

କରୁରେଯେ ସେ ଆଉ ଅଧିକ ଉନ୍ନତି କରିପାରିବ ନାହିଁ ଏବଂ ସେହି କାରଣରୁ ସେ ଉଦାସୀନ ରହେ । ବିଭିନ୍ନ ମାନସିକ ଅବସ୍ଥାଗୁଡ଼ିକ ଜାଣିବାପାଇଁ ଅନନ୍ୟ ପାଠଦାନ କଳା, ସମ୍ବେଦନଶୀଳତା ଏବଂ ବିଚାରଶୀଳ ମନର ଆବଶ୍ୟକତା ରହିଛି । (୧୩,୩)

ଅନାସକ୍ତ ଛଳନାପୂର୍ଣ୍ଣ ଉଦାସୀନତାର ବିପରୀତ ଯଦିବା କିଶୋର ବୟସର ପିଲାମାନେ ଆକ୍ରାନ୍ତ ହୋଇଥାନ୍ତି, ଲଜ୍ୟାଶୀଳ ଏବଂ ଦୁର୍ବଳ ମନୋବଳ ପୁଅମାନେ ମଧ୍ୟ ଏଥିରେ ପୀଡ଼ିତ ହୁଅନ୍ତି । ଅବଶ୍ୟ ଅନେକ ତ୍ରୁଟି ଆସିବାର ବହୁ ଆଗରୁ ଏହା ଦୃଷ୍ଟିଗୋଚର ହୁଏ ଏବଂ ଅନ୍ୟ ତ୍ରୁଟିମାନଙ୍କ ଠାରୁ ଅଧିକ ବେଗରେ ବୃଦ୍ଧି ହୁଏ । ଗଭୀରତମ ଅନାସକ୍ତଗୁଡ଼ିକ ଯେତେଶୀଘ୍ର ସମ୍ଭବ - ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରୁ ମୁକାବିଲା କରାଯାଇପାରିବ । ଏହାକୁ ମନେରଖିବା ଉଚିତ ଯେ ବାରମ୍ବାର ନହେଲେ ମଧ୍ୟ କେତେକ ସାଧାରଣ ବାହ୍ୟ ଅନୁପଲବ୍ଧି, ଅଜୀର୍ଣ୍ଣ, ଶ୍ୱାସ ପ୍ରଶ୍ୱାସ କିମ୍ବା ହୃଦ୍‌ପିଣ୍ଡ ସଂଚାଳନ ବ୍ୟବସ୍ଥାରେ ରୋଗ ହୁଏ । (୧୩,୩)

ଅନାସକ୍ତ ହେବାକୁ ମୁଁ ସବୁଠାରୁ ବିପଦପୂର୍ଣ୍ଣ ମାନସିକ ଅବସ୍ଥା ଭାବରେ ଗ୍ରହଣ କରେ । ଉଦାସୀନ ଥିବା ଛାତ୍ରମାନଙ୍କ ଭିତରେ ନିର୍ଦ୍ଦିଷ୍ଟ ଭାବରେ ଅନ୍ତର୍ନିହିତ ଶକ୍ତିର ପୁନଃଜାଗରଣ କରିବା କଷ୍ଟକର । କାରଣ ସେମାନେ ଉପରେ ଦର୍ଶାଯାଇଥିବା ରୋଗଗୁଡ଼ିକ ଦ୍ୱାରା ଦୁର୍ବଳ ହୋଇଯାଇଥାଆନ୍ତି ।

ଏପରିକି ଏଭଳି ପରିସ୍ଥିତି ଏକା ସମୟରେ ବହୁତ ଦୃଷ୍ଟିଗୋଚର ହୁଏ ଏବଂ ଏହାକୁ ଜାଣିବା ପାଇଁ ଅସୁବିଧା ହୁଏ ନାହିଁ । କର୍ମଠ ଏବଂ ଅଧ୍ୟବସାୟୀ ପିଲାମାନେ, ଯେଉଁମାନେ ସେମାନଙ୍କ ସଫଳତା ପାଇ ପରିଶ୍ରମ କରିବା ଉଚିତ ସମସ୍ତେ ଅନେକ ସମୟରେ ଅନାସକ୍ତ ହୋଇପଡ଼ନ୍ତି । ପିଲାଟି ଅଧ୍ୟବସାୟ ବଳରେ କାମ କରି ଚାଲିଛି, କୌଣସି ଏକ ନିର୍ଦ୍ଦିଷ୍ଟ ସମୟରେ ତାର ଶକ୍ତି ସେ ହରାଇବସେ । ଅନେକ ସମୟରେ ମୁଖ୍ୟତଃ ଶାରୀରିକ ଶକ୍ତି, ଯେଉଁ ଶିକ୍ଷକର କେବଳ କାମ ଉପରେ ନଜର ଥାଏ, ଏଭଳି କାମର ଫଳ ପାଇଁ ପିଲାଙ୍କୁ କେତେ ଶକ୍ତି ଖଟାଇବାକୁ ପଡ଼ିଛି ସେଥିପ୍ରତି ନଜର ନଥାଏ ।

ପିଲାଙ୍କର ବି ଶକ୍ତି କମିଯାଇଛି, ତା'ପରେ ସେ ପରୀକ୍ଷାରେ କମ୍ ନମ୍ବର ରଖିଛି କିମ୍ବା ଶିକ୍ଷକଙ୍କଠାରୁ ଗମ୍ଭୀର ଚେତାବନି ପାଇଛି କିମ୍ବା ପିତାମାତାଙ୍କୁ ବିଦ୍ୟାଳୟକୁ ଡକାଯାଇଛି । ଏପରି ଅବସ୍ଥାରେ ତାର ମନୋବଳ କମିଯାଇଥାଏ । ତାର ସ୍ନାୟବିକ ପଦ୍ଧତି ଅଳ୍ପ ସମୟପାଇଁ ଅଚଳ ହୋଇଯାଏ । ଉତ୍ସାହ

ଯେତେବେଳେ ମରିଯାଏ, ସେତେବେଳେ ବିଷାଦ ଚାଲିଆସେ । ପିଲାଟି ନୂଆ ବିପଦକୁ ଆହ୍ୱାନ କରେ । ସେଥିରୁ ସେ ମୁକୁଳିପାରେ ନାହିଁ ଏବଂ ଏହାର କାରଣ ମୁଖ୍ୟତଃ ପରୀକ୍ଷାରେ ନମ୍ବର ନପାଇବାର ଭୟ ବୋଲି ଶିକ୍ଷକଙ୍କୁ ଜଣାନଥାଏ । (୧୩,୩)

ଏପ୍ରକାର ଭୟ କେବଳ ପରୀକ୍ଷାରେ ସନ୍ତୋଷଜନକ ନମ୍ବର ନପାଇବାର ଭୟ ନୁହେଁ, ଏହା ଭୟଙ୍କର ଆବେଗିକ ଦୁଃଖର ପ୍ରଭାବ । ଏପରି ଅବସ୍ଥା ଖୁବ୍ କମ୍ ବୟସରୁ ଆରମ୍ଭ ହୋଇଥାଏ । ପାଠପଢ଼ାର ପ୍ରାରମ୍ଭରୁ ହିଁ ଏହା ଆରମ୍ଭ ହୋଇଯାଇଥାଏ । ଯେତେଶୀଘ୍ର ଏହା ଆରମ୍ଭ ହୁଏ, ଏହାକୁ ଚିହ୍ନଟ କରିବାକୁ ସେତିକି କଷ୍ଟହୁଏ । ଭୟର ପରିପ୍ରକାଶ ଏବଂ ବୌଦ୍ଧିକ ବିକାଶର ସ୍ଥାଣୁତା ମଧ୍ୟରେ ପ୍ରଭେଦ ଜାଣିବା ଅଧିକ କଷ୍ଟକର, 'ଚିତ୍ରକାର' କ'ଣ ଜାଣିନଥିବା ପିଲାଟିର କଥାଭାବ । ଏକାନ୍ତ ଭାବେ ପିଲାଟିକୁ ବଡ଼ପାଟିରେ ଭର୍ତ୍ସନାକୁ ସମ୍ମୁଖୀନ ହୁଏ ସେ ସ୍ୱଭାବିକ ଭାବରେ ଭୟଭୀତ ହୋଇଯାଏ । ସେ ଭୟରେ ଏଭଳି ଅଚଳ ହୋଇପଡ଼େ ଯେ ତା ନାଁ ମଧ୍ୟ ତାକୁ ଶୁଣାଯାଏ ନାହିଁ । ଶିକ୍ଷକ କହୁଥିବା ଶବ୍ଦଗୁଡ଼ିକର ଅର୍ଥ ତା' ପାଇଁ ମୂଲ୍ୟହୀନ ହୋଇ ପଡ଼େ । ଶିକ୍ଷକ କହୁଥିବା କଥା ସେ ବୁଝିପାରେ ନାହିଁ । ଏପରି ଭାବରେ ୧୫-୨୦ ମିନିଟ୍‌ର ପାଠପଢ଼ା ଛାତ୍ରମାନଙ୍କ ସଚେତନ ମନରୁ ପୋଛି ହୋଇଯାଏ ।

ଏଭଳି ଶିକ୍ଷକ ବି ଅଛନ୍ତି ଯେଉଁମାନେ ନିର୍ଦ୍ଦିଷ୍ଟ ପିଲାର ବିଫଳତାକୁ ଆଶ୍ଚର୍ଯ୍ୟ ହୋଇ ଦେଖିଥାନ୍ତି । ଶ୍ରେଣୀର ସବୁପିଲା ଚିତ୍ରାଙ୍କନରେ ଗୋଲ କରିବା ଶିଖିଯାଇଥିବାବେଳେ ପିଲାଟିଏ ସିଧା ଗାର ଟାଣିବାଠାରୁ ଆଗକୁ ଅଗେଇ ପାରୁନଥାଏ । ଏଭଳି କ୍ଷେତ୍ରରେ ଶିକ୍ଷକ ସେହି ପିଲାର ବିଫଳତାକୁ ନେଇ ଅସୁଖୀ ହୁଅନ୍ତି । ତା' ଭିତରେ ଚିତ୍ର ଆଙ୍କି ପାରୁନଥିବା ପିଲାଟି ଅମନଯୋଗୀ ଏବଂ କଳ୍ପନାହୀନ ବୋଲି ସମସ୍ତେ ଧରିନିଅନ୍ତି । (୧୩,୩)

କୁଣ୍ଠିତ, ଭୟକାତର ପିଲାଟିଏ ସ୍ୱଇଚ୍ଛାରେ ଚିନ୍ତା କରିପାରେ ନାହିଁ । ତା' ମସ୍ତିଷ୍କର ଚିନ୍ତାଧାରା ଛିନ୍ନଭିନ୍ନ ହୋଇଯାଇଥାଏ । ଭୟକଥା କହିବାରେ ବାଧା ସୃଷ୍ଟି କରେ ଏବଂ ଶିକ୍ଷକ ପାଖରେ ପିଲାର ପାଟି ବନ୍ଦ ହୋଇଯାଇଥାଏ । ପାଠ ପଢ଼ା ଛାଡ଼ିଦେଲେ ପିଲାଟି ସାଧାରଣ ପିଲାଭଳି ବ୍ୟବହାର କରିଥାଏ । ପିଲାଟିର ମା' କିମ୍ବା ବାପା ଏବଂ ତା'ର ଗୁରୁଜନମାନେ ତାକୁ ପାଠପଢ଼ାର ସଙ୍କଟ ଭିତରୁ ମୁକୁଳାଇ ଚାଷକାମରେ ସାହାଯ୍ୟ କରିବା ପାଇଁ କହିଥାନ୍ତି । ତା'ପରେ ସେ କେବଳ

ଚାଷକାମରେ ଉତ୍କଣ୍ଠାର ସହିତ କାମ କରେନାହିଁ, ସେ କାମଟିକୁ ଜଣେ ବୁଦ୍ଧିମାନ୍, ଜ୍ଞାନବାନ୍, ଜୀବନ୍ତ ଓ ଉଦ୍ୟମଶୀଳ ବ୍ୟକ୍ତି ହିସାବରେ ଆନନ୍ଦରେ କରିଥାଏ ।

ଅନେକ କ୍ଷେତ୍ରରେ ପିଲାଟି ଭୟକୁ ଶେଷରେ ପାର ହୋଇଥାଏ । ତଥାପି ଏଭଳି ଭୟର ପ୍ରଭାବରେ କେତେ ବର୍ଷ ପାଇଁ ତାର ନୈତିକ ବିକାଶ ବାଧା ପାଇଥାଏ । ତାର କେତେକ ମୂଲ୍ୟବାନ ବର୍ଷ ମୂଲ୍ୟହୀନ ହୋଇଯାଏ । (୧୩,୩)

ଅତ୍ୟଧିକ ସ୍ନାୟବିକ ଉତ୍ତେଜନାର ଗଭୀର ପ୍ରତିକ୍ରିୟା ହେଉଛି ତିକ୍ତତା । ଆଉ ମଧ୍ୟ ଏହା ଅନ୍ୟାୟ ଆଚରଣର ଏକ ପ୍ରତିକ୍ରିୟା । ଯୁବସୁଲଭ ବୟସର ପିଲାମାନଙ୍କ ଭିତରେ ସାଧାରଣ ଭାବରେ ବିଦ୍ୟାଳୟ ଏବଂ ନିର୍ଦ୍ଦିଷ୍ଟ ଭାବରେ ଶିକ୍ଷକଙ୍କୁ ନେଇ ତିକ୍ତତା ଏକ ନିୟମ ହୋଇ ଦେଖାଦିଏ । ତିକ୍ତତା ଭିତରେ ଥିବା ଲୋକଙ୍କୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ ବା ନିର୍ଦ୍ଦୟ ହେବା ନିହାତି ଭାବେ ଅପରାଧ । ଏହାର ଫଳାଫଳ ବହୁତ ଖରାପ ହୋଇପାରିବ । (୧୩,୩)

ବିଦ୍ୟାଳୟର ଏଭଳି ଅବସ୍ଥାକୁ ବଦଳେଇବା ପାଇଁ କ'ଣ କରାଯିବା ଉଚିତ୍ ? ବିଦ୍ୟାଳୟର ଏଭଳି ଅବସ୍ଥା ବିଷୟରେ ସଚେତନ ହେବା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା । କେତେକ ଶିକ୍ଷକ ଯେଉଁମାନେ ପିଲାଙ୍କ ଆବେଗିକ ଜୀବନକୁ 'ବନ୍ଦ ହୋଇଥିବା ବହି' ସହିତ ତୁଳନା କରି ଥାଆନ୍ତି ଏବଂ ପଶ୍ଚାତାପ କରିବା କଥା ଭାବିପାରନ୍ତି ନାହିଁ । ସାମ୍ୟବାଦୀ ଶିକ୍ଷାର ସମ୍ପାଦନ ସମ୍ବନ୍ଧରେ ଶିକ୍ଷକମାନଙ୍କର ସଭା, ସେମିନାରରେ ପିଲାମାନଙ୍କର ମାନସିକ ଅବସ୍ଥା ଓ ଔପଚାରିକ ସମସ୍ୟା ବିଷୟ ସ୍ଥାନ ପାଇବା ଉଚିତ ।

ଶିକ୍ଷା ବିଷୟକ ମତବାଦ୍‌ରେ ମନୋବିଜ୍ଞାନ ମୁଖ୍ୟ ପୁରୁଣାକାଳିଆ ମନୋବିଜ୍ଞାନକୁ ଏହା ଗ୍ରହଣ ନକରି ମନୋବିଜ୍ଞାନର ନୂତନ ମତବାଦକୁ ସ୍ୱାଗତ କରିବ । (୧୩,୩)

ପିଲାର ଆବେଗ ସହିତ ସମ୍ପର୍କ ନଥିଲେ ତାକୁ ମଣିଷ ଭାବରେ ବ୍ୟବହାର କରିବା ଅସମ୍ଭବ ହୋଇଥାଏ । ସ୍ୱତନ୍ତ୍ର ପଦ୍ଧତି ସାହାଯ୍ୟରେ ମାନବିକତା ଆସିନଥାଏ । ମାନବିକତାରେ ଅନୁକମ୍ପା, କିମ୍ବା 'ମିଠାକଥା'ର ସ୍ଥାନ ନଥାଏ । ମାନବୀୟ ପଦ୍ଧତି ଏବଂ ଔଚିତ୍ୟ ମଧ୍ୟରେ ତଫାତ ରହିଛି । ଉପର ଠାଉରିଆ ନ୍ୟାୟ ବିଦ୍ୟାଳୟରେ ନଥିଲା ଓ ଅବଶ୍ୟ ରହିବ ନାହିଁ । ରୁଟିନ୍‌ରେ ଓ ଚିରାଚରିତ ଛାଞ୍ଚରେ କାମ କରିବା, ବ୍ୟକ୍ତିଗତ ଭାବରେ ସମସ୍ତଙ୍କୁ ନ ବୁଝିବାକୁ ଅସମର୍ଥ ହେବା ହେଉଛି. ଉଦାସୀନତା ଓ ଅନ୍ୟାୟର ସବୁଠାରୁ ଖରାପ ନିଦର୍ଶନ । (୧୩,୩)

କେତେକ ବିଦ୍ୟାଳୟରେ ପିଲାମାନେ ସେମାନଙ୍କ ଶିକ୍ଷକଙ୍କୁ ଜଣେ ବ୍ୟକ୍ତି ବୋଲି ଅନୁଭବ କରି ପାରନ୍ତି ନାହିଁ କି ପ୍ରତିପାଦନ କରନ୍ତି ନାହିଁ । ବିଦ୍ୟାଳୟର ଏପରି ଅବସ୍ଥାକୁ ଜାଣି ଆମର ଆଖି ଆମେ ବନ୍ଦ କରି ରଖିବା ଉଚିତ ନୁହେଁ । ଶିକ୍ଷକ ତାଙ୍କ କାମରେ କେତେ ଅସୁବିଧାର ସମ୍ମୁଖୀନ ହୁଅନ୍ତି, ପିଲାମାନେ ନିଜେ ବୁଝିପାରିବା ପାଇଁ ଅସମର୍ଥ ହୁଅନ୍ତି ।

ପିଲାମାନଙ୍କର ଦୁଷ୍ଟାମି ଓ ତମାସା ସହିତ ପିଲାମାନେ ସବୁବେଳେ ଥକି ଯାଇଥିବା ଶିକ୍ଷକଙ୍କୁ ଅଧିକ ରଗେଇ ଥାଆନ୍ତି । ଶିକ୍ଷକଙ୍କ ପାଠପଢ଼ାର ବନ୍ଧନି ଦିନର ଭାଗରେ ଚିତ୍କାରରେ ଶେଷ ହୁଏ ଏବଂ ସେତେବେଳକୁ ସେ ତାଙ୍କ ନିଜ ଉପରୁ କର୍ତ୍ତୃତ୍ୱ ହରାଇଥାଆନ୍ତି । ଯିଏ ଚିତ୍କାର କରେ ତାର ମଣିଷମାନଙ୍କ ସମ୍ପର୍କ ବିଷୟରେ କମ୍ ଧାରଣା ଅଛି ବୋଲି ଏହା ନିର୍ଭୁଲ ଭାବରେ ସୂଚେଇ ଥାଏ । ଶିକ୍ଷକମାନେ ଚିତ୍କାର କରୁଥିବାବେଳେ ଛାତ୍ରମାନଙ୍କର କାନ ବଧିର ହୋଇଯାଏ ଏବଂ ସେମାନେ ସ୍ତବ୍ଧ ହୋଇଯାଆନ୍ତି । (୧୩,୩)

ଯେତେବେଳେ ଶିକ୍ଷକ ପିଲାମାନଙ୍କ ଉପରେ ଚିତ୍କାର କରିବାକୁ ଆରମ୍ଭ କରନ୍ତି ସେତେବେଳେ ଶିକ୍ଷକଙ୍କ କଣ୍ଠ ତାଙ୍କର ଶାନ୍ତ ଥିବା ବେଳର କଣ୍ଠଠାରୁ ଅଲଗା ହୋଇଯାଏ । ଏହା ଦେଖିବା ପାଇଁ ତୁମମାନଙ୍କୁ ସୁଯୋଗ ଆସିଥାଇପାରେ । ଶିକ୍ଷକମାନେ ସେତେବେଳେ ତାଙ୍କର ନିଜ କଣ୍ଠ ସ୍ୱରକୁ ଜାଣିପାରନ୍ତି ନାହିଁ । ଜଣେ ଚିତ୍କାର କରୁଥିବା ଶିକ୍ଷକ ପିଲାର ବିବେକକୁ ଶ୍ୱାସରୁଦ୍ଧ କରିପକାଏ ।

ଜଣେ ଶିକ୍ଷକ ସବୁବେଳେ ସାଧା ରଣ ଭାବେ କଥା କହିବେ କି 'ଚିତ୍କାର' କରିବେ ପ୍ରଶ୍ନର ମୋର ଉତ୍ତର ହେବ - ଆବେଗଭରା ସମ୍ବେଦନଶୀଳ ବ୍ୟକ୍ତିର ଆବେଗ ପିଲାର ହୃଦୟକୁ ଛୁଇଁଯିବ । ଏଥିପାଇଁ କାହାକୁ 'ଚିତ୍କାର' କରିବାକୁ ପଡ଼ିବ ନାହିଁ । ପିଲାର ଅନ୍ତର୍ଜଗତ ପ୍ରତି ସମ୍ବେଦନ ଥିବା ଶିକ୍ଷକ କେବେ ଚିତ୍କାର କରେନାହିଁ । ଶିକ୍ଷକଙ୍କର ସାଧାରଣ ବ୍ୟାକୁଳତା, ହତୋତ୍ସାହ, ବିଭ୍ରାନ୍ତି, ଆଶ୍ଚର୍ଯ୍ୟ ହେବା ଏବଂ ବିଦ୍ୱେଷ ଭାଗଗୁଡ଼ିକ ସହିତ ଅନ୍ୟାନ୍ୟ ଶହ ଶହ ଆବେଗିକ ଗୁଣଗୁଡ଼ିକୁ ପିଲାମାନେ ଗ୍ରହଣ କରିଥାନ୍ତି । ପ୍ରକୃତ ମାନବିକ ସମ୍ବେଦନଶୀଳ ଶିକ୍ଷକଙ୍କୁ ଏଭଳି ଆବେଗଗୁଡ଼ିକୁ ପିଲାମାନଙ୍କୁ ଜଣାଇବା ପାଇଁ ଆଳଙ୍କାରିକ କାମ କରିବାକୁ ପଡ଼େ ନାହିଁ । ପିଲାମାନେ ନିଜେ ଏଗୁଡ଼ିକୁ ଉପରଠାଉରିଆ ଭାବେ ନନେଇ ଗଭୀରକୁ ଯାଇପାରିବେ । ( ୧୩,୩)

ଗୋଟିଏ କିଶୋର ହୃଦୟ କଠୋର ଏବଂ ତିକ୍ତ ହେବା ପାଇଁ ଅପମାନ

ଦେବଠାରୁ ଆଉ ଅଧିକ କିଛି ଦଣ୍ଡ ନାହିଁ । ଅପମାନ ତାର ହୃଦୟକୁ ରୁକ୍ଷ କରିଦିଏ, ବେଳେ ବେଳେ ମଣିଷର ଅବଚେତନ ମନରେ ପଶୁ ପ୍ରକୃତି ଜାଗ୍ରତ କରାଇଥାଏ । ଏଭଳି ଅସହ୍ୟ ପାଠପଢ଼ାର ଢ଼ାଞ୍ଚାଗୁଡ଼ିକ ବଦଳ ନହେବା ଯାଏ ବାଳ ଅପରାଧ ବନ୍ଦ କରାଯାଇ ପାରିବ ନାହିଁ । ବେଳେ ବେଳେ ପିଲାମାନେ ନିଷ୍ଠୁର କିମ୍ବା ନିର୍ଦ୍ଦୟ ହେବାଟିକୁ ବଡ଼ମାନେ କଳ୍ପନା କରିପାରନ୍ତି ନାହିଁ । ପିଲାଟିଏ ଅନ୍ୟ ପିଲାଟିର ଖୁସିରେ ଆଘାତ କରି ଅପମାନିତ କରି ବଡ଼ମାନଙ୍କୁ ଚକିତ କରିଥାଏ । ପରିବେଶରୁ ହିଂସା, ଅପମାନ, ଅବିଶ୍ୱାସ, ଉଦାସୀନତା ଓ ହୃଦୟଶୂନ୍ୟତା ଆସିଥାଏ । ଏଭଳି ପିଲାମାନଙ୍କୁ ଆମେ ନିଜେ ଯତ୍ନଶୀଳ ହେଲେ ଏଥିରୁ ଦୂରେଇ ଦେଇ ପାରିବା । (୧୪,୨)

ଜଣେ ପ୍ରକୃତ ଦକ୍ଷ ଶିକ୍ଷକ ପିଲାମାନଙ୍କର କାମ ଏବଂ ବ୍ୟବହାରକୁ ତାର ସାରଭାତ୍ତ୍ୱିକ କଥାରୁ ମୂଲ୍ୟାୟନ କରେନାହିଁ । ପିଲାର ସାଧାରଣ ଶବ୍ଦରେ ଥିବା ସୁକ୍ଷ୍ମତର ଆବେଗିକ ପାର୍ଥକ୍ୟରୁ ମୂଲ୍ୟାଙ୍କନ କରେ । ଆମେ ଗୋଟିଏ ଉଦାହରଣ ଦେବା - " ତୁମେ ଦୁଷ୍ଟାମି କଲ ?"

ଜଣେ ଶିକ୍ଷକ ଯେତେବେଳେ ଏଭଳି ଶବ୍ଦ ବ୍ୟବହାର କରେ ପିଲାଟିଏ ହତୋତ୍ସାହ ଏବଂ ଲଜ୍ୟା ପାଇପାରେ କିନ୍ତୁ ଅନ୍ୟଜଣକ କ୍ଷେତ୍ରରେ ପିଲାଟିର ଆବେଗିକ ପ୍ରତିକ୍ରିୟା ଆସିପାରେ ନାହିଁ । ଏହାର ପ୍ରଭାବ କଠିନ ପଡ଼ି ଉଦାସୀନତା ଆସିପାରେ । ପ୍ରଥମଟିରେ ଶିକ୍ଷକଙ୍କର ଆବେଗିକ ସମ୍ବେଦନଶୀଳତା ଥିବାର ସୂଚନା ଦିଏ । ଏହା ବ୍ୟକ୍ତିର ନୈତିକଗୁଣ, ଜୀବନଧାରଣର ଧାରା ଏବଂ ପ୍ରତିପୂର୍ଣ୍ଣ ହୃଦୟର ସମିଶ୍ରଣରେ ହୋଇଥାଏ । ଦ୍ୱିତୀୟ ଟିରେ କ୍ଷେତ୍ରରେ ଶିକ୍ଷକଙ୍କ ଶବ୍ଦର ଅର୍ଥ କିଛି ନଥାଏ ଏବଂ ସେ ସବୁବେଳେ ନିଜର ଦୋଷ ଘୋଡ଼େଇବା ପାଇଁ ପାଟି କରିଥାନ୍ତି । ଆମ ବିଦ୍ୟାଳୟରେ କେତେକ ଶିକ୍ଷାଦାତା ଅଛନ୍ତି, ଯେଉଁମାନେ କେବଳ ଆବେଗିକ ଭାବରେ ଗୋଟିଏ କାମ କରିଥାଆନ୍ତି । ତାହା ହେଉଛି କ୍ରୋଧ । ସେମାନଙ୍କୁ ଆମର ଅତ୍ୟଧିକ ସମ୍ବେଦନଶୀଳତା ରହିବା ଦରକାର, ଯାହାଦ୍ୱାରା ସେମାନଙ୍କର ଶିକ୍ଷାଗତ ପ୍ରଭାବ ଦ୍ୱାରା ଶ୍ରେଣୀଗୃହରେ ରହିବ ନାହିଁ । (୧୪,୧୨)

ଯେତେବେଳେ ଛାତ୍ରମାନେ ସେମାନଙ୍କର ବ୍ୟବହାରର ପରିଣାମ ଜାଣି ସୁଦ୍ଧା ଶିକ୍ଷକଙ୍କର ବିଶ୍ୱାସ ଓ କଠୋର ଶୃଙ୍ଖଳାକୁ ଭାଙ୍ଗି ବାହାରି ଆସନ୍ତି, ସେତେବେଳେ ସାଧାରଣ ଭାବରେ ଶିକ୍ଷକ ଓ ଛାତ୍ର କାମ କରିବାର ଶୃଙ୍ଖଳା ଭଙ୍ଗହୁଏ ଏବଂ ଏଭଳି ଉଦାହରଣମାନ ଅଛି ( ଏହା ଭଲ ବିଦ୍ୟାଳୟରେ କମ୍ ହୋଇଥାଏ ) । ଯଦି

ଏଭଳି ପିଲାମାନେ ଅନ୍ୟ ବିଦ୍ୟାଳୟରୁ ମୋ ପାଖକୁ ଆସନ୍ତି ମୁଁ ସମାଲୋଚନାତ୍ମକ ଅବିଶ୍ୱାସ ସାହାଯ୍ୟରେ ସେମାନଙ୍କୁ କଠୋର ପରିଦର୍ଶନ କରିଆରେ ଠିକ୍ ବାଟକୁ ଆଣିଥାଏ । ଯେଉଁ ଛାତ୍ରମାନେ ବିକୃତ ଭାବରେ ଭୁଲ ଓ ଠିକ୍ ବୋଲି ଗଣାଯାଇଥାନ୍ତି ଏବଂ ନିଜର ଗୁରୁତ୍ୱକୁ ବଢ଼େଇ କରି କହିବା ଏବଂ ନିଜ ଚାରିପାଖରେ ଥିବା ଲୋକମାନଙ୍କର ଆବେଗିକ ପ୍ରକ୍ରିୟାକୁ ଆଦର କରିବାର ଶକ୍ତି ହରାଇଥାଆନ୍ତି, ସେମାନଙ୍କ କ୍ଷେତ୍ରରେ ଏଭଳି ପଦ୍ଧତି ବ୍ୟବହାର କରାଯାଇପାରିବ । ଏହାକୁ ମୁଁ ଗୁରୁତ୍ୱ ଦେଇ କହୁଛି ଯେ ପିଲାଗୁଡ଼ିକ ଗୁଣର ଅଧିକାରୀ ହୋଇଥାନ୍ତି ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଘଟୁ ଥିବା ଏବଂ ପୂର୍ବ ବିଦ୍ୟାଳୟ ଅନେକ ଗୁଡ଼ିକ ଭୁଲ୍ ଯୋଗୁଁ ହୋଇଥାଏ ।

ଠିକ୍ ବାଟକୁ ଆଣିବାର ପଦ୍ଧତି ହିସାବରେ 'ଅବିଶ୍ୱାସ' ତାର ଅର୍ଥ ଦୂରେଇ ବସେ ଏବଂ ବିପରୀତ ଭାବରେ ଯଦି ଏଭଳି ପଦ୍ଧତି ସମସ୍ତଙ୍କର ଅନୁମୋଦନ ଏବଂ ସମର୍ଥନ ନଥାଏ କ୍ଷତି ପହଞ୍ଚାଇଥାଏ । 'ଅବିଶ୍ୱାସ'କୁ ଏକ ପଦ୍ଧତି ହିସାବରେ ବ୍ୟବହାର କରିବା ପୂର୍ବରୁ ଶିକ୍ଷକ ଯତ୍ନଶୀଳ ହୋଇ ଏଥିସହିତ ସଂପୃକ୍ତ ଥିବା ଗୋଷ୍ଠୀରେ ଏହାର ନୈତିକ ପ୍ରଭାବ ବିଷୟରେ ଆଲୋଚନା କରିବା ଉଚିତ । ଏସବୁ ପରେ ଆଳସ୍ୟ, ପରାଙ୍ଗପୁଷ୍ଟତା, ବିଶୃଙ୍ଖଳା, କାମରେ ଶିଥିଳତାକୁ ସାମୂହିକ ଭାବରେ ପ୍ରତ୍ୟାଖ୍ୟାନ କରିବାକୁ ନେଇ ଭିତ୍ତିଭୂମି ପ୍ରସ୍ତୁତ କରିବାକୁ ପଡ଼ିବ । (୧୪,୧୨)

## ଆମେ ଏପରି ବିଦ୍ୟାଳୟ ଗଢ଼ିତୋଳିବା ପାଇଁ ଚେଷ୍ଟାକରୁ ଯେଉଁଠି ତାର କାନ୍ଥ ମଧ୍ୟ ପିଲାଙ୍କୁ କଥା କହେ ।

ଆମ ବିଦ୍ୟାଳୟ ( ଗୋଟିଏ ବଡ଼ ଗାଁ'ର ସୀମାରେ) କ୍ରିମେନ୍‌ଚୁଙ୍ଗ (Kremenchng) ସହରଠାରୁ ପ୍ରାୟ ୧୫ କି.ମି. ଦୂରେ ଅବସ୍ଥିତ । ବିଦ୍ୟାଳୟରେ ୫ ହେକ୍ଟର ପଡ଼ିଆ ରହିଛି ଏବଂ ସେଗୁଡ଼ିକ ବଣ ଏବଂ ଆଖପାଖର ସାମୂହିକ ଫାର୍ମରେ ଅଧିକ ଅମଳକ୍ଷମ ଜମିଦ୍ୱାରା ବାଡ଼ ହୋଇ ରହିଛି । ତାହାର ଦକ୍ଷିଣ ପାଖରେ ଡ୍ରିପର ( Driepcr) ନଦୀର ଶାଖା ନଦୀ ଅମିଲିକ୍ ପ୍ରବାହିତ ହେଉଛି । ଗୋଟିଏ ବଡ଼ ହ୍ରଦ କରିବା ପାଇଁ ଏହି ଜାଗାରେ ନଦୀକୁ ବନ୍ଧାଯାଇଛି । (୧୧,୧୦୭)

ଗାଁଟି ସବୁଜିମାର ସମୁଦ୍ରରେ ଲୁଚି ଯାଇଛି । ସ୍କୁଲ ପଡ଼ିଆ ଏବଂ ସାମୂହିକ ଫାର୍ମର ପଡ଼ିଆ ମଝିରେ ଆମେ ଅନେକ 'ଓକ୍' ତୋଟା ଏବଂ ଛୋଟ ଛୋଟ ବୁଦାଳିଆ ଗଛ (ପବନକୁ ଅଟକେଇବା ପାଇଁ ) ରୋପି ଥିଲୁ । ବିଦ୍ୟାଳୟ ପରେ ପରେ ଖେଳ ଷ୍ଟାଡ଼ିୟମ୍ ଅଛି ଏବଂ ତାର ଚାରିପାଖରେ ସେଓ ଗଛଗୁଡ଼ିକ ଗୋଲ ହୋଇ ଘେରି ହୋଇ ରହିଛି । ବିଦ୍ୟାଳୟର ଉତ୍ତର-ପଶ୍ଚିମ ଦିଗରେ ଅନ୍ଧାରୁଆ ଗାତ ରହିଥିଲା । ଆମେ ଏହାର ଉପରି ଭାଗରେ 'ଓକ୍' ଗଛ ଏବଂ ଏହାର ପାଦଦେଶରେ ଲିଲାକ ବୁଦା ଲଗେଇଲୁଣି । ଏଣୁ ଆମର ବର୍ତ୍ତମାନ ଗୋଟିଏ 'ଓକ୍' ଗଛର ବୁଦା, ଏବଂ ଲିଲାକ ଗଛର ଏକ ସୁନ୍ଦର ବଗିଚା ଅଛି । (୧୧,୧୦୭)

ସ୍କୁଲଟି ଅବସ୍ଥିତ ହୋଇଥିବା ପଲ୍ଲୀ ଅଞ୍ଚଳରେ ହୁଏ । ଡ୍ନିପର୍ ନଦୀର ପାଖ ଇଲାକାର ମନମୁଗ୍ଧକର ଦୃଶ୍ୟଗୁଡ଼ିକ ଯେକୌଣସି ପାଖ ପାହାଡ଼ରୁ ଉପଭୋଗ କରିହେବ । ଗୋଟିଏ ପ୍ରାଚୀନକାଳରୁ ଥିବା କବରର ଉପରିଭାଗରୁ ଡ୍ନିପର୍ ନଦୀର ତଳଭାଗର ଜମିଗୁଡ଼ିକ ସମ୍ପୂର୍ଣ୍ଣ ଭାବରେ ଦେଖାଯାଏ ଏବଂ ମଣିଷାକୃତ ହ୍ରଦର ଦୃଶ୍ୟ ଦେଖାଯାଏ । ଦିଗ୍‌ବଳୟରେ ତୁମେ ଗୋଟିଏ ଜଳ ବିଦ୍ୟୁତ୍ ଶକ୍ତି କେନ୍ଦ୍ର ଦେଖିପାରିବ ଏବଂ ସୁଦୂର ଯନ୍ତ୍ରଚାଳିତ କାମ ଏବଂ ରେଳ-ମାଲଗାଡ଼ିକୁ ବାରିପାରିବ । ପଶ୍ଚିମରୁ ଦକ୍ଷିଣ ହୋଇ ରହିଥିବା ବିରାଟ ପଡ଼ିଆରେ ପ୍ରାଚୀନ କବରଗୁଡ଼ିକ ବିଛୁରିତ ହୋଇ ପଡ଼ି ରହିଅଛନ୍ତି । (୧୧,୧୦୭)

ମନେ ହେଉଛି ଭବିଷ୍ୟତର ବିଦ୍ୟାଳୟ ପ୍ରକୃତିଦତ୍ତ ପଦାର୍ଥ ଯେତିକି ଅଛି ସେସବୁକୁ ପୂରାମାତ୍ରାରେ ଉପଯୋଗ କରିବ । ପୂରାମାତ୍ରାରେ ଉପଯୋଗ କରିବାକୁ ହେଲେ ପ୍ରକୃତି ସୌହାର୍ଦ୍ଦ୍ୟପୂର୍ଣ୍ଣ ବିଶ୍ୱାସ ପାଇଁ ଉଦ୍ଦିଷ୍ଟ ବୋଲି ଭାବିବାକୁ ପଡ଼ିବ । କେବଳ ଏହା ଭାବିଲେ ଆମ୍ଭେମାନେ ଗଚ୍ଛିତ ପ୍ରାକୃତିକ ସମ୍ପଦକୁ ସୁରକ୍ଷା ଦେବା ଏବଂ ଅଧିକ ବଢ଼େଇବା ପାଇଁ ଚେଷ୍ଟା କରିବା । ତୁଳନାତ୍ମକ ଭାବରେ ବହୁତ କମ୍ ସମୟରେ - ୨୦ ବର୍ଷ ଭିତରେ - ଏଠାକାର ପ୍ରାକୃତିକ ସମ୍ପଦକୁ ବୃଦ୍ଧି କରିବାରେ ଆମ ଛାତ୍ରମାନଙ୍କର କାମରେ ପରିବର୍ତ୍ତନ ଘଟିଛି । ଏପରିକି ସେମାନଙ୍କର ଚାରି ପାଖରେ ପରିବେଶର ପରିବର୍ତ୍ତନ ଘଟିଛି । ଗତ ଦୁଇ ଦଶନ୍ଧି ଧରି ଆମେ ୪୦ ହେକ୍ଟରର ନିମ୍ନମାନର ପଥୁରିଆ ଜାଗାକୁ ଉର୍ବର ଏବଂ ଉନ୍ନତଜମିରେ ପରିଣତ କରିଛୁ ଏବଂ ଏଠାରେ ଅନେକ ଫଳ ବଗିଚା ଗଢ଼ି ଉଠିଛି । (୧୧,୧୦୯)

ଆମ ବିଦ୍ୟାଳୟରେ ୪ଟି କଠୋରୀକୁ ପାଠପଢ଼ା ଉଦ୍ଦେଶ୍ୟରେ ରଖାଯାଇଛି

। ଦଶଟି କୋଠରୀ ବିଶିଷ୍ଟ ମୁଖ୍ୟ ଗୃହ ପଞ୍ଚମରୁ ୧୦ ଶ୍ରେଣୀ ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ( ପଞ୍ଚମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ତଳ ମହଲାରେ, ଅଷ୍ଟମରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରଥମ ମହଲାରେ) । ପାଖ ଅନ୍ୟ ତିନୋଟି ଘର ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ । ପ୍ରତ୍ୟେକ ସ୍କୁଲରେ କର୍ମୀମାନଙ୍କ ପାଇଁ ଗୋଟିଏ ଗୃହ ରହିଛି । (୧୧,୧୦୯)

ପ୍ରତ୍ୟେକ କୋଠାରେ ଗୋଟିଏ ପରିବାର ବାସ କରନ୍ତି ବୋଲି କୁହାଯାଇପାରିବ, ଯେଉଁଠି ସବୁ ପିଲାଙ୍କର ନିଜ ନିଜ ଭିତରେ ପରିଚୟ ଥାଏ ଏବଂ ଧିରେ ଧିରେ ବିଦ୍ୟାଳୟର ପ୍ରତ୍ୟେକ ପିଲାଙ୍କୁ ନେଇ ସେମାନେ ସାମୂହିକ ଜୀବନରେ ସାମିଲ ହୁଅନ୍ତି ।

ପରିବେଶ ଅଶାନ୍ତିରୁ ମୁକ୍ତଥାଏ ଯାହା ପିଲାଙ୍କୁ ଖୁବ୍ ଶୀଘ୍ର କ୍ଳାନ୍ତ କରିପକାଏ । ସେମାନେ ସିଧା ତାଙ୍କ କୋଠରୀରୁ ବଗି ଚାକୁ ଏବଂ ସବୁଜ ଘାସ ବଗିଚାକୁ ଦୌଡ଼ି ଯାଇପାରିବେ । ଯେକୌଣସି ପାଣିପାଗରେ ସେମାନେ ସେମାନଙ୍କର ସାଙ୍ଗମାନଙ୍କୁ କିମ୍ବା ବଡ଼ଭାଇମାନଙ୍କୁ ଦେଖା କରିବା ପାଇଁ ଅନ୍ୟ ଘରକୁ ଛୋଟ କଙ୍କ୍ରିଟ୍ ବାଟ ଦେଇ ଯାଇପାରିବେ, ଯାହା ଫଳରେ ସେମାନଙ୍କର ପାଦ ଓଦା ହେବନାହିଁ । (୧୧,୧୦୯)

ପାଠପଢ଼ାର ମୁଖ୍ୟ ବିଭାଗରେ ଶ୍ରେଣୀଗୃହ ଛଡ଼ା ଗୋଟିଏ ଗଣିତ କୋଠରୀ, ଭାଷା ଓ ସାହିତ୍ୟ ବିଭାଗ, ଟେପ୍ ଓ ରେକର୍ଡ଼ର ଉପକରଣ ସହିତ ବିଦେଶୀ ଭାଷାମାନଙ୍କର ଗବେଷଣାଗାର ( ତା' ସହିତ ବିଦ୍ୟାଳୟର ରେଡ଼ିଓ ଷ୍ଟେସନ୍), ଗୋଟିଏ ବାଦ୍ୟଯନ୍ତ୍ରର କୋଠରୀ, ଅଗ୍ରଣୀ ଏବଂ କମ୍‌ସଲ୍ ( komsomol) ସଭାଗୃହ, ଗୋଟିଏ ବିଦ୍ୟାଳୟ ସଂଗ୍ରହାଳୟ, ପଦ୍ଧତି କୋଠରୀ, ପିତାମାତାଙ୍କ ପାଇଁ ଉଦ୍ଦିଷ୍ଟ କୋଠରୀ, ଫଟୋଗ୍ରାଫି ଦୋକାନ, ଗୋଟିଏ କଳା କୋଠରୀ, ଗୋଟିଏ ଖେଳ ଗୃହ ଗୋଟିଏ ଆମୋଦପ୍ରମୋଦ କୋଠରୀ ( ଯେଉଁଠି ପିଲାମାନେ ଶାନ୍ତି ପାଇପାରିବେ, ସ୍ୱପ୍ନ ଦେଖିପାରିବେ, ସେମାନଙ୍କର ସାଙ୍ଗମାନଙ୍କ ସହିତ ଗପି ପାରିବେ, ବହି ଏବଂ ଖବରକାଗଜ ପଢ଼ିପାରିବେ ) ଏବଂ ଗୋଟିଏ ଉପକରଣ କେନ୍ଦ୍ର ରହିବା ଯେଉଁଠି ନିଜେ ଚାହିଁବା ଅନୁସାରେ ଛାତ୍ରମାନେ ନିଜ ନିଜ ଭିତରେ ସାହାଯ୍ୟ କରିପାରିବେ । (୧୧,୧୧୨)

ଭାଷା ଓ ସାହିତ୍ୟ ବିଭାଗରେ ୨୦୦ ଟି ଗବେଷଣାଲବ୍ଧ ପୁସ୍ତକ ରହିଛି, ଯାହା ବିଦ୍ୟାଳୟର ପ୍ରତ୍ୟେକ ପିଲା ସାହିତ୍ୟ ଭିତରକୁ ପ୍ରବେଶ କରିବା ପାଇଁ

ପଢ଼ିବା ଉଚିତ୍ । ଏଠି ଯାହା ଅଛି ପ୍ରତ୍ୟେକ ପରିପକ୍ୱ ବୟସକୁ ଆସିବା ପୂର୍ବରୁ ଯେତିକି ପଢ଼ିବା କଥା ତା'ଠାରୁ ବହୁତ କମ୍ ଅଛି । ଅବଶ୍ୟ ସବୁପିଲାଙ୍କୁ ଏସବୁ ବହି ପଢ଼େଇବାପାଇଁ ଶିକ୍ଷକ ପକ୍ଷେ କମ୍ କାମ ନୁହେଁ । ପ୍ରତ୍ୟେକ ବୟସର ପିଲାମାନଙ୍କ ପାଇଁ ଗୋଟିଏ ଅନୁମୋଦିତ ପୁସ୍ତକ ତାଲିକା ଅଛି । ଏପରିକି ଏକ ସ୍ୱତନ୍ତ୍ର ବହିତାଲିକା ଅଛି । ଯେଉଁଗୁଡ଼ିକ ଥରେରୁ ଅଧିକ ପଢ଼ିବା ଉଚିତ୍ । ଆମ ବିଦ୍ୟାଳୟରେ ଆମେ ଏହି ପ୍ରାଥମିକ କାର୍ଯ୍ୟକୁ ନୈତିକ ଓ ସୌନ୍ଦର୍ଯ୍ୟ ଶିକ୍ଷାର ଏକ ଜରୁରୀ କାର୍ଯ୍ୟ ରୂପେ ଗ୍ରହଣ କରୁ । ପିଲାମାନେ ବାଛିଥିବା ଉପନ୍ୟାସଗୁଡ଼ିକର ଟୀପ୍ପଣୀ , ଯୁବପାଠକମାନଙ୍କ ପାଇଁ ଉପଦେଶ, ବିଦ୍ୟାଳୟ ଆରମ୍ଭ ହେବା ଠାରୁ ଲେଖା ହୋଇଥିବା ଏବଂ ସ୍ୱୀକୃତି ପାଇଥିବା ପ୍ରବନ୍ଧଗୁଡ଼ିକ ଗଚ୍ଛିତ ହୋଇ ରହିଛି । ପ୍ରକାଶ ପାଇଥିବା ପ୍ରାଚୀର ଖବରକାଗଜ ଏବଂ ତହିଁର ପାଣ୍ଡୁଲିପି ଫାଇଲ୍‌ଗୁଡ଼ିକ ''ଆମର ସବୁ ନିଜଲେଖା'' ଶୀର୍ଷକରେ ଗଚ୍ଛିତ ହୋଇ ରହିଛି । (୧୧, ୧୧୨) ।

ପୁନଃ-ପଠନ ପାଇଁ ଅନୁମୋଦିତ ହୋଇଥିବା ପୁସ୍ତକର ତାଲିକାରେ ନିମ୍ନପ୍ରକାରେ ମୁଖବନ୍ଧ ଲେଖା ହୋଇଥାଏ : '' ପୁଅ ଓ ଝିଅମାନେ । ଏଠାରେ ଗୋଟିଏ ନାମ ତାଲିକା ଅଛି, ଯାହା ମଣିଷ ସାହିତ୍ୟର ମୂଲ୍ୟବାନ ସଞ୍ଚିତ ଧନର ଘର । ସେଗୁଡ଼ିକୁ ଅନେକ ଥର ପଢ଼ିବା ଉଚିତ । ଏହି ବହିଗୁଡ଼ିକ ଆମକୁ କେମିତି ବଞ୍ଚିବାକୁ ହେବ ଏବଂ ଆମମାନଙ୍କ ସମ୍ମୁଖରେ କଳାର ସୌନ୍ଦର୍ଯ୍ୟକୁ ଖୋଲିଦେଇ ହେବ ତାହା ଶିଖାଇଥାଏ ।'' (୧୧,୧୧୨)

କର୍ମଚାରୀ ପ୍ରକୋଷ୍ଠରେ ରୁଟିନ୍ ବ୍ୟତୀତ ସାଧାରଣ ସ୍କୁଲ ପରି କୌଣସି ଅତୀତ ସ୍ମୃତି ନାହିଁ । ଗୋଟିଏ କାଚନିର୍ମିତ ଜଳାଶୟ (aquarium) ଟେବୁଲ୍ ଉପରେ ଅଛି । ତାହା ପାଖରେ ଗୋଟିଏ ଲେମ୍ବୁଗଛ ସହିତ କେତେକ ଘର ଭିତରର ଗଛ ରହିଛି ଏବଂ ତାଜା ଏବଂ ମନମୁଗ୍ଧକର ପବନ ପାଇଁ ଗୋଟିଏ ଲାଉରେଲ୍ (Laurel ) ଗଛ ରହିଛି । ଟେବୁଲ୍ ଚାରି ପାଖରେ ଚୌକିଗୁଡ଼ିକ ଗୋଲେଇ କରି ରଖାହୋଇଛି ଏବଂ ଟେବୁଲ୍ ଉପରେ ପତ୍ରପତ୍ରିକା ସହିତ ଗୋଟିଏ ଚେସ୍ ସେଟ୍ ରହିଛି । (୧୧,୧୧୬)

ଝିଅପିଲାମାନଙ୍କ ପାଇଁ ମଧ୍ୟ ଆମର ଗୋଟିଏ ସ୍ୱତନ୍ତ୍ର ପଢ଼ାଘର ରହିଛି । ସେଠି ଶରୀର ବ୍ୟବଚ୍ଛେଦ ବିଦ୍ୟା, ଶରୀର ବିଜ୍ଞାନ, ମହିଳାଙ୍କ ପରିଚ୍ଛନ୍ନତା ଏବଂ ମାତୃତ୍ୱ ସମ୍ବନ୍ଧୀୟ ବହି ଏବଂ ପାମ୍ପଲେଟ୍ ଗୁଡ଼ିକ ରହିଛି । ସବୁବେଳେ ନୂଆ ନୂଆ ବହି ଦ୍ୱାରା ପୁରୁଣା ବହିଗୁଡ଼ିକ ସ୍ଥାନାନ୍ତରିତ ହେଉଛି । ଏହି ବହି ଓ

ପାମ୍ପଲେଟ୍‌ଗୁଡ଼ିକ ଝିଅପିଲାମାନେ ଆଗ୍ରହ ସହିତ ପଢ଼ନ୍ତି । ( ୧୧, ୧୧୬)

ପ୍ରତ୍ୟେକ ଶିକ୍ଷାଗତ ପ୍ରତିଷ୍ଠାନରେ ସଫାକରିବା ପାଇଁ ଝାଡୁ ଯୋଗାଇ ଦିଆଯାଇଥାଏ । ଏହା ସାହାଯ୍ୟରେ ପିଲାମାନେ ନିଜେ ନିଜକୁ ସଫାସୁତରା ରଖନ୍ତି । ପ୍ରତ୍ୟେକ ଶ୍ରେଣୀଗୃହରେ ଗୋଟିଏ ବାଲଟି, ପାଣି ଜଗ୍, ଧୂଳିଝାଡ଼ିବା ପାଇଁ ବ୍ରସ୍ ଏବଂ ଡ଼ଷ୍ଟର ରହିଛି । ପ୍ରତ୍ୟେକ ମହଲାରେ ଗୋଟିଏ ମଇଳା ସଫାକରିବା ଯନ୍ତ୍ର ରହିଛି । ସବୁ ଜିନିଷଗୁଡ଼ିକ ଯଥା ସ୍ଥାନରେ ରହିଛି ।( ୧୧,୧୧୬)

ବିଦ୍ୟାଳୟକୁ ଆସିବା ପୂର୍ବରୁ ପ୍ରତ୍ୟେକ ଛାତ୍ର ତା'ର ପାଦକୁ ଦୁଇଥର ସଫା କରି ଆସନ୍ତି । ପଥମ ଥର ବୁଟ୍‌କୁ ସଫା କରିବା ପାଇଁ ଜଳାଶୟ ରହିଛି ଏବଂ ସେଥିରେ ସବୁଠାରୁ ଖରାପ ମଇଳାକୁ ପିଲାମାନେ ସଫା କରନ୍ତି । ପିଲାମାନେ ଯେତେବେଳେ ପ୍ରକୃତରେ ବିଦ୍ୟାଳୟକୁ ପ୍ରବେଶ କରନ୍ତି, ସେମାନେ ସେମାନଙ୍କ ଜୋତାକୁ ସଫା କରନ୍ତି । ଦାୟିତ୍ୱରେ ଥିବା କର୍ମୀମାନେ ଛାତ୍ରମାନଙ୍କ ଜୋତାକୁ ତଦାରଖ କରନ୍ତି, ଯେପରି ପ୍ରତ୍ୟେକ ଜୋତା ସଫା ରହିଥିବ । ଯଦି କାନ୍‌ଭାସ୍‌ର କୌଣସି ଜାଗାରେ ମଇଳା ନ ଥିବ, ସେ ବିଦ୍ୟାଳୟକୁ ପ୍ରବେଶ କରିପାରିବ । ଅନ୍ୟ ପକ୍ଷରେ ଯଦି କାନ୍‌ଭାସ୍‌ର କୌଣସି ଅଂଶ ମଇଳା ଦେଖାଯାଏ, ପିଲାମାନଙ୍କୁ ସେମାନଙ୍କର ଜୋତା ଆଉଥରେ ସଫା କରିବା ପାଇଁ ଫେରେଇ ଦିଆଯାଏ । କିନ୍ତୁ ଜୋତା ସଫା କରିବା ପାଇଁ ଏବଂ ତଦାରଖ କରିବାପାଇଁ ପ୍ରତ୍ୟେକ ଦିନ ଦୁଇମିନିଟ୍‌ରୁ ଅଧିକ ରଖାଯାଇ ନାହିଁ । ଆଉ ମଧ୍ୟ ଏହି ଦୁଇ ମିନିଟ୍ ସଫା କରିବା ଦାୟିତ୍ୱରେ ଥିବା ମହିଳା ଏବଂ ସେଥିପାଇଁ ନିଯୁକ୍ତ ହୋଇଥିବା ଛାତ୍ରମାନଙ୍କ କାମକୁ ଉପଶମ କରିଥାଏ । (୧୧,୧୧୭)

ଯେଉଁବାଟ ଦେଇ ପିଲାମାନେ ଚାଲି ଚାଲି ଗୋଟିଏ ଘରୁ ଅନ୍ୟ ଘରକୁ ଯାଆନ୍ତି, ସେଗୁଡ଼ିକ ବହୁତ ଭାବରେ ସଫା ରଖାଯାଇଥାଏ ଏବଂ ଯଦି ସେମାନେ ଖରାପ ପାଗ ଦ୍ୱାରା ଓଦା ହୋଇଯାଆନ୍ତି, ପିଲାମାନଙ୍କ ଦ୍ୱାରା ଓଦା ଘର ଭିତରକୁ ଆସିଥାଏ, କିନ୍ତୁ ଧୂଳି କିମ୍ବା ଅସନା ଆସେ ନାହିଁ । (୧୧,୧୧୭)

ବିଦ୍ୟାଳୟରେ ବିଦ୍ୟୁତ୍ ଷ୍ଟେସନ୍ ଦୁଇଟି ବିଭାଗରେ ବିଭକ୍ତ । ପ୍ରଥମ ବିଭାଗରେ ୧୬ କିଲୋୱାଟ୍‌ର ଗୋଟିଏ ବିକଳ୍ପ ଶକ୍ତି ଉତ୍ପାଦନକାରୀ ଜେନେରେଟର୍ ରହିଛି ଏବଂ ଅନ୍ୟଟିରେ ସାଢ଼େ ଚାରି କିଲୋୱାଟ୍‌ର ଜେନେରେଟର, ଦୁଇ କିଲୋୱାଟ୍‌ର ସିଧାସଳଖ ବିଦ୍ୟୁତ୍‌ଶକ୍ତି ପ୍ରବାହ କରୁଥିବା

ଗୋଟିଏ ଜେନେରଟର୍, ଗୋଟିଏ ବ୍ୟାଟେରୀ ଚାର୍ଜର, ଗୋଟିଏ ଗାଲ୍‌ଭାନି କୁଣ୍ଡ ଏବଂ ବୈଦ୍ୟୁତିକ ତରଳୀକରଣ, ଫର୍‌ସେନ୍, ଝଳେଇ ଯନ୍ତ୍ର, ଗୋଟିଏ ପେଶା ଯନ୍ତ୍ର ଏବଂ ଗୋଟିଏ ଗୋଲାକାର କରତ ରହିଛି । ଯେତେବେଳେ ବୈଦ୍ୟୁତିକ ଜେନେରେଟର୍‌କୁ ଚଳାଯିବ, ଶକ୍ତିଗୁଡ଼ିକ ଅଯଥାରେ ବ୍ୟୟ ହେବନାହିଁ । ଦ୍ୱିତୀୟ ବିଭାଗରେ ପିଲାମାନଙ୍କର ବୈଦ୍ୟୁତିକ ଶକ୍ତି ଷ୍ଟେସନ୍ ରହିଛି । ଏହା ସ୍ୱଳ୍ପ କ୍ଷମତା ସମ୍ପନ୍ନ ଏକ ଶକ୍ତି କାରଖାନା । ଯାନ୍ତ୍ରିକ ମଡ଼େଲ୍‌ଗୁଡ଼ିକ ଜେନେରଟର୍ ସହିତ ସଂଯୋଗ କରିହେବ । ବୟସ୍କ ଲୋକମାନେ ସେଠାରେ ଅନେକ ଯନ୍ତ୍ର ସ୍ଥାପିତ କରିଛନ୍ତି, ଯାହାଦ୍ୱାରା କରେଣ୍ଟ ଆପେ ଆପେ ବନ୍ଦ ହୋଇଯାଏ । କୌଣସି ଦୁର୍ଘଟଣା ଘଟିଲେ କମ୍ପ୍ରେଷନ୍ ଯନ୍ତ୍ର ବନ୍ଦ ହୋଇଯାଇଥାଏ, ଏହାଦ୍ୱାରା ଦୁର୍ଘଟଣାକୁ ଦୂରେଇ ଦିଆଯାଇଥାଏ । ଶକ୍ତି ଷ୍ଟେସନ୍‌ର ପରେ ପରେ ଢଳେଇ କାରଖାନା ଏବଂ କମାରଶାଳ ଅଛି । (୧୧,୧୨୧)

ଶିକ୍ଷକ ଓ ଛାତ୍ରମାନଙ୍କର କାମ ପାଇଁ ପ୍ରାୟ ସବୁ ଜିନିଷ ପରୀକ୍ଷାଗାର, ସ୍ୱତନ୍ତ୍ର ପାଠପଢ଼ା କୋଠରୀ ଓ କର୍ମଶାଳାରୁ ମିଳିଯିବ । ପ୍ରତ୍ୟେକ ବର୍ଷ ପାଠପଢ଼ା କୋଠରୀ ଏବଂ ପରୀକ୍ଷାଗୁଡ଼ିକରେ ନୂତନ ଯନ୍ତ୍ରପାତି, କାମ କରିବାର ସାମଗ୍ରୀ, ମଡ଼େଲ୍ ତିଆରି ପାଇଁ ଟେବୁଲ୍ ଇତ୍ୟାଦି ଯୋଗେଇ ଦିଆଯାଇଥାଏ । ଉଦାହରଣ ସ୍ୱରୂପ ୧୯୬୩-୬୪ ମସିହାରେ ପିଲାମାନେ ଓ ଶିକ୍ଷକମାନେ ମିଳିତ ଭାବେ ଧାତବଦ୍ରବ୍ୟର କାମ ପାଇଁ ଗୋଟିଏ ପେଷିବା ଯନ୍ତ୍ର ଏବଂ କାଠ ତିଆରି ଚକଯନ୍ତ୍ର, ଗୋଟିଏ ଗୋଲାକାର କରତ, ଦୁଇଟି ସ୍ୱୟଂଚାଳିତ ଚକ୍ରଯନ୍ତ୍ର, ଛୋଟ ଏବଂ ମଧ୍ୟବିତ୍ତ ପିଲାଙ୍କ ପାଇଁ ଛୋଟ ଧାତବ ଚକଯନ୍ତ୍ର, ପର୍ଯ୍ୟାୟ କ୍ରମେ ବ୍ୟବହାର ପାଇଁ ୧୫ଟି ଶକ୍ତି ଜେନେରଟର୍ ଏବଂ ୪୫ଟି ଓ୍ୟାରଲେସ୍ ସେଟ୍ ତିଆରି କରିଥିଲେ । ଧାତବ କାର୍ଯ୍ୟପାଇଁ ଆମେ ଯନ୍ତ୍ର ତିଆରି କରୁ ଯାହା ଆମ ପରିସରରେ ବ୍ୟବହାର ପାଇଁ ଉପଯୋଗ ହୁଏ ନାହିଁ, ପାଖ ବିଦ୍ୟାଳୟରେ ଏହାର ବ୍ୟବହାର ହୁଏ । ବିଗତ ୧୦ବର୍ଷରେ ଆମେ ୧୮ଟି ଯନ୍ତ୍ର ଏବଂ ୪୫ଟି ଦୃଶ୍ୟମାନ ସାମଗ୍ରୀ, ପଦାର୍ଥ ବିଜ୍ଞାନ, ଗଣିତ ଏବଂ ରସାୟନ ବିଜ୍ଞାନ ପଢ଼େଇବା ପାଇଁ ୮ ବର୍ଷର ମାଧ୍ୟମିକ ବିଦ୍ୟାଳୟକୁ ବିତରଣ କରିଛୁ । ( ୧୧, ୧୨୧) ।

ବିଦ୍ୟାଳୟର ଦକ୍ଷିଣ, ପଶ୍ଚିମ ଏବଂ ଉତ୍ତର ଦିଗରେ ଦୁଇ ହେକ୍ଟର ବ୍ୟାପୀ ଗୋଟିଏ ଫଳ ବଗିଚା ଅଛି । ୟୁକ୍ରାଇନ୍‌ର ପରିବେଶରେ ବଢୁଥିବା ସମସ୍ତ ପ୍ରକାର ଫଳ ଗଛ ( ସେଓ, ନାସପାତି, ପ୍ଲମସ୍, ଆପ୍ରିକଟସ୍, ପିଚେସ୍, ଚେରି, ବେରି )

ତୁମେ ପାଇପାରିବ । ଏହା ପ୍ରଥମ ୨୦ ବର୍ଷ ତଳେ ପିଲାମାନେ ଲଗେଇଥିଲେ ଏବଂ ଏହାର ବୃଦ୍ଧି ପ୍ରତିବର୍ଷ ହେଉଛି । ବିଦ୍ୟାଳୟର ମୁଖ୍ୟବିଭାଗ ପରେ ୦.୨ ହେକ୍ଟର ବିଶିଷ୍ଟ ଗୋଟିଏ ଅଙ୍ଗୁର ବଗିଚା ଅଛି । ପିଲା ଓ ଶିକ୍ଷକମାନଙ୍କର ଏଥିପ୍ରତି ସ୍ୱତନ୍ତ୍ର ଚାହିଦା ରହିଛି । ମେ ମାସଠାରୁ ନଭେମ୍ବର ମାସ ପର୍ଯ୍ୟନ୍ତ ପ୍ରଥମେ ପିଲାମାନେ ଗହଳି ପତର ଉତ୍ସରେ ଏବଂ ପରେ ପାଚିଲା ଅଙ୍ଗୁର ପାଇ ଖୁସୀରେ ଉତ୍ଫୁଲ୍ଲିତ ହୁଅନ୍ତି । ( ୧୧,୧୨୩)

ଫଳ ବଗିଚା ଏବଂ ଅଙ୍ଗୁର ବଗିଚା ମଧ୍ୟରେ ଆମର ସବୁଜଗୃହ , - ୧ ଏବଂ ସବୁଜ ପରୀକ୍ଷାଗାର ଅବସ୍ଥିତ । ଫୁଲ ଏବଂ ପନିପରିବା ଆମର ସବୁଜଗୃହରେ ବଢୁଛି ଏବଂ ପରୀକ୍ଷଣଗୁଡ଼ିକ ମଧ୍ୟ ଚାଲିଛି । ସବୁଜ ଗୃହର ମଧ୍ୟଭାଗରେ ଚାରାଗଛପାଇଁ ଏକ ସେଟ୍ ଥାକ ରଖାଯାଇଛି ଏବଂ ତା' ଚାରିପାଖରେ ଭାଙ୍ଗି ହୋଇପାରୁଥିବା ବେଞ୍ଚ୍ ଅଛି । ପିଲାମାନେ ଯେତେବେଳେ ପଢ଼ିବାପାଇଁ ଆସନ୍ତି. ସେମାନେ ଏଥିରେ ବସିଛନ୍ତି । ପିଲାମାନେ ସବୁଜଗୃହକୁ ତିଆରି କରିଛନ୍ତି ଏବଂ ପାଣି ପାଇପ୍ ସଂଯୋଗ ମଧ୍ୟ କରିଛନ୍ତି । ଗୋଟିଏ ଜାଗାରୁ ପାଣି ଗରମ ହେବାର ବ୍ୟବସ୍ଥା ମଧ୍ୟ ରହିଛି । ଏପରିକି ପ୍ରବଳ ଶୀତଦିନମାନଙ୍କରେ ମଧ୍ୟ ସବୁଜ ଗୃହର ଉତ୍ତାପ ୨୭୦ ସେଲ୍‌ସିୟସ୍ ଥାଏ । (୧୧, ୧୨୩)

ବିଦ୍ୟାଳୟର ବଗିଚା ପଛରେ ଯାନ୍ତ୍ରିକ ଗବେଷଣାଗାର ଏବଂ ଦୁଇଟି ସ୍କୁଲ କାର ଏବଂ ଦୁଇଟି ଟ୍ରାକ୍ଟର ପାଇଁ ଗ୍ୟାରେଜ୍ ଅବସ୍ଥିତ । ସେଠାରେ ଆଉ ମଧ୍ୟ ଗୁଡ଼ାଏ କୃଷିଭିତ୍ତିକ ଯନ୍ତ୍ରପାତି ଏବଂ ଉପକରଣ ( ଧାନବୁଣାଯନ୍ତ୍ର, ଲଙ୍ଗଳ, ଚାଷକରିବା ଯନ୍ତ୍ର, ଫଳଚାଷ ପାଇଁ ସ୍ପ୍ରେୟର୍ ଇତ୍ୟାଦି) ଅଛି । ମେକାନିକ୍ କର୍ମଶାଳା ଏବଂ ଗ୍ୟାରେଜ୍ (ମୁଖ୍ୟ ଗ୍ୟାରେଜ୍‌କୁ ଛାଡ଼ି ଆଉ ଗୋଟିଏ ଛୋଟ ଗ୍ୟାରେଜ୍, ଦୁଇଟି ମିନି କାର୍ ପାଇଁ ମେକାନିକ୍ ଅଭ୍ୟାସ ସର୍କଲ ଦ୍ୱାରା ନିର୍ମିତ ହୋଇଛି ।) ବଡ଼ଛାତ୍ରମାନେ ନିର୍ମାଣ କରିଛନ୍ତି । ଛୋଟ ଗ୍ୟାରେଜ୍‌ର ଗୋଟିଏ ଭାଗ ଯୁବ ମଟରଚାଳକମାନଙ୍କ ଦ୍ୱାରା ବ୍ୟବହୃତ ହୁଏ ଏବଂ ମୋଟର ମରାମତି ପାଇଁ ଉପକରଣ ରହିଛି । ଉପକରଣଗୁଡ଼ିକ ମୋଡ଼େଲ୍ ତିଆରିରେ ବ୍ୟବହୃତ ହୁଏ । ଏଠାରେ ଯେଉଁକାମଗୁଡ଼ିକ ହୁଏ, ଆଗ୍ରହ ଉଦ୍ଦୀପକ ହୋଇଥାଏ । ଛୋଟ ଯନ୍ତ୍ରପାତି ଏବଂ କୌଶଳଗୁଡ଼ିକ ବିଦ୍ୟୁତ୍ ସାହାଯ୍ୟରେ ତିଆରି ହୁଏ କିମ୍ବା ଏକାଠି ହୁଏ କିନ୍ତୁ ଏହା ଅନ୍ୟ ଭାବରେ ହାତରେ ତିଆର କରି ହୋଇ ପାରନ୍ତା । ( ୧୧, ୧୨୬)

ବିଦ୍ୟାଳୟର ବଗିଚା ସବୁଜର ସମୁଦ୍ର । ବିଦ୍ୟାଳୟରେ ଗୋଟିଏ ଖୋଲା ପଡ଼ିଆର ଆବଶ୍ୟକତା ଅନୁଭବ କରାଯାଇନାହିଁ । ଯେଉଁଠାରୁ ପବନ ବହି ଧୂଳିକଣାଗୁଡ଼ିକ ଶ୍ରେଣୀଗୃହଗୁଡ଼ିକରେ ପଶି ଯାଇଥାଆନ୍ତି । ବଗିଚା ବାହାରେ ଅସଂଖ୍ୟ ପରିମାଣର ସବୁଜ ଲନ୍‌ର ଦ୍ୱୀପ ରହିଛି ଏବଂ ନିଭୃତ ଘାସ ଦ୍ୱାରା ଆଚ୍ଛାଦିତ କୋଣ ରହିଛି । ସେ ସ୍ଥାନଗୁଡ଼ିକ ଏତେ ସବୁଜ ଯେ ଯଦିବା ପିଲାମାନେ ଘାସ ଉପରେ ବେଳେ ବେଳେ ଚଲାବୁଲା କରନ୍ତି ଏବଂ ତା' ଉପରେ ନାଚକୁଦ କରନ୍ତି, ତଥାପି ସେମାନେ ଏହାକୁ କ୍ଷତି କରିପାରନ୍ତି ନାହିଁ ।

ଅନେକ ଫୁଲ ଏବଂ ଘଞ୍ଚଭାବରେ ଗଛ ରହିଛି । ମୁଖ୍ୟ ବିଦ୍ୟାଳୟରୁ ପରୀକ୍ଷାଗାର ଏବଂ ପଠନଗୃହ ଆଡ଼କୁ ଯାଉଥିବା ରାସ୍ତାଟି ଗୋଲାପଫୁଲର ବୁଦାଦ୍ୱାରା ଘୋଡ଼େଇ ହୋଇ ରହିଛି । ଏହି ଗୋଲାପ ନିକୁଞ୍ଜଟି ଚାଲିବା ପାଇଁ ଏକ ଉତ୍ତମ ଜାଗା । ଫଳ ବଗିଚାରେ ପିଚ୍ ଏବଂ ଓକ୍ ଫଳଗଛ ସବୁ ରହିଛି । ସେଠାରେ ସୁବାସିତ ଫୁଲରେ ପରିପୂର୍ଣ୍ଣ ୩୦ଟି ନିବୃତ୍ତ ଗୁପ୍ତସ୍ଥାନ ରହିଛି । ସେଗୁଡ଼ିକ ଯୋଗ କରିବାପାଇଁ କିମ୍ବା ଏକାନ୍ତ ଭାବରେ ଗପ କରିବା ପାଇଁ ସୁନ୍ଦର ଜାଗା ହୋଇଛି । ସବୁଗୁଡ଼ିକ ମଣିଷ ଜୀବନର ଏକ ଅଙ୍ଗ ହିସାବରେ ସୁନ୍ଦର ହେବା ଉଚିତ ଏବଂ ସେଥିପାଇଁ ବିଦ୍ୟାଳୟର ବାହ୍ୟ ସୌନ୍ଦର୍ଯ୍ୟ ଉପରେ ଏତେ ଅଧିକ ଧ୍ୟାନ ଦେଇଛୁ । (୧୧,୧୨୬)

ଯେହେତୁ ପିଲାର ଆବେଗିକ ଏବଂ ସାଂସ୍କୃତିକ ଜଗତ ଗଠନ ହେଉଛି, ସେ ତା ଚାରିପାଖରେ ଯାହା ଦେଖେ, (ବିଦ୍ୟାଳୟର ବାରଣ୍ଡା, ଶ୍ରେଣୀଗୃହ ଏବଂ କର୍ମଶାଳା ) ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରେରଣାର ବା ଜ୍ଞାନଦୀପ୍ତ ହେବାର ଏକ ଉତ୍ସ ରହିବା ଅନୁଚିତ । । ଆମକୁ ସୁନିଶ୍ଚିତ କରିବାକୁ ହେବ ଯେ, ପ୍ରତିଟି ଅଙ୍କନ ଓ ପ୍ରତିଟି ଉଚ୍ଚାରଣରେ ପିଲାଟି ଦେଖିବ ଯେ, ନିଜ ଉପରେ ଓ ସାଙ୍ଗସାଥୀମାନଙ୍କ ଉପରେ ନୂଆନୂଆ ଅବଧାରଣାର ଏକ ଉତ୍ସ ହୋଇପଡୁଛି । ( ୧୧, ୧୩୦)

ତଳ ମହଲା ବାରଣ୍ଡାର ସାଜସଜ୍ଜା ୧୨ରୁ ୧୪ ବର୍ଷର ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ଏବଂ ଏହା ବିଦ୍ୟାଳୟର ମୁହଁ ବୋଲି କୁହାଯାଇପାରିବ । ଏହା ପାଠପଢ଼ା ଅନୁଷ୍ଠାନର ଶିକ୍ଷାଗତ ଉଦ୍ଦେଶ୍ୟ ଏବଂ କାର୍ଯ୍ୟ କରିବାର ଢାଞ୍ଚାକୁ ପ୍ରତିଫଳନ କରିଥାଏ । ଏହା ମଧ୍ୟ ଶିକ୍ଷକ ଏବଂ ଛାତ୍ରମାନଙ୍କର ଧାରଣା ଏବଂ କାର୍ଯ୍ୟ ବିଷୟରେ ସୂଚିତ କରାଇଥାଏ । (୧୧,୧୩୪)

ଗୃହର ବାରଣ୍ଡାରେ ଯେଉଁଠି ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ପିଲାମାନେ ପାଠ ପଢ଼ନ୍ତି, ପିଲାମାନଙ୍କର ଦୃଷ୍ଟି ଆକର୍ଷଣ ପାଇଁ ସେଠାରେ ଚିତ୍ରାଙ୍କନଗୁଡ଼ିକ ଲଗାଯାଇଛି । କିନ୍ତୁ ସେଗୁଡ଼ିକ କୌଣସି ଶିରୋନାମା ଦେବାର ଆବଶ୍ୟକତା ପଡ଼ୁନାହିଁ । ସେଗୁଡ଼ିକ ନୂଆ କରି ବିଦ୍ୟାଳୟକୁ ଆସୁଥିବା ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ।

ଏହି ଚିତ୍ରାଙ୍କନଗୁଡ଼ିକ ନିର୍ଦ୍ଦିଷ୍ଟ ସମୟସୀମା ଅନ୍ତରରେ ପରିବର୍ତ୍ତନ ହୁଏ । ବିଦ୍ୟାଳୟର ପାଠପଢ଼ା ବର୍ଷରେ ପିଲାମାନେ ଯେଉଁଗୁଡ଼ିକ ଦେଖି ଆଗ୍ରହୀ ହେବେ, ଏବଂ ଏପରିକି ସବୁଠାରୁ ଛୋଟ ପିଲାମାନେ ଶ୍ରେଣୀରେ କରିପାରିବେ, ସେଭଳି ଚିତ୍ରଗୁଡ଼ିକ ରଖାଯାଇଛି । ଏଭଳି ଛବିଗୁଡ଼ିକ " ଛବିରେ ଜଗତ" ଶୀର୍ଷକ ଜାଣିହେଲା ଭଳି ରଖାଯାଇଥାଏ । ଯାହା ପିଲାମାନଙ୍କୁ ତାହା ପାଖର ପରିବେଶ ସହିତ ପରିଚୟ କରାଇଥାଏ । କିଶୋର ପିଲାମାନେ ଛବିକୁ ଦେଖି ଉପଭୋଗ କରନ୍ତି ଏବଂ ଅନ୍ୟ ପିଲାମାନଙ୍କ ଛବିଗୁଡ଼ିକୁ ଦେଖି ନିଜ ଛବି ପରି ଅନୁଭବ କରନ୍ତି । ଛବିଗୁଡ଼ିକରେ ପିଲାମାନେ ଖେଳୁଥିବା, ବିଦ୍ୟାଳୟରେ ପାଳିତ ହୋଇଥିବା, ପଶୁପକ୍ଷୀର ଯତ୍ନ ନେଇଥିବା, ପିଲାମାନଙ୍କର ଉଦ୍‌ଭିତ ବଗିଚା, ସବୁଜ ଘରେ କାମ କରୁଥିବା ବେଳେ କୌଣସି ଖରାପ କାମ କରୁଥିବା ଦୃଶ୍ୟ ରହିଥାଏ । ଏହା ଛଡ଼ା ପିଲାମାନଙ୍କର ଚିତ୍ତବିନୋଦନ ସମୟର ଛବି, କାମ, ଖେଳରେ ଆଗୁଆ ହୋଇ ବାହାରୁଥିବା ଦୃଶ୍ୟ, ତଳଶ୍ରେଣୀ ପିଲାମାନଙ୍କର ଦୃଶ୍ୟଗୁଡ଼ିକ ଛବି ଆକାରରେ ଅଙ୍କା ହୋଇଥାଏ । ଏଭଳି ଛବିରେ ଆଉ ମଧ୍ୟ ସେମାନଙ୍କର ବୟସର କିଶୋର ପିଲାମାନେ କିମ୍ବା ତାଙ୍କ ଠାରୁ ଟିକିଏ ଅଧିକ ବୟସର ପିଲାମାନେ କାର୍ ଚଢ଼ିବାର ଦୃଶ୍ୟ ଦେଖାଯାଇଥାଏ । ଏହା ସେମାନଙ୍କ ପାଇଁ ବହୁତ ଆଗ୍ରହ ଉଦ୍ଦୀପକ ହୋଇଥାଏ । ଛବିଗୁଡ଼ିକରେ ଚିତ୍ରିତ ଜଗତଟି ପିଲାମାନଙ୍କର ବାସ୍ତବ ଜଗତ ହିସାବରେ ପ୍ରକଟିତ ହୋଇଥାଏ । (୧୧,୧୩୦)

ଛୋଟ ପିଲାମାନେ ସେମାନଙ୍କର ଚାରିପାଖର ଜଗତକୁ ବୁଝିବା ପାଇଁ ଆମେ ଛବି ଟାଙ୍ଗି ଥାଉ । ଉଦାହରଣ ସ୍ୱରୂପ '''ଏପରି କାହିଁକି ହେଲା '' ଶୀର୍ଷକରେ ଗୁଡ଼ାଏ ଛବି ଟଙ୍ଗା ହୋଇଥାଏ । ଛବିଗୁଡ଼ିକ ପ୍ରକୃତି କିମ୍ବା କାମ କରୁଥିବା ସ୍ଥାନଗୁଡ଼ିକର ଏବଂ ପିଲାମାନଙ୍କର ଜଣାଶୁଣା ହୋଇଥାଏ । ଅବଶ୍ୟ ତା' ଭିତରୁ କେତେକ ଅପରିଚିତ ଛବି ଥାଏ ଯାହା ପିଲାମାନଙ୍କୁ ଚିନ୍ତା କରିବାପାଇଁ ସାହାଯ୍ୟ କରିପାରେ ନାହିଁ । ତାହା ସେମାନଙ୍କୁ ବିସ୍ମୟ କରିଥାଏ । ଯୁଲୋ ଗଛର ଡାଳକୁ

ଆର୍ଦ୍ରମାଟିରେ ପୋତିଲେ ପିଲ ଦେବ, ଗଛରେ ପରିଣତ ହେବ । କିନ୍ତୁ ଓକ୍ ଗଛର ଡାଳକୁ ପୋତିଲେ ଏହା ନଷ୍ଟ ହୋଇଯିବ , ତାହାର କାରଣ କ'ଣ । ଏକ ବସନ୍ତର ରାତିରେ ଯେତେବେଳେ ଥଣ୍ଡାପବନର ଢେଉ ଉତ୍ତର ଦିଗରୁ ଆସିବ ଏବଂ ଫୁଲଗଛଗୁଡ଼ିକର ନଷ୍ଟ ହେବାର ଭୟ ଦେଖାଯିବ, ସେତେବେଳେ ଉତ୍ସବାଗ୍ନି ଫଳବଗିଚାରେ ଜଳିବ ଏବଂ ନଷ୍ଟ ହେବାରେ ପ୍ରତିରୋଧ କରିବ । ଏହାର କାରଣ କ'ଣ ? ଏହିପରି ଅନେକ ।

ଦ୍ୱିତୀୟ ପର୍ଯ୍ୟାୟ ଛବିଗୁଡ଼ିକର ଶୀର୍ଷକ "ସେମାନେ କ'ଣ କରୁଛନ୍ତି ?" ରହିଛି । ପୁରୁଷ ଲୋକମାନେ ଶୀତଋତୁରେ ବହଳ ଭାବରେ ବରଫ ପଡ଼ିଥିବା ପୋଖରୀରେ ଖୋଳୁଥିବାର ଦୃଶ୍ୟ ଦେଖାଯାଇଛି । ଏହା କ'ଣ ପାଇଁ ହେଉଛି । ଖରାଦିନର ଉତ୍ତାପରେ ଶୁଷ୍କ ମାଟି ଉପରେ ପନିପରିବା ଗଛ ମୂଳରେ ଗୋବର ମୋଟା ଆକାରରେ ବିଛାଯାଉଛି । ଏହାର କାରଣ କ'ଣ ? ଖରାଦିନରେ କ୍ଷୀର ଜଗ୍‌ଗୁଡ଼ିକ ଓଦା କପଡ଼ାରେ ଘୋଡ଼ା ଯାଇଅଛି । କ'ଣ ପାଇଁ ? କୁରାଢ଼ି କିମ୍ବା ହାମର୍ ତିଆରି କରିବା ଲୁହାକଣ୍ଡାଗୁଡ଼ିକ ଗରମ୍ କରାଯାଇଥାଏ । ଏହିପରି ଅନେକ ।

ତୃତୀୟ ପର୍ଯ୍ୟାୟର ଛବି "ଏଠାରେ କ'ଣ ଭୁଲ୍ ଅଛି ?" ଶୀର୍ଷକରେ ରଖାଯାଇଅଛି । ଛବିରେ ଜାଣି ଜାଣି ଭୁଲ୍‌ଗୁଡ଼ିକ କରାଯାଇଥାଏ । ଓକ୍ ଗଛର ଅନ୍ଧାରୁଆ ଜାଗାରେ ନାଲିଆ ଟମାଟୋ ଗୁଡ଼ିକ ପାଚୁଥିବାର ଦୃଶ୍ୟ, ପୂର୍ବରୁ ଫୁଲ ଧରିଥିବା ସେଓ ଗଛରୁ କୃଷକମାନେ ସାମୂହିକ ଭାବେ ତରଭୁଜ ଆଣୁଥିବାର ଦୃଶ୍ୟ, ପପୁଲାର୍ ଗଛର ଛାଇ, ସୂର୍ଯ୍ୟ ଯେଉଁ ଦିଗରୁ ରଶ୍ମି ବିକିରଣ କରୁଛନ୍ତି, ସେ ଦିଗରେ ପଡ଼ିବାର ଦୃଶ୍ୟ, ମହୁ ବାକ୍ସ ଗୁଡ଼ିକ ବାହାରକୁ ନିଆଯାଉଛି ଏବଂ ଯେଉଁ କ୍ଷେତରେ ଗହମ ବୁଣା ଯାଇଛି, ସେଠାରେ ମହୁ ବାକ୍ସଗୁଡ଼ିକ ରଖାଯାଇଛି । ଏହିପରି ଅନେକ ଛବି ରଖାଯାଇଛି । ଏଭଳି ଛବିଗୁଡ଼ିକ ଯୁବସମାଜକୁ ପୃଥିବୀର ପ୍ରକୃତି ଓ କୃତି ବିଷୟରେ ଚିନ୍ତା କରିବା ପାଇଁ ସୁଯୋଗ ଦିଏ ।

ଚତୁର୍ଥ ପର୍ଯ୍ୟାୟରେ "ଏହା କେଉଁଠାରେ ହୁଏ ? " ଶୀର୍ଷକରେ ପିଲା ଜାଣିଥିବା ଦୃଶ୍ୟଗୁଡ଼ିକ ବହିରୁ ଦେଖାଯାଇଥାଏ । ପିଲାମାନଙ୍କୁ ବଡ଼ଲୋକମାନେ ନଜରରେ ରଖୁଛନ୍ତି । ଏଗୁଡ଼ିକ ସେମାନେ ଜାଣିଥିବା ବଡ଼ମାନଙ୍କର ନିଜସ୍ୱ ଗପ କିମ୍ବା ସିନେମାରୁ ଅଣାଯାଇଥାଏ । ଉଦାହରଣ ସ୍ୱରୂପ ଉଡ଼ାଜାହାଜଟିଏ ବରଫ

ହୁଙ୍କା ଦ୍ୱାରା ଘେରି ରହିଥିବା ଯିବାଆସିବା ବାଟରେ ଓହ୍ଲେଇବାର ଦୃଶ୍ୟ, ରକେଟ୍‌ଟିଏ ତାରାମାନେ ଆକାଶର ଗହଣରେ ରହିଥିବା ଢ଼ଳେଇ ହୋଇ ରହିଥିବ ଏବଂ ଝରକାରେ ପିଲାମାନଙ୍କର ପରିଚିତ ସୋଭିଏତ୍ ଦେଶର ପ୍ରଥମ ମହାକାଶଚାରୀର ହସହସ ମୁହଁର ଦୃଶ୍ୟ , ଏଭଳି ଛବି ଅନେକ ଦିଆଯାଇଥାଏ । ( ୧୧,୧୩୦)

କାନ୍ଥରେ ମରାଯାଇଥିବା ବୋର୍ଡ଼ର ଶୀର୍ଷକ ଏହା କାହିଁକି ହେଲା ? ଏଥିରେ ଛବିଗୁଡ଼ିକ ନିମ୍ନ ପ୍ରକାର ଶିରୋନାମାରେ ରହିଛି । "ଶୀତଦିନେ 'କାର୍' ଗାଡ଼ିର ସବୁ ଧାତବ ଅଂଶଗୁଡ଼ିକ ତେଲିଆ ଜିନିଷ ସହିତ କାହିଁକି ଘସି ହୁଏ, ବିହନ ଲଗାଇବା ପୂର୍ବରୁ ଆଳୁ କାହିଁକି ଗଜା ହୋଇଥାଏ , ବର୍ଷା ହେବାର ଦୁଇଦିନ ପରେ ଜମିରେ କାହିଁକି ମଇ ଦିଆଯାଏ, କୋଇଲା ଜଳେଇବା ପୂର୍ବରୁ ଓଦା କାହିଁକି କରାଯାଏ , ଏହିପରି ଅନେକ । "କେମିତି ଜାଣିବା" ଶୀର୍ଷକରେ ଚିତ୍ରାଙ୍କନର ସିରିଜ୍ ରହିଛି । ଗୋଟିଏ ଡାଳକୁ ନଦେଖି ମଧ୍ୟ ଫଳଗଛର ବୟସକୁ କେମିତି ଜାଣିବ ? ଶରତ ଋତୁରେ ସେଓ ଗଛର ଫୁଲ ଫୁଟେ କି ? ଯଦି ଫୁଟେ, ତାହାହେଲେ ଶୀତ ଦିନେ କିପରି ମିଳିପାରିବ ? କେଉଁ ଉଡ଼ାଜାହାଜ ସେଠାରେ ଉଠୁଛି ଏବଂ ଏହା କେଉଁ ଯନ୍ତ୍ର (Propeller କିମ୍ୱା ଜେଟ୍ ) ଦ୍ୱାରା ଚାଲୁଛି । (୧୧,୧୩୩)

ମୁଖ୍ୟ ଗନ୍ତବ୍ୟ ପଥର କୋଠରୀର ମଝିରେ ଲେଲିନ୍‌ଙ୍କର Komsomol's ଉପରେ ଏକ ପ୍ରଦର୍ଶନୀ ଅଛି । ଲେଲିନ୍‌ଙ୍କର ସାମ୍ୟବାଦୀ ନୈତିକତା ଉପରେ ମତଦାନKomsomol's ବୀରମାନଙ୍କର ଶୋଷଣ, ଆମ ଗାଁ'ର ସବୁଠାରୁ ଭଲଲୋକ ଶୀର୍ଷକରେ ପୋଷ୍ଟର ଆଉ ଛବିଗୁଡ଼ିକ ରଖାଯାଇଛି । ତାହାପରେ ଲେଲିନ୍‌ଙ୍କ ଉପରେ କ'ଣସବୁ ପୁସ୍ତକ ପଢ଼ାଯିବା ଉଚିତ୍ ତାହାର ଏକ ତାଲିକା ରହିଛି ।

ପ୍ରଦର୍ଶନୀର ମୂଳ ଆକର୍ଷଣ ହେଉଛି ଯେ ଏଠାରେ "ମାନବଜାତି ପାଇଁ ଜ୍ୱଳନ୍ତ ଆଗ୍ରହ" ଶୀର୍ଷକରେ ଆମ ଦେଶ ଏବଂ ବାହାର ଦେଶର ମୁଖ୍ୟ ଘଟଣାବଳୀ ଉପରେ ଆଧାରିତ ଲେଖା ଓ ଫଟୋସବୁ ରହିଛି । ( ୧୧,୧୪୩)

ପ୍ରଥମ ମହଲାର ଫାଟକରେ ଯେଉଁଠାରେ ଉପର ଶ୍ରେଣୀ ପିଲାମାନଙ୍କର ଶ୍ରେଣୀଗୃହ ରହିଛି, ସେଠାରେ ଗୋଟିଏ ପୋଷ୍ଟର ରହିଛି ଏବଂ ସେଥିରେ ଲେଖା ଅଛି : " ବାଳକ ଓ ବାଳିକାମାନେ; ତୁମେମାନେ ପ୍ରୌଢ଼ ହିସାବରେ ଜୀବନ

ବିତେଇବା ପାଇଁ ଧ୍ୱାର ଦେଶରେ ଉପନୀତ । ତୁମ୍ଭେମାନେ ଭଲ ମଣିଷ ହେବାପାଇଁ ଶିକ୍ଷା ନିଜ ହାତକୁ ନେବା ପାଇଁ ଶିଖିବା ନିହାତି ଦରକାର । ଆତ୍ମ ଶିକ୍ଷଣ ସମ୍ବନ୍ଧରେ ବିଖ୍ୟାତ ଲୋକମାନଙ୍କର କଥାକୁ ମନଯୋଗ ଦେଇ ଜାଣିବା ପାଇଁ ଚେଷ୍ଟା କର ।" ଖ୍ୟାତିସମ୍ପନ୍ନ ପୁରୁଷ ଓ ମହିଳାମାନଙ୍କର କଥାକୁ ମାନି ଚଳ । ( ୧୧, ୧୪୦)

ଆମେ ଏପରି ବିଦ୍ୟାଳୟ ଗଢ଼ିତୋଳିବା ପାଇଁ ଚେଷ୍ଟା କରୁ, ଯେଉଁଠି ତା'ର କାନ୍ଥ ମଧ୍ୟ ପିଲାଙ୍କୁ କଥା କହେ ।

ପୋଷ୍ଟର ଏବଂ କାନ୍ଥ ବୋର୍ଡ଼ରେ ଲେଖା ହୋଇଥିବା ମତଗୁଡ଼ିକ ଛାତ୍ରମାନଙ୍କର ବୌଦ୍ଧିକ ଅନୁଭବକୁ ବଢ଼େଇବା ପାଇଁ ସାହାଯ୍ୟ କରିବ ଏବଂ ଏହା ପ୍ରଥମତଃ ଆଗ୍ରହ ଜନ୍ମାଇବ । କାରଣ ସେମାନେ ଆମଛାତ୍ରମାନଙ୍କୁ ଦେଉଥିବା ସମ୍ପୂର୍ଣ୍ଣ ବ୍ୟବସ୍ଥାର ନୈତିକ, ବୌଦ୍ଧିକ ଏବଂ ସୌନ୍ଦର୍ଯ୍ୟଜ୍ଞାନର ଅଂଶ । ଯଦି ଉପରେ ଲେଖାଯାଇଥିବା କଥାଗୁଡ଼ିକ ବର୍ତ୍ତମାନର ବିଦ୍ୟାଳୟ ସମୂହର ଚାହିଦା ଏବଂ ସମସ୍ୟା ସହିତ ସମ୍ପର୍କ ନରହିଲା ତାହାହେଲେ ଏଭଳି କଥାଗୁଡ଼ିକ ସେମାନଙ୍କର ମସ୍ତିଷ୍କ କିମ୍ବା ହୃଦୟକୁ ଛୁଇଁପାରିବ ନାହିଁ । ଏବଂ ଏହା କାଲା ଆଗରେ ମୂଳା ଚୋବାଇଲା ଭଳି ହେବ । ବିଦ୍ୟାଳୟରେ ପାଠପଢ଼ାକୁ ଦେଖି କାନ୍ଥ ବୋର୍ଡ଼ ଏବଂ ପୋଷ୍ଟର ଯେତେସବୁ ଅଛି, ପରିବର୍ତ୍ତନ ଘଟିଥାଏ । (୧୧,୧୩୮)

## ଆମର ଅଧାକାମ ସ୍ୱାସ୍ଥ୍ୟର ଯତ୍ନ ପାଇଁ ନିୟୋଜିତ

ପିଲାମାନଙ୍କର ମସ୍ତିଷ୍କ ଗୋଟିଏ ବୈଦ୍ୟୁତିକ ଯନ୍ତ୍ର, ଯାହା ସବୁ ଜିନିଷକୁ ଗ୍ରାସ କରିପାରିବ - ଏପରି ଏକ ଦୃଷ୍ଟି ଦ୍ୱାରା ପର୍ଯ୍ୟବେସିତ ପରୀକ୍ଷଣ ଗୁଡ଼ିକ ଯାହା 'ଫଳଦାୟକ' କିମ୍ବା 'ତ୍ୱରାନିତ' ପଦ୍ଧତିଗୁଡ଼ିକୁ ନେଇ ହୋଇଥାଏ, ତାକୁ ଆମେ ଅନୁମୋଦନ କରିନଥାଉ । ପିଲାଟିଏ ଜଣେ ଜୀବନ୍ତ ବ୍ୟକ୍ତି , ଯାହାର ମୁଣ୍ଡ ହେଉଛି ଅସୀମ, ଜଟିଳ ଏବଂ ଶୁକ୍ଷ୍ମ ଅଙ୍ଗ । ସେଥିପାଇଁ ଆମକୁ ତାହାକୁ ଚିନ୍ତାଶୀଳ ଭାବରେ ଯତ୍ନ ନେବାକୁ ହେବ । ପ୍ରାଥମିକ ଶିକ୍ଷାର ପାଠ୍ୟକ୍ରମକୁ ତିନିବର୍ଷ ଭିତରେ ଶେଷ କରିଦେଇ ହେବ କେବଳ ଗୋଟିଏ ସପ୍ତାହରେ, ଯଦି ପିଲାମାନଙ୍କର ସ୍ୱାସ୍ଥ୍ୟ ପ୍ରତି ସବୁବେଳେ ଧ୍ୟାନ ଦିଆଯାଏ ଏବଂ ସେମାନଙ୍କର ସାଧାରଣ ଶାରୀରିକ ବିକାଶ ପାଇଁ ସବୁପ୍ରକାର ଚେଷ୍ଟା କରାଯାଏ । ଚଞ୍ଚଳତା ଓ ଏକାଗ୍ରତା ଦ୍ୱାରା ମାନସିକ କାମର ସଫଳତା ଆସେ ନାହିଁ । ଏହା ଚିନ୍ତାଶୀଳ ଓ ଯତ୍ନଶୀଳ ଅନୁଷ୍ଠାନ ଦ୍ୱାରା ଆସେ , ଯାହାର କାମ ବହୁମୁଖୀ -ଶାରୀରିକ, ବୌଦ୍ଧିକ ଏବଂ ସୌନ୍ଦର୍ଯ୍ୟ ଶିକ୍ଷା ଦ୍ୱାରା ପର୍ଯ୍ୟବେସିତ । (୧୧.୧୪୭)

ଶୋଇବାକୁ ଯିବା ପୂର୍ବରୁ ଯଦି ପିଲାଟି ତା'ର ଘରେ କରିବାକୁ ଥିବା ପାଠକୁ ସାରିବା ପାଇଁ ଅନେକ ସମୟ ଧରି ବସେ, ସେ ପଛରେ ପଡ଼ିବା ଆରମ୍ଭ କରେ । ପିଲା ଯେତେବେଳେ ସାଧାରଣ ଭାବେ ମାନସିକ ସ୍ତରରେ ପଢ଼ାପଢ଼ି କାର୍ଯ୍ୟରେ ନିୟୋଜିତ ହୋଇଥାଏ, ସେତେବେଳେ ତା'ର ମାନ୍ଦା ଅବସ୍ଥା ଆସିଥାଏ । ସେ ବାହାରେ ବଗିଚା କିମ୍ବା ଖେଳ ପଡ଼ିଆରେ ବେଶୀ ସମୟ କଟାଇବାର ଥିଲା, ତାହା ହୋଇପାରିଲା ନାହିଁ ବୋଲି ଏହା ହୁଏତ ଆସେ ନାହିଁ । (୧୧,୧୫୦)

ନିଦ୍ରାରୁ ଉପସମ ହେବା ଜଣେ କେତେ ସମୟ ଶୋଉଛି ତା' ଉପରେ ନିର୍ଭର କରେ ନାହିଁ । ଏହା ଜଣେ ମଣିଷ ରାତ୍ରୀର କେଉଁ ଭାଗରେ ଶୋଇଛି ଏବଂ ଦିନ ବେଳରେ ସେ କ'ଣ ଏବଂ କେତେ ବେଳେ କାମ କରିଛି, ତାହା ଉପରେ ନିର୍ଭର କରେ । ଯିଏ ଶୀଘ୍ର ଶୋଇବା ପାଇଁ ଯାଏ, ଯଦି ତା'ର ଠିକ୍ ନିଦ ହୁଏ, ଶୀଘ୍ର ଉଠେ ଏବଂ ଜାଗ୍ରତ ସମୟର ପ୍ରଥମ ପାଞ୍ଚ-ଦଶ ଘଣ୍ଟା ଗଭୀର ମାନସିକ କାର୍ଯ୍ୟରେ ସମ୍ପୃକ୍ତ ରୁହେ, ସେ ସବୁଠୁ ବେଶୀ ଆରାମ ଅନୁଭବ କରେ । (ବ୍ୟକ୍ତିର ବୟସ ଅନୁସାରେ ସମୟ ନିରୂପଣ ହେବ )। କାମ କରିବା ପୂର୍ବରୁ ନିଦର ଗଭୀରତା କମ୍ ଥାଏ । ଶୋଇବାର ଶେଷ ପାଞ୍ଚ ସାତ ଘଣ୍ଟାରେ ଗଭୀର ମାନସିକ କାମ ବିଶେଷ କରି ହୃଦୟ ସହିତ ଶିଖିବା ସମ୍ଭବ ହୋଇନଥାଏ । ( ଯେଉଁମାନେ ଭଗ୍ନ ସ୍ୱାସ୍ଥ୍ୟରେ ଥାଆନ୍ତି କିମ୍ବା ଅସୁସ୍ଥତାରୁ ଆରୋଗ୍ୟ ହେଉଥାଆନ୍ତି, ଏଭଳି କାମ ଶୋଇବାକୁ ଯିବା ସମୟର ଶେଷ ୮ - ୯ ଘଣ୍ଟାରେ ସମ୍ଭବ ହୋଇନଥାଏ )। (୧୧,୧୫୦)

ଅନୁଭୂତିରୁ ଜଣାପଡ଼େ ଯେ ଯଦି ପାଠପଢ଼ା ଏବଂ ଶିକ୍ଷାଗତ କାର୍ଯ୍ୟ ଠିକ୍ ଭାବରେ ସଂଗଠିତ ହୋଇଥାଏ , (ବିଶେଷ କରି ପାଠପଢ଼ାରେ ନୂଆ ଜିନିଷ ପଢ଼ିବା) ସକାଳର ୧.୩୦ ରୁ ୨ ଘଣ୍ଟା ଭିତରେ ବେଳେ ବେଳେ ୨ ଘଣ୍ଟା ୩୦ ମିନିଟ୍ ଭିତରେ ସ୍କୁଲ ସମୟ ପରେ ଯେତିକି କାମ କରିହେବ ତା'ର ଦୁଇଗୁଣ ମାନସିକ କାର୍ଯ୍ୟ ହାସଲ କରିହେବ । ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ପିଲାମାନେ ସେମାନଙ୍କ ଘରେ କରିବାକୁ ଥିବା ପାଠପଢ଼ା କାମ ସକାଳର ୨୦ ରୁ ୨୫ ମିନିଟ୍ ମଧ୍ୟରେ ସାରିଥାଆନ୍ତି । ତୃତୀୟ, ଚତୁର୍ଥ ଏବଂ ପଞ୍ଚମ ଶ୍ରେଣୀର ପିଲାମାନେ ସେହିଭଳି ୪୫ ମି ନିଟ୍‌ରେ କାମ ସାରିଥାଆନ୍ତି । ବିଦ୍ୟାଳୟ ପାଠପଢ଼ା ଅନୁଭୂତିରୁ ଜଣାଯାଏ ଯେ ଘରେ କରିବାକୁ ଦିଆଯାଇଥିବା ପାଠପଢ଼ାକୁ ବାଦ୍ ଦିଆଯାଇ ପାରିବ ନାହିଁ । ଅଧିକ ସମୟ ନେଉଥିବା କାମ ଗୁଡ଼ିକ ( ପ୍ରବନ୍ଧ, ଜଟିଳ ଚିତ୍ରାଙ୍କନର ପ୍ରଭାବ) କେତେ

ଦିନ ଧରି ହେବା ଦରକାର, ନିର୍ଦ୍ଦିଷ୍ଟ ଭାବରେ ଏହା କିପରି କରାଯାଇପାରିବ, ଏକ ପ୍ରଶ୍ନ, ଯାହାକୁ ଭିତ୍ତି କରି ଶିକ୍ଷକ ଛାତ୍ରମାନଙ୍କୁ ଉପଦେଶ ଦେବେ ।

ପିଲାଟିର ସକାଳର ମାନସିକ କାମ ତାକୁ ଦିଆଯାଇଥିବା ପାଠ ପଢ଼ିବାଠାରୁ ଆରମ୍ଭ ହୋଇଥାଏ । ( ୧୧,୧୫୪)

ଯେଉଁ ପାଠପଢ଼ୁଆ ପିଲାମାନେ ମଧ୍ୟାହ୍ନ ଭୋଜନ କରିବାପାଇଁ ଏବଂ ଉପରବେଳାର ଘରେ କରିବାକୁ ଥିବା ପାଠ କରିବାପାଇଁ ରୁହନ୍ତି , ସେମାନେ ସବୁବେଳେ ବହି ପଢ଼ିନଥାନ୍ତି । ସେମାନଙ୍କ ଘରେ କରିବାକୁ ଥିବା ପାଠ ସକାଳେ ଶେଷ ହୋଇଥାଏ । ଏଭଳି ପିଲାମାନଙ୍କ ପାଇଁ କରାଯାଉଥିବା ଦଳଗୁଡ଼ିକ ପରିବାର ମାନଙ୍କ ପାଇଁ ଘରୋଇ ବ୍ୟବସ୍ଥା କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ଏହା କୌଣସି ମତେ ପରିବାରର ସମକକ୍ଷ ହୋଇନଥାଏ । ବାପା, ମା'ଙ୍କୁ ସେମାନଙ୍କ ପିଲା ଯତ୍ନ ନେବାକୁ ଡକା ନଗଲେ ସେମାନେ ଅସ୍ୱାଭାବିକ ଏବଂ ବିବୃତ ହୁଅନ୍ତି । ପିଲା ଓ ପିତାମାତାଙ୍କ ସହ ପ୍ରତ୍ୟେକ ଦିନ ବରାବର ସମ୍ପର୍କ ହୋଇ ନପାରିଲେ ଶିକ୍ଷା ବିକୃତ ଏବଂ ଅସ୍ୱଭାବିକ ହୋଇଥାଏ । (୧୧,୧୫୫)

ବିଦ୍ୟାଳୟ ବ୍ୟାୟାମ ଏବଂ ଖେଳକୁ ଶାରୀରିକ କାର୍ଯ୍ୟ ହିସାବରେ ଗ୍ରହଣ କରିଥିଲା । ପିଲାମାନଙ୍କର ସୌନ୍ଦର୍ଯ୍ୟ ଜ୍ଞାନ, ଶକ୍ତି, ଐକ୍ୟ, ଏକାଗ୍ରତା, ଚଞ୍ଚଳତା ବୃଦ୍ଧି କରିବା ପାଇଁ ଏଭଳି କସରତର ଉଦ୍ଦେଶ୍ୟ ଥିଲା । ଛାତ୍ରମାନେ ଯେତେବେଳେ ନୂଆ ବ୍ୟାୟାମ ଅଭ୍ୟାସ କରୁଥିଲେ, ସୌନ୍ଦର୍ଯ୍ୟବୋଧର ଉତ୍କର୍ଷତା ଉପରେ ମନୋନିବେଶ କରାଯାଉଥିଲା । ବିଭାଗରେ ପରିପୂର୍ଣ୍ଣତା ହାସଲ କରିବାର ଇଚ୍ଛା ଗୋଟିଏ ମୁଖ୍ୟ ଉତ୍ସାହ ହୋଇ ରହିଥିଲା । ଏହା ଛାତ୍ରମାନଙ୍କୁ ଶାରୀରିକ ବ୍ୟାୟାମ ଠାରୁ ସକାଳ ଆରମ୍ଭ କରିବାକୁ ଅଭ୍ୟାସରେ ପକାଇ ଦେଇଥିଲା । (୧୧,୧୫୯)

ଦୌଡ଼ିବା, ପହଁରିବା ଆଦି କସରତ କଲାବେଳେ ଆମେ ସୌନ୍ଦର୍ଯ୍ୟର ପରିପକ୍ୱତା ଉପରେ ଗୁରୁତ୍ୱ ଆରୋପ କରିଥାଉ । ଏଭଳି ଅନ୍ୟପ୍ରକାର ଖେଳ ପାଇଁ ସୌନ୍ଦର୍ଯ୍ୟ ସୌହାର୍ଦ୍ଦ୍ୟପୂର୍ଣ୍ଣ ଗତି ଅନୁଗ୍ରହକୁ ବିଚାର କରିବା ପାଇଁ ଏକ ନିୟମ ହୋଇଯାଉଛି । ଏବଂ ବେଗ ଏଠାରେ ଗୌଣ ହୋଇଥାଏ । ସୌନ୍ଦର୍ଯ୍ୟ କେବଳ ଏଠାରେ ପ୍ରଦର୍ଶନ ହୋଇ ଆସିନାହିଁ । ଏହା ଏଠାରେ ତିଆରି ହୋଉଛି ଏବଂ ଶାରୀରିକ ପୂର୍ଣ୍ଣତା କ୍ଷେତ୍ରରେ ଏହି ନିୟମ ଲାଗୁ ରହିଛି । ଅନ୍ୟ ଭାଷାରେ ଶାରୀରିକ ଶିକ୍ଷାର ମୂଳ ଉଦ୍ଦେଶ୍ୟ ହାସଲ କରିବା ପାଇଁ ପ୍ରଚେଷ୍ଟା ଚାଲିଛି । ମୋଟାମୋଟି ଭାବରେ ଆମେ ପ୍ରତିଯୋଗିତାକୁ ପ୍ରଶ୍ରୟ ଦେବୁନାହିଁ, ଯେଉଁଠି

ସଫଳତାର ମାନଦଣ୍ଡ କେବଳ ଗତିଶୀଳତା । ଏହା ଅସ୍ୱାସ୍ଥ୍ୟକର ଉତ୍ତେଜନା ଏବଂ ଅଭିଳାଷକୁ ପ୍ରୋତ୍ସାହନ ଦେଇଥାଏ । ଏହିଭଳି ପ୍ରତିଯୋଗିତାରେ ସବୁବେଳେ ସୌନ୍ଦର୍ଯ୍ୟ, ସୌନ୍ଦର୍ଯ୍ୟତାର ଅଭାବ ଥାଏ । ଏବଂ ବ୍ୟକ୍ତିଗତ ସୁବିଧାସୁଯୋଗ ବିଚାରକୁ ନେବା ଏବଂ ପସନ୍ଦ କରିବା ହେଉଛି ସବୁଠାରୁ ନିନ୍ଦାର ବିଷୟ । ଖେଳ ସବୁପିଲାଙ୍କ ବ୍ୟକ୍ତିଗତ ସଫଳତା ପାଇଁ ଶାରୀରିକ ଶିକ୍ଷା ହିସାବରେ ରୂପାନ୍ତରିତ ହେବାକଥା ନୁହଁ । ଖେଳରେ ପିଲାମାନେ ଭଲ ଓ ମନ୍ଦକୁ ନେଇ ଭାଗ ନେବା ଉଚିତ୍ ନୁହେଁ ଏବଂ ସେମାନଙ୍କୁ ଅସ୍ୱାସ୍ଥ୍ୟକର ଆବେଗର ସହିତ ଉତ୍ତେଜିତ କରାଇବା ଉଚିତ୍ ନୁହଁ । ବିଦ୍ୟାଳୟରେ ଖେଳର ସମ୍ଭାବନା ଓ ମର୍ଯ୍ୟାଦାକୁ ଆଖି ଆଗରେ ରଖି ଖେଳ ଯେତେବେଳେ ସମସ୍ତଙ୍କର ପ୍ରିୟ ହୁଏ, ସେତେବେଳେ ଶିକ୍ଷାର ଏକ ମାଧ୍ୟମ ହୋଇ ରହିଥାଏ । (୧୧,୧୬୦)

## ପାଠପଢ଼ା ନିଶ୍ଚିତ ଭାବରେ ସମସ୍ତଙ୍କ ପାଇଁ ଏକ ବିଜ୍ଞାନ

ମୁଁ ଦୃଢ଼ଭାବରେ ହୃଦୟଙ୍ଗମ କରେ ଯେ ଶିକ୍ଷଣ ପ୍ରକ୍ରିୟା ନିଶ୍ଚିତ ଭାବରେ ପ୍ରତ୍ୟେକଙ୍କ ପାଇଁ ଏକ ବିଜ୍ଞାନ - ଏପରିକି ଶିକ୍ଷକ ଓ ପିତାମାତାଙ୍କ ପାଇଁ । ଆମେ ପିତାମାତାଙ୍କୁ ଶିକ୍ଷାଗତ ବିଜ୍ଞାନ ଉପରେ ସର୍ବନିମ୍ନ ଧାରଣା ଦେବାପାଇଁ ଚେଷ୍ଟା କରୁଥିଲୁ । ଏହାକୁ ଆଖିଆଗରେ ରଖି ଆମେ ପିତାମାତାଙ୍କ ପାଇଁ ସ୍ୱତନ୍ତ୍ର ପାଠ ଆରମ୍ଭ କରିଥିଲୁ । ଯେଉଁଥିରେ ସେମାନେ ନିଜର ପିଲା, ବିଦ୍ୟାଳୟରୁ ଆସିବା ପୂର୍ବରୁ ନାମ ଲେଖାଇବେ ଏବଂ ସେମାନଙ୍କର ପିଲା ମାଧ୍ୟମିକ ପାଠ ଶେଷ କରିବା ପର୍ଯ୍ୟନ୍ତ ସ୍ୱତନ୍ତ୍ର ପାଠରେ ଯୋଗ ଦେବେ । ପିତାମାତାଙ୍କ ପାଇଁ ମନୋବିଜ୍ଞାନ ଏବଂ ଶିକ୍ଷା ଉପରେ ପାଠ୍ୟଖସଡ଼ା ୨୫୦ ଘଣ୍ଟାର ହୋଇଥିଲା । ପାଠ୍ୟଖସଡ଼ାରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ସବୁ ବିଭାଗକୁ ଅଣାଯାଇଥିଲା । କିନ୍ତୁ ବିଭିନ୍ନ ବୟସରେ ପିଲାମାନଙ୍କ ମନସ୍ତାତ୍ତ୍ୱିକ ଦିଗ, ବ୍ୟକ୍ତିତ୍ୱର ମନୋବିଜ୍ଞାନ ଏବଂ ଶାରୀରିକ, ବୌଦ୍ଧିକ, ନୈତିକ ଏବଂ ସୌନ୍ଦର୍ଯ୍ୟତାର ତତ୍ତ୍ୱଗୁଡ଼ିକୁ ସ୍ୱତନ୍ତ୍ର ଭାବରେ ଧ୍ୟାନ ଦିଆଯାଉଥିଲା । ଶିଖିବାକୁ ଆସୁଥିବା ପିତାମାତାଙ୍କୁ ତତ୍ତ୍ୱଭିତ୍ତିକ ଜ୍ଞାନ ଦେବାପାଇଁ ଚେଷ୍ଟା କରୁଥିଲୁ, ଯାହାଦ୍ୱାରା ସେମାନେ ପିଲାମାନଙ୍କର ବୌଦ୍ଧିକ ଏବଂ ମାନସିକ ବିକାଶରେ ଲଗାଇପାରିବେ । (୧୧,୩୫)

ଆମେ ପିତାମାତାଙ୍କର ଉପସ୍ଥାପନ ୯୫ ରୁ ୯୮ ଭାଗ ଆଣିବାରେ ସଫଳ ହୋଇଛୁ । ଶତକଡ଼ା ୨୫ ଭାଗ ପରିବାରରୁ ପିତାମାତା ପ୍ରତିନିଧିତ୍ୱ କରୁଥିଲେ । ପାଠ ଏପରି ଆଲୋଚନା କରାଯାଉଥିଲା ଯେ ୩-୪ ବର୍ଷ ପ୍ରାକ୍ ପ୍ରାଥମିକ ଶିକ୍ଷା

ବିଭାଗରେ ପଢ଼ିଲା ପରେ ପିତାମାତା ମାନେ ଚାରିବର୍ଷ ପାଇଁ ସାନପିଲାମାନଙ୍କୁ ପରିଚାଳନା କରୁଥିବା ବିଭାଗରେ, ତା'ପରେ ମାଧ୍ୟମିକ ବିଭାଗରେ ୩ ବର୍ଷ, ଏବଂ ବଡ଼ ପିଲାଙ୍କ ବିଭାଗରେ ୩ ବର୍ଷ ( ଅଷ୍ଟମରୁ ଦଶମ ଶ୍ରେଣୀ) ଯୋଗ ଦେଉଥିଲେ । ପିତାମାତାମାନଙ୍କୁ ଶିକ୍ଷା ଦେବାପାଇଁ ଏପରି ଏକ ଶିକ୍ଷାଦାନର ବ୍ୟବସ୍ଥା ବିନା ବିଦ୍ୟାଳୟରେ ସଫଳତାର ଶିକ୍ଷା ଆଶା କରିବା ଚିନ୍ତା କରାଯାଇ ନପାରେ । (୧୪,୬)

ପିତାମାତାଙ୍କର ସବୁଶ୍ରେଣୀର ଶିକ୍ଷାଦାନର ପାଠ୍ୟଖସଡ଼ାରେ ମୁଁ ସ୍ୱତନ୍ତ୍ର ଭାବରେ ଗୋଟିଏ ବିଷୟ ରଖିଥିଲି, ତାହା ହେଉଛି : ପିଲାମାନେ ସେମାନଙ୍କର ବଡ଼ମାନଙ୍କୁ କିପରି ଅନୁକରଣ କରନ୍ତି ? ପିଲାମାନେ ସେମାନଙ୍କର ବାପା, ମା'ଙ୍କ ତୁଚ୍ଛ ଆଉ ବିଚ୍ଛିନ୍ନବାଦୀ ଭଳି ଦେଖାଯାଉଥିବା ଗୁଣଗୁଡ଼ିକ କିପରି ଗ୍ରହଣ କରନ୍ତି ଯାହା ନୂଆ ଭାବରେ ଅତିରଞ୍ଜିତ ହୋଇପାରେ ଏବଂ ପିଲାମାନେ ସେହି ଅତିରଞ୍ଜିତ ଅବସ୍ଥାକୁ ଗ୍ରହଣ କରିପାରନ୍ତି । ସେ ବିଷୟ ପିତାମାତାମାନେ ଜାଣିବାକୁ ବହୁ ଆଗ୍ରହ ଦେଖାଇଥିଲେ । ପିଲାମାନେ କିପରି ସେମାନଙ୍କ ପିତାମାତାଙ୍କର ଗୁଣର ଲକ୍ଷଣକୁ ବାରିଥାନ୍ତି, ତାର ସବିଶେଷ ବର୍ଣ୍ଣନା, ସେମାନେ କିପରି ସେଥିରୁ ଉତ୍ତୀର୍ଣ୍ଣ ହୁଅନ୍ତି ଏବଂ କିଶୋର ପିଲାର ନୈତିକ ଦୃଷ୍ଟିକୋଣର ଗୁଣଗୁଡ଼ିକ କିପରି ଚେର ଧରେ, ଆଦି ବିଷୟଗୁଡ଼ିକ ପିତାମାତାଙ୍କ ସହିତ ବ୍ୟକ୍ତିଗତ ଭାବରେ ହେଉ ବା ସାମୂହିକ ଭାବରେ ହେଉ ଆଲୋଚନା କରିବା ଶିକ୍ଷକଙ୍କ ନିତିଦିନିଆ କାମ ହୁଏ । ଶିକ୍ଷାଗତ ପ୍ରକ୍ରିୟାରେ ବିଦ୍ୟାଳୟରେ ଏବଂ ଘରେ ଅନୁସରଣ ହେଉଥିବା କାର୍ଯ୍ୟପଦ୍ଧତି ଯୋଗାଯୋଗ ରଖିବା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ପିତାମାତାମାନେ ନିଜେ ସେମାନଙ୍କ ପିଲାମାନଙ୍କ ଯତ୍ନ ନେଇ ଶିଖିବା ଉଚିତ୍ ଏବଂ ସେମାନଙ୍କ ପିଲାମାନଙ୍କର ବିକାଶରେ ରହିଥିବା ତର୍କକୁ ପ୍ରଶଂସା କରିବା ଉଚିତ୍ । (୧୪,୬)

ବହି ନଥିବା, ପାଠାଗାର ନଥିବା ଗୋଟିଏ ଘର ପିଲାର ବିଦ୍ୟାଳୟ ଶିକ୍ଷା ଉପରେ କୌଣସି ପ୍ରଭାବ ପକାଇପାରେ ନାହିଁ ଏବଂ ପିଲାର ବୌଦ୍ଧିକ ବିକାଶକୁ ପଛରେ ପକାଇ ହତବୁଦ୍ଧି କରିବା ପାଇଁ ଏହା କାମ କରିଥାଏ । ଏହାର ବିକଳ୍ପରେ ପରିବାର ସଙ୍କୁଚିତ ଆଗ୍ରହକୁ ଆଖି ଆଗରେ ରଖି ଶିକ୍ଷକମାନଙ୍କୁ ସ୍ୱତନ୍ତ୍ର ପ୍ରଚେଷ୍ଟା କରିବାକୁ ପଡ଼େ । (୧୪,୬)

ନାନାବିଧ ଗୃହପାଠାଗାର ସ୍ଥାପନ କରିବାକୁ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହିସାବରେ ଆମେ ଗ୍ରହଣ କରୁ । ଏହା କେବଳ ପିଲାମାନଙ୍କ ପାଇଁ ନୁହେଁ,

ପିତାମାତାଙ୍କ ପାଇଁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ବଡ଼ମାନଙ୍କର ବୌଦ୍ଧିକ ଜ୍ଞାନ ବଢ଼ିବା ପାଇଁ ପାଠ ଯେତିକି ଗୁରୁତ୍ୱପୂର୍ଣ୍ଣ ପିଲାମାନଙ୍କ ପାଠପଢ଼ାରେ ପାଠାଗାର ମଧ୍ୟ ସେତିକି ଗୁରୁତ୍ୱପୂର୍ଣ୍ଣ । (୧୪,୬)

ବିଗତ ୨୦ ବର୍ଷ ଭିତରେ ମୁଁ ୧୨୦୦ କାର୍ଡ଼ ତିଆରି କରିଛି ଏବଂ ସେଥିରେ ମୋର ଛାତ୍ରମାନଙ୍କର ବିକାଶର ବିବରଣୀ (ଯୌବନରୁ ସ୍କୁଲଛାଡ଼ିବା ପର୍ଯ୍ୟନ୍ତ) ଦଲିଲ କରି ରଖୁଛି । ଏହି ଜିନିଷକୁ ଅବଲୋକନ କଲେ ଜଣାପଡ଼େ ଯେ ଉଚ୍ଚମାନର ନୈତିକ ଗୁଣଥିବା ଏବଂ ସଚେତନ ମନୋଭାବ ଥିବା ବୟସ୍କଲୋକମାନେ ଯେଉଁଠାରେ ବହି ଯତ୍ନର ସହିତ ଥାଏ, ସେଠାକୁ କାମ କରିବା ପାଇଁ ଆସନ୍ତି । ( ୧୪,୬)

ମୁଁ ପିତାମାତାଙ୍କ ପାଇଁ ଏକ ସଂଗୃହିତ ପୁସ୍ତକ 'ଏକ ମାନବିୟ ଜଗତ' ଶୀର୍ଷକରେ ପ୍ରକାଶ କରିଥିଲି । ଏଥିରେ ପରୀକାହାଣୀ ଏବଂ ଶିଶୁ ପୁସ୍ତକ ଗୁଡ଼ିକୁ ଅନେକ ଜାଗାରେ ଦିଆଯାଇଥିଲା । ପ୍ରାକ୍-ପ୍ରାଥମିକ ସ୍ତରରେ କେଉଁଭଳି କାହାଣୀ ପିଲାମାନଙ୍କୁ ପଢ଼ାଯିବା ଅତ୍ୟନ୍ତ ଦରକାର, କେଉଁ ଶିଶୁ ପୁସ୍ତକଗୁଡ଼ିକ ତୁମ ଘରେ ରଖିବା ଉଚିତ ଏବଂ ସେଗୁଡ଼ିକ କେମିତି ପଢ଼ାଯିବ । ଏବଂ ବ୍ୟାଖ୍ୟା କରାଯିବା ଉଚିତ୍, ଏସବୁ ବିଷୟରେ ମୁଁ ପିତାମାତାମାନଙ୍କୁ ବୁଝେଇଥିଲି । ମୋଟାମୋଟି ଭାବରେ ପରିବାରର ବୌଦ୍ଧିକ ଜ୍ଞାନ ବଢ଼େଇବା ପାଇଁ ବହି ବହୁତ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରେ । ( ୧୪,୬)

ଆପଣମାନଙ୍କ ଭିତରେ କେତେକ ଆଶ୍ଚର୍ଯ୍ୟ ହୋଇପାରନ୍ତି ଯେ ଯଦି ଗୋଟିଏ ବିଦ୍ୟାଳୟରେ ସାତୋଟି ପିତାମାତାଙ୍କ ନିମିତ ପାଠଚକ୍ର ରହେ ଏବଂ ସେମାନେ ସପ୍ତାହକୁ ଦୁଇଥର ଏକାଠି ମିଳିତ ହୁଅନ୍ତି, ନିଶ୍ଚିତ ଭାବରେ ଶିକ୍ଷକ ପିତାମାତାଙ୍କ ସହିତ କଥାବାର୍ତ୍ତା କରିବାରେ ଅନେକ ସମୟ ସାରୁଥିବେ ? ନା, ଆମେ ଏହି ଅତିରିକ୍ତ କାମକୁ ଅତ୍ୟଧିକ କାମ ଭାବରେ ଗଣନା କରୁନାହିଁ । କାରଣ ଏହା କରିବା ସଙ୍ଗେ ସଙ୍ଗେ ଅନେକ ଅନାବଶ୍ୟକ ଅଥଚ ବହୁଳ ଭାବରେ ଆୟୋଜିତ ହେଉଥିବା ଶିକ୍ଷକ-ଅଭିଭାବକ ବୈଠକକୁ ଆମେ ବନ୍ଦ କରିଦେଇଥିଲୁ । ପିଲାମାନଙ୍କୁ ସେମାନଙ୍କ ଘରକୁ ଯାଇ ଦେଖା କରୁନଥିଲୁ । ସେମାନଙ୍କ ପିତାମାତାମାନେ ନିଜେ ନିଜେ ଆମ ପାଖକୁ ଆସୁଥିଲେ । (୧୬)

ସମୟ ସମୟରେ ଅଭିଭାବକ ପାଠପଢ଼ାରେ ମା'ମାନଙ୍କ ପାଇଁ ସ୍ୱତନ୍ତ୍ର ଭାଷଣର ବ୍ୟବସ୍ଥା ହେଉଥିଲା । ଯେତେବେଳେ ପିଲାମାନଙ୍କର ଅନେକ ଦିଗରୁ

ଯୌନଜୀବନ ଶିକ୍ଷା ସହିତ ସଂପୃକ୍ତ କଥା ଆଲୋଚନା କରିବାକୁ ପଡ଼େ, ଏହା ଅତ୍ୟନ୍ତ ଜରୁରୀ ହୋଇଥାଏ । (୧୪,୬)

ଶୀତ ସନ୍ଧ୍ୟାମାନଙ୍କରେ ବାପା ମାନେ ପ୍ରାୟ ବିଦ୍ୟାଳୟକୁ ଆସୁଥିଲେ । ଏଭଳି ଅବସରରେ ଶିକ୍ଷକମାନେ ସେମାନଙ୍କ ସହିତ ପରିବାରରେ ପୁରୁଷ ଲୋକଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଆଲୋଚନା କରୁଥିଲେ । ଏଭଳି ଆଲୋଚନାଗୁଡ଼ିକୁ ବହୁତ ଗୁରୁତ୍ୱ ଦିଆଯାଉଥାଏ । କାରଣ କିଶୋର ବୟସର ପିଲାମାନଙ୍କର ଶିକ୍ଷା ପାଇଁ ନିର୍ଦ୍ଦିଷ୍ଟ କେତୋଟି ଭୂମିକା ବାପାମାନଙ୍କର ଥାଏ । ପିଲାମାନେ ସେମାନଙ୍କର ବାପା ଜଣେ ଉତ୍ତମଗୁଣ ସମ୍ପନ୍ନ, ସ୍ୱନାମଧନ୍ୟ ଓ ଦାୟୀତ୍ୱସମ୍ପନ୍ନ ବ୍ୟକ୍ତି ହିସାବରେ ଦେଖିବାକୁ ଚାହାନ୍ତି । ପ୍ରତ୍ୟେକ ବାପା ନିଜର ପିଲାମାନେ ତାଙ୍କୁ ବହୁତ ଭାବରେ ଚାହୁଁଛନ୍ତି ବୋଲି ଅନୁଭବ କରିବା ଏବଂ ବୁଝିବା ଉଚିତ । (୧୮)

ବାପାମା'ଙ୍କ ସହିତ ଆଲୋଚନା କଲାବେଳେ ଶିକ୍ଷକ କେବଳ ସେମାନଙ୍କ ପିଲାମାନଙ୍କୁ ବଡ଼ କରିବା ପାଇଁ ଜୀବନର ଅନୁଭୂତିରୁ ଆରୋହଣ କରିଥିବା ଜ୍ଞାନକୁ କେମିତି ଏବଂ କେତେ ସଂକଳ୍ପ ଏବଂ ଯତ୍ନଶୀଳ ହେବେ, ସେ ବିଷୟରେ କହିଥା'ନ୍ତି । (୧୪,୬)

ଶେଷରେ ସମୟ ପରିପକ୍ୱ ହୁଏ । ଆଦର୍ଶ ପରିବାର ତିଆରି କରିବାରେ, ବାପା ମା'ଙ୍କ ଭିତରେ ଆଦର୍ଶ ସମ୍ପର୍କ ରଖିବାରେ, ପିଲାମାନଙ୍କ ଏବଂ ବାପା ମା'ଙ୍କ ଭିତରେ ଆଦର୍ଶ ସମ୍ପର୍କ ଉପରେ ମୁଁ ପୂରା ବିଶ୍ୱାସ କରେ । ମୁଁ ପୂରା ନିଶ୍ଚିତ ଯେ ପରିବାରଟି ସମୁଦ୍ର ଭିତରେ ମ୍ୟାଜିକ୍‌ର ଫେଣ , ଯେଉଁଠି ସୌନ୍ଦର୍ଯ୍ୟ ଜନ୍ମ ନିଏ । ଯଦି ମଣିଷ ସୌନ୍ଦର୍ଯ୍ୟକୁ ବିପନ୍ନ କରିବା ପାଇଁ ସେଠାରେ କୌଣସି ରହସ୍ୟମୟ କ୍ଷମତା ନାହିଁ , ତାହା ହେଲେ ନୂଆ ରୂପରେ ଉପସ୍ଥାପନା ବିଦ୍ୟାଳୟରେ କରିବା କାମ ହେବ । (୩୧)

ପରିବାରର ସାହାଯ୍ୟ ବିନା ଆମ ବିଦ୍ୟାଳୟ କ୍ଷମତାହୀନ ହୋଇଯିବ । କଳା ଏବଂ ଶିକ୍ଷାର କୌଶଳ ଉପରେ ବାପା, ମା'ଙ୍କୁ ଶିକ୍ଷା ଦେବାରେ ଦଶନ୍ଧୀ ଧରି ସମୟ ଅତିବାହିତ ହୋଇଛି । ବର୍ତ୍ତମାନର ପିତାମାତାମାନେ ଆମର ପୂର୍ବତନ ଛାତ୍ର । ଆମେ ସେମାନଙ୍କୁ ପିତାମାତା ହିସାବରେ ପ୍ରସ୍ତୁତ କରୁ ଯେତେବେଳେ ସେମାନେ ପିତାମାତା ହିସାବରେ ଆମ ପାଖକୁ ଆସନ୍ତି, ଏବଂ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ବିଚାରିଥାନ୍ତି । ପିତାମାତାଙ୍କର ଆମ ବିଦ୍ୟାଳୟ ପ୍ରତି

ବାଧବାଧକତା ନଥିବା  ସମ୍ମାନ ଏବଂ ବିଶ୍ୱାସ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ଗୁଣ । ଆଞ୍ଚଳିକ ଘରମାନଙ୍କରେ  ନୀତି, ଶିଶୁର ଯତ୍ନ କିମ୍ବା ପିଲାଙ୍କୁ ଲାଳନପାଳନ ଉପରେ କହିବା ପାଇଁ କୌଣସି ଉପରକର୍ତ୍ତା ନଥାନ୍ତି ।  ପ୍ରତ୍ୟେକ ପରିବାରରେ ଆମେ ବହି କିଣିବା ଏବଂ ପାଠ ପଢ଼ିବା କ୍ଷେତ୍ରରେ ସଫଳ ହୋଇଥିଲୁ ।    ଉପରଶ୍ରେଣୀର ପିଲାମାନେ କିପରି ଉତ୍ତମ ବାପା, ମା ହେବେ ସେଥିପାଇଁ ଆମକୁ ଶ୍ରେଣୀଗୃହ ବାହାରେ ଅଛି  ଅର୍ଦ୍ଧାଧିକ ସମୟ ଦେବାକୁ ପଡ଼େ ।  ସମ୍ଭବତଃ ତୁମମାନଙ୍କ ଭିତରୁ କେତେକଙ୍କୁ ଆଶ୍ଚର୍ଯ୍ୟ ଲାଗିପାରେ, ଅବଶ୍ୟ ଆମେ ଭୁଲ୍ ବୋଲି ଗ୍ରହଣ କରାଯାଇପାରେ ।   ତୁମେ ଯାହା ହେବା କଥା ହୁଅ ।  ସେମାନେ ବିଦ୍ୟାଳୟରେ ପଢୁଥିବା ସମୟରେ ମଧ୍ୟ  ବୃତ୍ତି ତାଲିମ ପାଇଁ ଆମର ପୂର୍ବ ନିର୍ଦ୍ଧାରିତ କାମ ଭବିଷ୍ୟତର ଶିକ୍ଷକ ରୂପରେ ପିତାମାତାଙ୍କ ପାଇଁ ତାଲିମ ହେବ ।  (୩୧)

ମୋର  ସାମ୍ୟବାଦୀ ଶିକ୍ଷାର ଶକ୍ତି ଉପରେ ପୂରା ବିଶ୍ୱାସ ରହିଛି ।   ମୁଁ ବିଶ୍ୱାସ କରେ ଯେ ଏପରି ଭାବରେ ଶିକ୍ଷା ଦିଆଯାଇପାରିବ, ଯେଉଁଠି ଦଣ୍ଡ ମୂଲ୍ୟହୀନ ବୋଲି ପ୍ରମାଣିତ ହେବ ।  ଅତିବ ଆନନ୍ଦ, ଖୁସୀ ମଜାଳିଆ ଜୀବନରେ ମିଳିପାରିବ ବୋଲି ମୋର ବିଶ୍ୱାସ ।  ଯେଉଁ ଜୀବନରେ ଉନ୍ନତ ଧାରଣା, ଅଭିଳାଷ ଓ ପ୍ରଚେଷ୍ଟା ଗୁଡ଼ିକ ଆମ ପୃଥିବୀରେ ଥିବା ସମ୍ଭାବନା ଓ ସୌନ୍ଦର୍ଯ୍ୟକୁ  ଆବିଷ୍କାର କରିବାରେ, ଆସନ୍ତା କାଲିପାଇଁ  ଉଜ୍ଜ୍ୱଳ ଭବିଷ୍ୟତ ଦେଖିବାରେ, ପିଲାମାନଙ୍କ ଭିତରେ ନିଜର ସୁନ୍ଦର ଗୁଣଗୁଡ଼ିକ ପ୍ରତିରୂପ ଆସିବାରେ ଏବଂ ନିଜ ସମାଜ ଏବଂ ଆମ ଜନ୍ମଭୂମିର ଉନ୍ନତି ପାଇଁ ସ୍ଥାୟୀ ଏବଂ ଦୃଢ଼ ପ୍ରଚେଷ୍ଟା କରିବାରେ ସାହାଯ୍ୟ କରିବ ।  (୨୯)

# ଦ୍ୱିତୀୟ ଅଧ୍ୟାୟ

# ପାଠପଢ଼ା

## ମଣିଷ ପାଇଁ ଜ୍ଞାନ ମୁଖ୍ୟ, କାରଣ ସେ ମାନବ

ପ୍ରତ୍ୟେକ ଶିକ୍ଷକଙ୍କର ଛାତ୍ରମାନଙ୍କୁ ଶିକ୍ଷା ଦେବାପାଇଁ ସମ୍ପୂର୍ଣ୍ଣ ଦକ୍ଷତା ଥିବା ଦରକାର । ଯେଉଁଠି ଏହି କଥାକୁ ପାଳନ କରାଯିବ ନାହିଁ ବିଦ୍ୟାଳୟ ହିସାବରେ ତାକୁ ଗଣା ହେବ ନାହିଁ । ଶିକ୍ଷକଙ୍କ ପାଠପଢ଼େଇବାର ଦକ୍ଷତାର ଅଭାବରୁ ବିଦ୍ୟାଳୟ ଜୀବନର ଅଧିକାଂଶ ବିପର୍ଯ୍ୟୟ ଓ ସମସ୍ୟା ସୃଷ୍ଟି ହୋଇଥାଏ । । ଶିକ୍ଷକ ଯେତେବେଳେ ପାଠ ପଢ଼େଇଥାଆନ୍ତି, ଛାତ୍ରମାନଙ୍କ କଥା ବିଚାର ନକରି ନିଜ ବୁଦ୍ଧିରୁ ଛାତ୍ରମାନଙ୍କୁ ଜ୍ଞାନ ବିତରଣ କରିଥାଆନ୍ତି । (୧୪,୮)

ନିଜର ଜ୍ଞାନ ଦ୍ୱାରା ଛାତ୍ରମାନଙ୍କ ବ୍ୟବହାରରେ ପରିବର୍ତ୍ତନ ଆଣି ପାରୁଥିବା ଶିକ୍ଷକ ଛାତ୍ରମାନଙ୍କୁ ନିଜର ଜ୍ଞାନର ଅସ୍ତ୍ର ସାହାଯ୍ୟରେ ସେମାନଙ୍କୁ ସେମାନଙ୍କ ଚାରିପାଖରେ ଥିବା ଜଗତ ବିଷୟରେ ଆବିଷ୍କାର କରିବା ପାଇଁ ପ୍ରସ୍ତୁତ କରାଇଥାଆନ୍ତି । (୧୪,୮)

ଶିକ୍ଷକଙ୍କୁ ଯେତେ ନୀତିବାଣି ଜଣାଥିଲେ ମଧ୍ୟ ପ୍ରଥମେ ପାଠ ପଢ଼ାଇଲା ବେଳେ ଶିକ୍ଷାନୀତି ଏବଂ ପଦ୍ଧତିଗୁଡ଼ିକ ପ୍ରକୃତରେ କେମିତି ପ୍ରୟୋଗ କରୁଛନ୍ତି ତାହା ଉପରେ ତାଙ୍କର ପାଠପଢ଼ାର ମାନ ନିର୍ଭର କରୁଛି । ପାଠପଢ଼ାର ଅସୁବିଧା ଏବଂ ବାଧାଗୁଡ଼ିକ ବ୍ୟାଖ୍ୟା କଲାବେଳେ ଅନେକ କ୍ଷେତ୍ରରେ ଶିକ୍ଷକମାନେ ଭୁଲିଯାଇଥାଆନ୍ତି ଯେ ପାଠପଢ଼ା ଶିକ୍ଷକ ଏବଂ ଛାତ୍ରମାନଙ୍କ ମଧ୍ୟରେ ହେଉଥିବା ଏକ ମିଳିତ ଉଦ୍ୟମ । ଏହାର ସଫଳତା ଶିକ୍ଷକ ଏବଂ ଛାତ୍ର ମଧ୍ୟରେ ଗଢ଼ିଉଠୁଥିବା ସମ୍ପର୍କ ଉପରେ ନିର୍ଭରଶୀଳ । (୨,୭୦)

ଏହା ଅତି ଗୁରୁତ୍ୱପୂର୍ଣ୍ଣ କଥା ଯେ ବର୍ତ୍ତମାନର ସାମ୍ୟବାଦୀ ବିଦ୍ୟାଳୟରେ ଯେଉଁ ଜ୍ଞାନ ଗ୍ରହଣ କରାଯାଉଅଛି ତାକୁ ବିଶ୍ୱବିଦ୍ୟାଳୟରେ ପାଠ ପଢ଼ିବା ପାଇଁ ପ୍ରବେଶ ପତ୍ର ହିସାବରେ କିଶୋର ବୟସର ପିଲାମାନେ ଗ୍ରହଣ କରୁନାହାଁନ୍ତି । ବରଂ ପରବର୍ତ୍ତୀ ଜୀବନରେ ସ୍ୱତନ୍ତ୍ର ଭାବରେ ସେମାନେ ଇଂଜିନିୟର, ଡାକ୍ତର,

ମେଷପାଳକ, କୃଷକ ହେବାପାଇଁ ଏହାକୁ ଆବଶ୍ୟକ ଜ୍ଞାନ ହିସାବରେ ଦେଖୁଛନ୍ତି । (୧୪,୨)

ଶିକ୍ଷାର ବିଷୟବସ୍ତୁ କେବଳ କର୍ମ କ୍ଷେତ୍ରରେ କେତେ ଉପଯୋଗୀ ହୋଇପାରିବ ତାକୁ ନେଇ ବିଚାର କରାଯିବା ଉଚିତ୍ ନୁହେଁ । ଜ୍ଞାନ ମଣିଷର ମୁଖ୍ୟ, କାରଣ ସେ ମାନବ । (୧୪,୮)

ଅତ୍ୟଧିକ ପାଠପଢ଼ାର ବୋଝକୁ ତୁଳନାତ୍ମକ ହିସାବରେ ବିଚାର କରାଯାଇପାରେ । ଛାତ୍ରମାନେ ସେମାନଙ୍କ ବୟସ ଅନୁସାରେ ଯେତେବେଳେ ପାଠକୁ ବୁଝିବାରେ ଅସମର୍ଥ ହୁଅନ୍ତି, ପାଠପଢ଼ାର ବିଷୟବସ୍ତୁ ସେତେବେଳେ ଛାତ୍ରମାନଙ୍କର ବୁଝିବା କ୍ଷମତା ବାହାରର ହୋଇଥାଏ । ଛାତ୍ରମାନେ ସେମାନଙ୍କ ବୟସ ଅନୁସାରେ ଯାହା ବୁଝିପାରିବେ ବା ଆହରଣ କରିପାରିବେ, ତାହା ବ୍ୟକ୍ତିଗତ ଓ ସାମୂହିକ-ବୌଦ୍ଧିକ ଜୀବନ ଉପରେ ନିର୍ଭର କରେ । ଯଦି ପାଠଗୁଡ଼ିକର ପୃଷ୍ଠଭୂମି ସଂକୀର୍ଣ୍ଣ ବା ସୀମାବଦ୍ଧ ହୋଇଥାଏ, ଏପରିକି ସବୁଠାରୁ ସହଜ ପାଠ ଛାତ୍ରମାନଙ୍କ ବୁଝିବା କ୍ଷମତା ବାହାରେ ହୋଇଥାଏ । (୧୧,୨୫୬)

ମାନସିକ କାମ ଯେତେବେଳେ ଏକତରଫା ଭଳି ହେବ, ଏବଂ ପ୍ରତ୍ୟେକ ଛାତ୍ରର କାମ ତାକୁ ହେବ, ସେତେବେଳେ ପାଠର ଅତ୍ୟଧିକ ବୋଝ କଥା ଅଧିକ ଭାବେ ଅନୁଭବ କରିହବ । ପାଠ୍ୟକ୍ରମରୁ ଜ୍ଞାନ ଆହରଣର ପରିସୀମାକୁ ଯାନ୍ତ୍ରିକ ଭାବରେ ବାଦ୍ ଦେବା ଦ୍ୱାରା ବୋଝ ଦୂର ହୋଇପାରିବ ନାହିଁ । ଏହା ନିର୍ଦ୍ଦିଷ୍ଟ ଆଗ୍ରହ, ବୌଦ୍ଧିକ ଅନୁଭୂତି, ପାଠପଢ଼ା ହେଉଥିବା ବୌଦ୍ଧିକ ଜ୍ଞାନର ପୃଷ୍ଠଭୂମି ଦ୍ୱାରା ଦୂର କରାଯାଇ ପାରିବ । ପଦାର୍ଥ ବିଜ୍ଞାନ ଶ୍ରେଣୀରେ ପରମାଣୁର ଗଠନ ବିଷୟରେ ବ୍ୟାଖ୍ୟା ଶୁଣିବା ପୂର୍ବରୁ ଛାତ୍ରମାନେ ଅଣୁ ସମ୍ବନ୍ଧରେ ପ୍ରାଥମିକ କଥା, ତାଙ୍କୁ ଭଲ ଲାଗୁଥିବା ଲେଖା ଏବଂ ବିବରଣୀରୁ ପଢ଼ିଥାଆନ୍ତି । ଯଦି ବା ଏଭଳି ଲେଖାରୁ ଅନେକ ସେମାନେ ଜାଣିଥାଆନ୍ତି, ଏପରିକି ଯେତିକି ଜାଣିବା କଥା ତା' ଠାରୁ ଅଧିକ, ତାହା ତାଙ୍କୁ ହତୋତ୍ସାହ କରେ ନାହିଁ । ଅପର ପକ୍ଷରେ ଶ୍ରେଣୀ ଗୃହରେ ପଢ଼ାଇବାକୁ ଥିବା ବିଷୟ ପାଇଁ ଉତ୍ସାହ ରହିବ । (୧୧,୨୫୬)

ପାଠପଢ଼ା ସମୟରେ ଆଳସ୍ୟ ଏବଂ ମାନସିକ ଉଦ୍ୟମର ଅଭାବ ଯୋଗୁଁ ଯୁବ ବୟସର ପିଲାମାନଙ୍କ ପାଖରେ ସମୟର ଅଭାବ ହୋଇଥାଏ । (୧୧, ୧୬୧)

ତଳ ଶ୍ରେଣୀରେ ପିଲାଟିଏ ଯଦି ଘରେ ଦିଆଯାଇଥିବା ପାଠ କରିବା ପାଇଁ ଭୁଲିଯାଇଥାଏ, ଏଥିରେ ପ୍ରକୃତରେ ତାହାର ଭୁଲ ନଥାଏ । ଏଭଳି ସମୟରେ ତାହାର ଘରର ବୟସ୍କ ଲୋକମାନେ ପିଲାଟିର ଦେଖାଶୁଣା କରିବାର ଦାୟିତ୍ୱ ନେବା ଉଚିତ । (୩,୧୪୧)

ବର୍ତ୍ତମାନ ସୋଭିଏତ୍ ଦେଶରେ ବିଦ୍ୟାଳୟ ଗୁଡ଼ିକ ମଣିଷର କ୍ଷମତା ଏବଂ ତାର ଶୈଶବରେ ଥିବା ସମ୍ଭାବନା ବିଷୟରେ ଥିବା ଆମର ଧାରଣାଗୁଡ଼ିକ ପ୍ରଚଳନ କରୁଅଛନ୍ତି । ତଳ ଶ୍ରେଣୀର ଛାତ୍ରମାନେ ( ୭ ରୁ ୧୧ ) ସେମାନଙ୍କ ଆଙ୍ଗୁଠି ଟିପରେ ବିସ୍ତୃତ ଜ୍ଞାନ ଓ କୌଶଳଗୁଡ଼ିକ ଅକ୍ତିଆରରେ ରଖିଅଛନ୍ତି ଯାହା ଅତୀତରେ ନଥିଲା । ପାଠପଢ଼ାର ଆରମ୍ଭ ୭ ବର୍ଷରେ ନ ହୋଇ ୬ ବର୍ଷରେ ହୋଇପାରିବ, ଏବଂ ପ୍ରାଥମିକ ଶିକ୍ଷା ଚାରିବର୍ଷ ବଦଳରେ ତିନିବର୍ଷରେ ଶେଷ ହୋଇପାରିବ । ପିଲାମାନଙ୍କର ବୌଦ୍ଧିକ ଜ୍ଞାନ ଏବଂ କର୍ମର ଅନୁଭୂତିର ସଂଯୋଗ ଯୋଗୁଁ ନୂତନ ସମ୍ଭାବନା ଦେଖାଯାଉଛି (ବଢ଼େଇ ରଖିଥିବା କୂଳ ଯନ୍ତ୍ରରେ କାମ ୯ରୁ ୧୦ ବୟସର ଛାତ୍ରମାନଙ୍କୁ ଦିଆଯାଇପାରିବ) ଏବଂ ଏହି ଦକ୍ଷତା ସେମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିପାରିବ )। ପିଲାଟିର ପ୍ରାଥମିକ ବର୍ଷ ମାନଙ୍କରେ କାମର ଅଭ୍ୟାସ ଏବଂ ବାସ୍ତବ ଦକ୍ଷତା ଯେତିକି ଅଧିକ ହେବ ତା'ର ମାଧ୍ୟମିକ ବିଦ୍ୟାଳୟ ଶେଷ କରିବା ସମୟରେ ସେତେ ଅଧିକ ବୌଦ୍ଧିକ ବିକାଶ ଘଟିବ । (୧୧,୧୧)

ପ୍ରତ୍ୟେକ ଶିକ୍ଷକ ପାଠ ପଢ଼େଇଲା ବେଳେ ସରକାରଙ୍କ ଦ୍ୱାରା ପ୍ରଣୀତ ପାଠ୍ୟଖସଡ଼ାକୁ ବ୍ୟବହାର କରିବା ସଙ୍ଗେ ସଙ୍ଗେ ଅନ୍ୟ ଏକ ପାଠ୍ୟଖସଡ଼ାକୁ ବ୍ୟବହାର କରିଥାଆନ୍ତି । ଦ୍ୱିତୀୟ ପାଠ୍ୟଖସଡ଼ା ପ୍ରଥମ ପାଠ୍ୟ ଖସଡ଼ାର ଜ୍ଞାନର ପରିସୀମାକୁ ବଢ଼େଇବାର ଉଦ୍ଦେଶ୍ୟରେ ହୋଇଥାଏ ।

ଆମର ଶିକ୍ଷକମାନେ ଉପର ଶ୍ରେଣୀର ଛାତ୍ରମାନଙ୍କର ବୌଦ୍ଧିକ ବିକାଶ ଦୁଇଟି ଯାକ ପାଠ୍ୟଖସଡ଼ା ଉପରେ ନିର୍ଭର କରେ ବୋଲି ଦୃଢ଼ ବିଶ୍ୱାସ କରନ୍ତି । (୧୨,୧୪୮)

ଦ୍ୱିତୀୟ ପାଠ୍ୟଖସଡ଼ାର ବ୍ୟବହାର ଦ୍ୱାରା କିଶୋର ବୟସର ପିଲାମାନଙ୍କର ପୂର୍ଣ୍ଣ ବୌଦ୍ଧିକ ବିକାଶ ହୋଇଥାଏ । ବହୁମୁଖୀ ସାମୂହିକ ବୌଦ୍ଧିକ ଜୀବନରେ ସେମାନେ ଅଂଶଗ୍ରହଣ କରନ୍ତି ଏବଂ ସେମାନଙ୍କ ଭିତରେ ସାଂସ୍କୃତିକ ଅନୁଭୂତିର ସବୁବେଳେ ଆଦାନ ପ୍ରଦାନ ହୋଇଥାଏ । ଦ୍ୱିତୀୟ ପାଠ୍ୟଖସଡ଼ାକୁ ବୁଝିବାକୁ

ହେଲେ ସ୍ୱତନ୍ତ୍ର ଭାବରେ ପଢ଼ିବାକୁ ଦରକାର ପଡ଼ିବ । (୧୨,୧୪୯)

ଯେପର୍ଯ୍ୟନ୍ତ କିଶୋର ବୟସର ପିଲାମାନଙ୍କର ଜୀବନରେ "ଆତ୍ମ ଶିକ୍ଷା" ର ଦୃଢ଼ ଭିତ୍ତିଭୂମି ନପଡ଼ିଛି, ପାଠପଢ଼ା କିପରି ଚରିତ୍ର ନିର୍ମାଣର ଭୂମିକା ନିଭାଇ ପାରିବ ସେ ବିଷୟରେ ସବୁ ତର୍କ ଏବଂ ଆଲୋଚନା ଗୁଡ଼ିକ ମୂଲ୍ୟହୀନ । ଆତ୍ମଶିକ୍ଷା, ମାନସିକ ଶକ୍ତିର ବୃଦ୍ଧି ଏବଂ ଜଗତକୁ ଆବିଷ୍କାର କରିବାର ଇଚ୍ଛାଶକ୍ତି ବ୍ୟତିରକେ ନିଜକୁ ଆବିଷ୍କାର କରିବାର ପାଠ ଚରିତ୍ର ଗଠନରେ କୌଣସି ଭୂମିକା ନେଇ ପାରିବ ନାହିଁ । ମଣିଷ ନିଜକୁ ମର୍ଯ୍ୟାଦାଯୁକ୍ତ କରିବା ପାଇଁ ନିଜର ପ୍ରେରଣା ସହିତ ବହିଗୁଡ଼ିକ ନପଢ଼ିଲେ ଆଧୁନିକ ମାନବର ଜୀବନ ଚିନ୍ତା କରାଯାଇ ନପାରେ । (୧୨, ୧୫୯)

ଯେଉଁବର୍ଷ ପିଲାମାନେ ବିଦ୍ୟାଳୟରୁ ପାଠ ଶେଷ କରନ୍ତି, ସେହିବର୍ଷରେ ଆହରଣ କରିଥିବା ଜ୍ଞାନକୁ ଯଦି ଏକ ଏକକ ହିସାବରେ ନିଆଯାଏ, ତାଙ୍କ କର୍ମମୟ ଜୀବନ ଭିତରେ ସେମାନଙ୍କୁ ପ୍ରତ୍ୟେକେ ଛଅ ଏକକରୁ ଅଧିକ ଜ୍ଞାନ ଯୋଗ କରିବାକୁ ପଡ଼ିବ । ନଚେତ୍ ସେମାନେ ପଛରେ ପଡ଼ିଯିବେ ଏବଂ ତାଙ୍କ କାର୍ଯ୍ୟରେ ଅସଫଳ ହେବେ । ବର୍ତ୍ତମାନ ସମୟରେ ଆମ ଜୀବନରେ ସବୁବେଳେ ଜ୍ଞାନର ଆଧୁନିକ କରଣର ଆବଶ୍ୟକତା କରେ । ଜ୍ଞାନର ତୃଷ୍ଣା ବିନା ପୂର୍ଣ୍ଣ ବୌଦ୍ଧିକ ଜୀବନ ଅସମ୍ଭବ । ଜ୍ଞାନର ତୃଷ୍ଣା ଆସିଲେ ହିଁ ପୂର୍ଣ୍ଣ କାର୍ଯ୍ୟକ୍ଷମ କିମ୍ବା ସୃଜନଶୀଳ ଜୀବନ ଆସିଥାଏ । ଅର୍ଥାତ୍ ଆତ୍ମଶିକ୍ଷାପାଇଁ ଅନ୍ତର୍ନିହିତ ଇଚ୍ଛାଶକ୍ତି ଜରୁରୀ ଅଟେ । (୧୨,୧୧୭)

## ଯଦି ଆମ ଛାତ୍ରମାନଙ୍କର ଶିଖିବା ପାଇଁ ଆଗ୍ରହ ନାହିଁ, ଆମର ସବୁ ଯୋଜନା ମୂଲ୍ୟହୀନ ।

ଯେଉଁ ଛାତ୍ରମାନଙ୍କୁ କିଶୋର ଅବସ୍ଥାରେ ଭଲ ମନ୍ଦ ବିଷୟରେ ଜଣାଇ ଦିଆଯାଇଥାଏ, ସେମାନଙ୍କ ମନର ଗତିକୁ ଜାଣିବା ପାଇଁ ଶିକ୍ଷକଙ୍କୁ ସହଜ ହୁଏ । କିଶୋର ବୟସର ପିଲାମାନେ କୌଣସି ବିଷୟ ପ୍ରତି ନିଜର ବ୍ୟକ୍ତିଗତ ମତ ପୋଷଣ କରିବା ଆଗ୍ରହ ପ୍ରକାଶ କରିଥାଆନ୍ତି ଏବଂ ନିଜ ପାଇଁ ସେମାନେ ବିଶ୍ଳେଷଣ କରନ୍ତି ।

ଛାତ୍ରମାନଙ୍କୁ ମତବାଦଗୁଡ଼ିକ ବିଷୟରେ ଅବଗତ କରାଯିବା ଦରକାର, ବିଶେଷ ଭାବରେ ସେମାନେ ଯେଉଁ ମତ ଉପରେ ପାଠରେ ପଢୁଥିବେ । ସିଧାସଳଖ

ନହୋଇ ପରୋକ୍ଷରେ ପ୍ରରୋଚନା ଯେଉଁ ପ୍ରକିୟା ଦ୍ୱାରା ଅନେକ କିଛି ହାସଲ କରାଯାଇପାରେ, ଯେଉଁ ପ୍ରକିୟାରେ ଶିକ୍ଷକ ଅନ୍ତୁଆଳରେ ରହିଥାଆନ୍ତି । (୩,୧୧୧)

ଛାତ୍ରମାନେ ନୂଆ କରି ଆହରଣ କରିଥିବା ଜ୍ଞାନକୁ ସେମାନଙ୍କର ନିଜର ମାନସିକ କସରତର ଫଳ ହିସାବରେ ଦେଖିବା ଉଚିତ୍ । (୩,୧୧୨)

ଆମ ବିଦ୍ୟାଳୟର ଉତ୍ତମ ଶିକ୍ଷକମାନେ ବିଖ୍ୟାତ ବୈଜ୍ଞାନିକମାନଙ୍କର କାମଗୁଡ଼ିକୁ ବର୍ଣ୍ଣନା କରିବାପାଇଁ ସ୍ୱତନ୍ତ୍ର ଭାବରେ ପାଠ ପଢ଼େଇଥାଆନ୍ତି । ଏଭଳି ସ୍ୱତନ୍ତ୍ର ପାଠପଢ଼ାକୁ ଚରିତ୍ରଗଠନର କାମ ହିସାବରେ ନିଆଯିବାର ଯଥେଷ୍ଟ କାରଣ ରହିଛି । (୩,୧୧୪)

ମସ୍ତିଷ୍କ କାମରେ ସଂପୃକ୍ତ ଥିବା ଦକ୍ଷତାକୁ ହାସଲ କରିବା ପାଇଁ ଯେତିକି ବେଶି ଆମ ବିଦ୍ୟାଳୟର ପିଲାମାନେ ଆସିଥାଆନ୍ତି, ସେମାନେ ସେତିକି କମ୍ ପାଠପଢ଼ିବା ପାଇଁ ଅନିଚ୍ଛା ପ୍ରକାଶ କରିଥାଆନ୍ତି । ୧୨ ବର୍ଷ ମଧ୍ୟରେ ଆମେ କେବଳ ଗୋଟିଏ ଛାତ୍ର ସଂସ୍ପର୍ଶରେ ଆସିଥିଲୁ ଯିଏକି ଜାଣିଶୁଣି କ୍ରୋଧର ସହିତ ଘରେ କରିବା ପାଇଁ ଦିଆଯାଇଥିବା ପାଠକୁ କରିବା ପାଇଁ ମନା କରିଦେଇଥିଲା । ଅନ୍ୟ ସବୁକ୍ଷେତ୍ରରେ ପାଠ ନପଢ଼ିବା ପାଇଁ ଇଚ୍ଛା ପ୍ରକାଶ ନକରିବାର କାରଣ ପଢ଼େଇବାର ଦକ୍ଷତା ଅଭାବରୁ ଦେଖାଯାଇଥିଲା । (୩,୧୩୧)

ଏମିତି ପିଲା ନାହାଁନ୍ତି, ଅବଶ୍ୟ ଏମିତି ପିଲା କେବେବି ନଥିଲେ ଯେଉଁମାନେ ଆରମ୍ଭରୁ ବିଦ୍ୟାଳୟକୁ ଯିବା ପାଇଁ ଇଚ୍ଛା କରିନାହାଁନ୍ତି । ପଢ଼େଇବାର ଦକ୍ଷତା ଅଭାବରୁ ପାଠ ପଢ଼ିବାର ଇଚ୍ଛା ଆସିନଥାଏ । ଇଚ୍ଛା ଆସୁନଥିବାରୁ ଆଳସ୍ୟ ଆସିଥାଏ । ଏଭଳି ଧାଡ଼ିରେ ଗୋଟିକ ପରେ ଗୋଟିଏ ଆସୁଥିବା ଦୁର୍ବଳତାଗୁଡ଼ିକ ଏକାଠି ମିଶି ବଳିଷ୍ଠ ହୋଇଥାଆନ୍ତି ଏବଂ ଏହାକୁ ଏଡ଼ିବା ଅଧିକରୁ ଅଧିକ କଷ୍ଟ ହୋଇଥାଏ । ଏଭଳି ଦୁର୍ବଳତାଗୁଡ଼ିକ ଦୂର କରାଯାଇପାରିବ, ଯଦି ଛାତ୍ରମାନଙ୍କୁ ପ୍ରଥମରୁ ସ୍ୱାଧୀନ ଭାବରେ କାମକରିବା ପାଇଁ ଶିକ୍ଷା ଦିଆଯାଇପାରିବ । (୩,୧୩୩)

ଆମର ସବୁ ଯୋଜନା, ଅନ୍ୱେଷଣ ଗୁଡ଼ିକର କିଛି ମୂଲ୍ୟ ରହିବ ନାହିଁ ଯଦି ଛାତ୍ରମାନେ ପାଠ ପଢ଼ିବାକୁ ଇଚ୍ଛା ନକରିବେ । ଶ୍ରେଣୀଗୃହର ସଫଳତାକୁ ନେଇ ପଢ଼ିବାର ଆଗ୍ରହ ଆସିଥାଏ । ଏପ୍ରକାର ବିରୋଧାଭାଷର ଫଳ ହେଉଛି

: ପିଲା ଭଲ କରିବାକୁ ହେଲେ ଏବଂ ବିଦ୍ୟାଳୟର ସଫଳତା ଆସିବାକୁ ହେଲେ ପିଲାଟି କିପରି ପଛରେ ନପଡିବ୍ ଏବଂ ପାଠପଢ଼ାରୁ ବିଚ୍ୟୁତ ନହେବ, ସେଥିପ୍ରତି ଯତ୍ନଶୀଳ ହେବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଏପରି ସ୍ପଷ୍ଟ ବିରୋଧାଭାଷ ପାଠ ପଢ଼େଇବା ପେଷାର ଗହିରିକଥାକୁ ଗୋପନ ରଖେ । ଶିଖିବାର ଆଗ୍ରହରୁ କେବଳ ସଫଳତା ଆସିବାର ପ୍ରେରଣା ମିଳିଥାଏ । ଅଧ୍ୟବସାୟ ପିଲାର ଆତ୍ମବିଶ୍ୱାସରୁ ଆସିଥିବା ପ୍ରେରଣା ବୋଲି ଭାବିନେବା ଉଚିତ୍ । ଅଧ୍ୟବସାୟ ବଳରେ ପିଲାମାନେ ସଫଳ ହୋଇପାରିବେ । (୧୪,୮)

ସମୟ ଚକ୍ରର ଆରମ୍ଭରୁ କୌତୁହଳ ଏବଂ ଜିଜ୍ଞାସୁ ହେବା ମଣିଷର ଅପରିବର୍ତ୍ତନୀୟ ଗୁଣ । ଯେଉଁଠାରେ ଜ୍ଞାନ ପ୍ରତି ଶ୍ରଦ୍ଧାର ଅଭାବ ରହୁଛି, ସେଠାରେ ବିଦ୍ୟାଳୟର କୌଣସି ଉନ୍ନତି ହେବ ନାହିଁ । ବୌଦ୍ଧିକ ଉଦାସିନତା କିମ୍ୱା ବୌଦ୍ଧିକ କ୍ରିୟାର ଅଭାବ ଯୋଗୁଁ ଜ୍ଞାନ ଗ୍ରହଣ, କ୍ଷମତା, ସୃଜନଶୀଳତା , ଚିନ୍ତାରେ ଥିବା ଅମୂଲ୍ୟ ସମ୍ପଦ ଏବଂ ସୌନ୍ଦର୍ଯ୍ୟକୁ ଦୁର୍ବଳ କରିପକାଇଥାଏ । ଶିକ୍ଷକ ଶ୍ରେଣୀଗୃହରେ ପାଠ ପଢ଼େଇସାରିଲା ପରେ ଯଦି ଛାତ୍ରମାନଙ୍କଠାରୁ ପ୍ରଶ୍ନ ଆସୁନାହିଁ ଏବଂ ଛାତ୍ରମାନେ 'ସବୁଜିନିଷ ବୁଝାପଡୁଛି' ବୋଲି ସୂଚନା ଦେଉଛନ୍ତି, ତାହାହେଲେ ଏହା ହେଉଛି ପ୍ରଥମ ସୂଚନା ଯେ ଶ୍ରେଣୀର ଛାତ୍ରମାନଙ୍କର ବୌଦ୍ଧିକ ଅଭିଜ୍ଞତା ହାସଲ କରିବାର ବାଟ ବନ୍ଦ ହୋଇଯାଇଛି ଏବଂ ପ୍ରତ୍ୟେକ ଦିନର ପାଠପଢ଼ାରେ କେବଳ ବିରକ୍ତିକର, କ୍ଲାନ୍ତିଜନକ ଜିନିଷ ରହିଯାଇଛି । (୧୪,୨)

ପିଲାମାନେ ଯେତେବେଳେ ତାଙ୍କୁ ପଚରା ଯାଇଥିବା ପ୍ରଶ୍ନର ଉତ୍ତର ଦେବାପାଇଁ ଆଗ୍ରହ ପ୍ରକାଶ କରନ୍ତି ସେତେବେଳେ ଶ୍ରେଣୀଗୃହରେ ସକ୍ରିୟ ଚିନ୍ତା ଆରମ୍ଭ ହୁଏ । ଏଭଳି ଏହି ଉତ୍ସାହକୁ ବଜାୟ ରଖିବା ପାଇଁ ଶିକ୍ଷକ ନିଶ୍ଚିତ ହେବା ଉଚିତ୍ ଯେ ପିଲାମାନେ ସଂପୃକ୍ତ ହୋଇଥିବା ମାନସିକ କସରତର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିଛି । ଏହା ହେଉଛି ସବୁଠାରୁ କଠିନ କାମ ଏବଂ ପାଠପଢ଼ାର ଦକ୍ଷତା ଏବଂ କଳା ଦ୍ୱାରା କେବଳ ଏହାକୁ ହାସଲ କରାଯାଇପାରିବ ।

ପିଲାଟିଏ ତାକୁ ଜଣାଶୁଣା ଥିବା ଘଟଣା ଉପରେ ଥିବା ପ୍ରଶ୍ନର ଉତ୍ତର ଖୋଜେ ଏବଂ ଉତ୍ତର ଦେବା ପାଇଁ ପ୍ରସ୍ତୁତ ହୁଏ । ତୁମେ ଯଦି ଗୋଟିଏ ୩-୪ ଶ୍ରେଣୀ ଛାତ୍ରକୁ କୌଣସି ଆଗ୍ରହଉଦ୍ଦିପକ ଜିନିଷ ବିଷୟରେ କୁହ କିନ୍ତୁ ତାହା ପିଲାଟିର ପରିଚିତ ନଥାଏ; ଉଦାହରଣ ସ୍ୱରୂପ ଜୁଆର ବିଷୟରେ କିମ୍ୱା ଜୁଆରର ଗୁଣ ବିଷୟରେ ପିଲାଟିକୁ କିଛି କହିବାକୁ କହିଲେ ପିଲାଟି ଉତ୍ତର ଦେବାପାଇଁ

କୌଣସି ଆଗ୍ରହ ଦେଖାଇବ ନାହିଁ । ଯଦି ସେହି ପିଲାଟିକୁ ତୁମେ ଗଛର ଜୀବନ ବିଷୟରେ, ଫୁଲ ବିଷୟରେ, ଫଳ କିପରି ହୁଏ ଏବଂ ତା'ପରେ ସୂର୍ଯ୍ୟମୁଖୀ ଫୁଲ କାହିଁକି ସୂର୍ଯ୍ୟ ଆଡ଼କୁ ମୁହଁ କରେ, ଆଦି ବିଷୟ ରେ ପ୍ରଶ୍ନ ପଚରାଯାଏ, ତାହାହେଲେ ତାର ଉତ୍ତର ଦେବାପାଇଁ ଆଗ୍ରହ ଆସିବ । (୩,୧୫୪)

ପାଠ ପଢ଼ିବା ପ୍ରତି ଏକ ବୌଦ୍ଧିକ ଭାବନା ପାଠପଢ଼ାର କେତେ ବର୍ଷ ଅନୁଭୂତିରୁ ହିଁ ତିଆରି ହୋଇଥାଏ ଏବଂ ଛାତ୍ରମାନଙ୍କୁ ଧନ୍ୟବାଦ ଦେବା ଉଚିତ୍ ଯେ ସେମାନଙ୍କର ପ୍ରଚେଷ୍ଟା, ଫଳାଫଳ ଯାହା ଜ୍ଞାନ ଓ କୌଶଳ ଭାବରେ ନାମିତ ସେମାନେ ସେ ବିଷୟରେ ସଚେତନ ଥାଆନ୍ତି । (୩,୧୮୭)

## ପିଲାମାନେ ସୃଜନଶୀଳ ଜଗତରେ ବଞ୍ଚିବା ଦରକାର

ପ୍ରାକ୍-ପ୍ରାଥମିକ ଶ୍ରେଣୀର ପିଲାମାନଙ୍କ ଭିତରୁ ମଧ୍ୟ କିଏ 'ତତ୍ତ୍ୱବାଦୀ ଏବଂ କିଏ 'ସ୍ୱପ୍ନାଭିଳାଷି' ବାରି ହେବ । 'ତତ୍ତ୍ୱବାଦୀ'ମାନେ ଟିକିନିଖି ଦେଖିବା ପାଇଁ ଆଗ୍ରହ ପ୍ରକାଶ କରିଥାଆନ୍ତି ଏବଂ ଏହାକୁ କୌଣସି ଲକ୍ଷ୍ୟରକେନ୍ଦ୍ରସ୍ଥଳକୁ ପହଞ୍ଚିବା ଯାଏ ତାଙ୍କୁ ଯତ୍ନରେ ରଖି ସିଦ୍ଧାନ୍ତ ଉପରେ ଗୁରୁତ୍ୱ ଦିଅନ୍ତି । ସ୍ୱପ୍ନାଭିଳାଷୀ ଏବଂ କବିମାନେ ଏହାର ସାମୂହିକ ପରିଧିମଧ୍ୟରେ ଘଟଣାକୁ ଅନୁମାନ କରନ୍ତି । ସେମାନେ ସୂର୍ଯ୍ୟ ଉଦୟର ସୌନ୍ଦର୍ଯ୍ୟରେ ଏବଂ ଭୟଙ୍କର ମେଘ ଝଡ଼ରେ ଅଭିଭୂତ ହୁଅନ୍ତି । ରଙ୍ଗର ଖେଳରେ ମୋହିତ ହୁଅନ୍ତି । ତତ୍ତ୍ୱବାଦୀମାନେ ଆକାଶ ବେଳେ ବେଳେ କାହିଁକି ନୀଳ ଏବଂ ବେଳେ ବେଳେ ନାଲି ଦେଖାଯାଏ ବୋଲି ପଚାରିଥାଆନ୍ତି । ପ୍ରତ୍ୟେକ ପିଲାର ଧାରଣାଗୁଡ଼ିକ ତାଙ୍କର ନିଜ ବାଟରେ ବିକଶିତ ହୁଏ । ପ୍ରତ୍ୟେକ ବ୍ୟକ୍ତି ତାଙ୍କ ନିଜ ବାଟରେ ଚତୁର ଏବଂ ଜ୍ଞାନୀ ଅଟନ୍ତି । କୌଣସି ପିଲା ସମ୍ପୂର୍ଣ୍ଣ ଭାବରେ ଦକ୍ଷତା କିମ୍ବା ଭଗବାନଙ୍କ ଆଶୀର୍ବାଦରୁ ବଞ୍ଚିତ ନୁହଁନ୍ତି । ପାଠପଢ଼ାରେ ସଫଳତା ପାଇଁ ତା'ର ମସ୍ତିଷ୍କ ଏବଂ ପ୍ରତିଭାର ମୂଳଦୁଆ ପଡ଼ିବା ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ଛାତ୍ରର ଉନ୍ନତି ସେମାନଙ୍କର ଦକ୍ଷତାକୁ ନେଇ ହେବ । (୧୪,୮)

ଆମେ ବଡ଼ମାନେ ଯଦି ସାତବର୍ଷ ବୟସର ପିଲାଟିର ଆଖିରେ ଜଗତକୁ ଦେଖିବା ପାଇଁ ସମର୍ଥ ହୋଇଥାନ୍ତୁ ସବୁଠାରୁ ସେହି କଳାବିହୀନ ନାଟକରେ ଆମେ ବହୁତ ଗଭିର ଜିନିଷ ଏବଂ ଘଟଣାକୁ ଜାଣିପାରିଥାନ୍ତୁ । ନାଟକରେ ଛୋଟପିଲାମାନଙ୍କଠାରୁ କେହି ଅଧିକ ଗମ୍ଭୀର ହୋଇନଥାନ୍ତି । ସେମାନେ

ଯେତେବେଳେ ଅଭିନୟ କରନ୍ତି, ସେମାନେ କେବଳ ହସନ୍ତି ନାହିଁ, ଅନେକ ଭାବରେ ଭାବବିହ୍ୱଳ ହୁଅନ୍ତି ଏବଂ ବେଳେ ବେଳେ କଷ୍ଟ ପାଇଥାଆନ୍ତି । କିନ୍ତୁ ଯଦି ଶିକ୍ଷକ ଏହି ଯୁବ ସୁଲଭ ଗୁଣକୁ ପାଠପଢ଼ା ମାଧ୍ୟମରେ ପରିଚାଳିତ କରିବାକୁ ଚେଷ୍ଟା କରନ୍ତି, ଏହାଦ୍ୱାରା କିଛି ଲାଭ ହେବନାହିଁ । ଜ୍ଞାନ ଆହରଣରେ ସମାଜ ପାଇଁ କେତେ ଉଚିତ୍ ଏବଂ ଗୁରୁତ୍ୱପୂର୍ଣ୍ଣ, ସେ ବିଷୟରେ ଛୋଟପିଲାର ମସ୍ତିଷ୍କରେ ଭରିବା ସମ୍ଭବ ନୁହଁ । ସେ ଜଣେ ବିଜ୍ଞ ଓ ପଣ୍ଡିତକୁ ସମାଜ ଦେଉଥିବା ସମ୍ମାନର ତାତ୍ପର୍ଯ୍ୟକୁ ବୁଝିପାରେ ନାହିଁ, କେବଳ ସମ୍ମାନ ଦିଆଯାଉଛି ବୋଲି ଜାଣିପାରେ । ଏହି ସହଜାତ ସଚେତନତା ପିଲାର ମସ୍ତିଷ୍କକୁ ବୁଝିବା ପାଇଁ ଆମ ପ୍ରଚେଷ୍ଟାରେ ବ୍ୟବହାର ହେବା ଉଚିତ୍ । ପାଠ ପଢ଼େଇବାର ମହତ୍ତ୍ୱ ବୁଝାଇବା ପାଇଁ ଏହା ମଧ୍ୟ ଧିରେ ଧିରେ ବ୍ୟବହାର ହେବା ଉଚିତ୍ । ପିଲାଟିଏ ତା ପଢ଼ାକୁ ଏବଂ ସମାଜ ପାଇଁ ଉପଯୋଗୀ ଏବଂ ଦରକାରୀ ଜ୍ଞାନ ଆରହଣକୁ କାମ ହିସାବରେ ସମ୍ମାନର ସହିତ ଦେଖୁଛି କି ନାହିଁ ଏହା ଶିକ୍ଷକଙ୍କ ପାଠପଢ଼ାର କଳା ଉପରେ ନିର୍ଭର କରେ । ଅନୁଭୂତିରୁ ଜଣାଯାଏ ଯେ ଯେତେଶୀଘ୍ର ପିଲାଟିଏ ଏପରି ମତ ସମ୍ପର୍କରେ ଆସିବ, ତାର ବୌଦ୍ଧିକ ଜୀବନ ସେତିକି ଉନ୍ନତ ହୋଇପାରିବ ଏବଂ ତା'ର ନିଜର ଆତ୍ମସମ୍ମାନ ପ୍ରତି ସଚେତନତା ଅଧିକ ଦୃଢ଼ ହେବ । ଏଭଳି ଅନୁଧାନ କରିବାର ମନୋଭାବ ସର୍ବପ୍ରଥମେ ପିଲାର ସକାରାତ୍ମକ ଆବେଗଗୁଡ଼ିକୁ ନେଇ ହୋଇଥାଏ । ସେଗୁଡ଼ିକ (ଖୁସୀ ଏବଂ ସନ୍ତୋଷ) ତା'ର ସଫଳତା ସହିତ ସମ୍ପର୍କ ଥାଏ । । ( ୬,୭୭)

## ପ୍ରକୃତ ବିଦ୍ୟାଳୟଟିଏ କ୍ରିୟାଶୀଳଚିନ୍ତାର ରାଜ୍ୟ ହୋଇଥାଏ ।

ପାଠପଢୁ ଥିବା ପିଲାଟିଏ ପାଇଁ ଶ୍ରେଣୀଗୃହର ସବୁଠାରୁ ବଡ଼ ଜିନିଷ ହେଉଛି ସେ ବସୁଥିବା ଡେସ୍କ କିମ୍ବା ଗବେଷଣାଗାରର ଟେବୁଲ୍ । ତା' କାମର ଉପାଦାନ ହେଉଛି ବହି, ଖାତା, ଏବଂ ବିଦ୍ୟାଳୟରେ ମୁଖ୍ୟ କାମ ପାଠପଢ଼ା ହେବ । (୩୧)

ପ୍ରକୃତ ବିଦ୍ୟାଳୟଟିଏ କ୍ରିୟାଶୀଳ ଚିନ୍ତାର ଏକ ରାଜ୍ୟ ହୋଇଥାଏ । ଉଦାହରଣସ୍ୱରୂପ ଅଷ୍ଟମ ଶ୍ରେଣୀର ଛାତ୍ରଟିକୁ ଯଦି ଘରେ ପାଠ ବହିରୁ ଦଶପୃଷ୍ଠା ପଢ଼ିବା ପାଇଁ କୁହାଯାଇଛି ସେ କେବଳ କ୍ରିୟାଶୀଳ ଚିନ୍ତାରେ ବ୍ୟସ୍ତ ରହୁଛି । କିନ୍ତୁ ଯଦି ସେ ସମାନ ସମୟରେ କୌଣସି ଆନନ୍ଦଦାୟକ ପାଠ ବହି କିମ୍ବା ପତ୍ରିକାରୁ

୨୦ ରୁ ୪୦ ପୃଷ୍ଠା ପଢୁଛି, ସେ ହୃଦୟକୁ ନଛୁଇଁ କେବଳ ଶିଖିବା ପାଇଁ ପଢୁନାହିଁ, ସେ ତାର ଚିନ୍ତା କରିବା, ଆବିଷ୍କାର କରିବା, ସର୍ବଶେଷରେ ବିସ୍ମୟ ହେବାର ଇଚ୍ଛାକୁ ନେଇ ପଢୁଛି ।

ଆଇନ୍‌ଷ୍ଟାଇନ୍ ମତରେ ଆମ ଅନୁଭୂତିକୁ ଆସିଥିବା ସବୁଠାରୁ ସୁନ୍ଦର ଏବଂ ବାରି ହୋଇ ପଡୁଥିବା ଆବେଗ ହେଉଛି ରହସ୍ୟବୋଧତାକୁ ଅନୁଭବ କରିବା । ଯିଏ ଏହି ସଚେତନତା ହରେଇଛି ତାର ଭୟାକୁଳ ହେବାର ଦକ୍ଷତା ହରେଇବ । ତାକୁ ମୃତ ସହିତ ତୁଳନା କରି ଗ୍ରହଣ କର । ଦୁଃଖର ସହିତ ମୁଁ ବହି ପଢ଼ାରେ ଅନେକ ସମୟ ଦେଇ ଅକାମି ହୋଇପଡ଼ିଥିବା ଜୀବିତ ଶବଗୁଡ଼ିକୁ ଅବଲୋକନ କରୁଛି । (୩୧)

ନିର୍ଦ୍ଦିଷ୍ଟ ଭାବରେ ପରିପକ୍ୱ ବୟସ ଆସିଲେ ମନେ ରଖିବା ଶକ୍ତି କମିଯାଇଥାଏ । ଏହାର କାରଣ ହେଲା ସେହି ସମୟରେ କିଶୋର ବୟସର ପିଲାମାନେ ହିତାହତ ଚିନ୍ତା କରିପାରନ୍ତି ନାହିଁ । ସେମାନଙ୍କ ଚିନ୍ତାରୁ ଦାୟିତ୍ୱ ଜ୍ଞାନ ଦୂରେଇ ଯାଇଥାଏ ଏବଂ ନିଜର ସ୍ୱାଧୀନ ମନୋଭାବ ପୋଷଣ କରିବାରେ ସେମାନଙ୍କର ସମସ୍ତ ଶକ୍ତି ଖଟାଇଥାଆନ୍ତି । (୧୪,୮)

କେତେବର୍ଷ ତଳେ ଆମ ବିଦ୍ୟାଳୟର ଶିକ୍ଷକମାନେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ସେମାନେ ସବୁଜିନିଷକୁ ବିସ୍ତୃତ ଏବଂ ସହଜଗମ୍ୟ ଭାବରେ ବାଖ୍ୟା କଲାବେଳେ (ସେମାନଙ୍କୁ ବୁଝାଯାଇଥିବା ପ୍ରକ୍ରିୟାରେ) ସବୁବେଳେ ଛାତ୍ରମାନେ ଚିନ୍ତା କରିବା ପାଇଁ ବାଧ୍ୟ ହୁଅନ୍ତି ବୋଲି ଧରିନିଅନ୍ତି । ତାହାହେଲେ ଯଦି ଶିକ୍ଷକ ପାରୁପର୍ଯ୍ୟନ୍ତ ଛାତ୍ରମାନଙ୍କର ମାନସିକତାକୁ ବୁଝିବା ପାଇଁ ଚେଷ୍ଟା କରୁଛନ୍ତି, ଜ୍ଞାନ କୁଆଡ଼େ ଉଭାଇ ଯିବାର ନାହିଁ । ଅବାସ୍ତବ ଚିନ୍ତାଦ୍ୱାରା ଆମ ମସ୍ତିଷ୍କ ଉନ୍ନତି ହୁଏ । ସେଥିପାଇଁ ଅବାସ୍ତବ ଚିନ୍ତାକୁ ଧନ୍ୟବାଦ ଦେବା । ଅବାସ୍ତବ ଚିନ୍ତାର ଗୁଣଗୁଡ଼ିକୁ ସମସ୍ତ ଶିକ୍ଷକ ଏକ ନୀତି ଭାବରେ ମନେରଖିବା ଉଚିତ୍ । (୧୩,୭)

ଅନୁଭୂତିରୁ ମୋର ହୃଦ୍‌ବୋଧ ହେଉଛି ଯେ ଛାତ୍ରମାନେ ଯେତିକି ବେଶି ମନେ ରଖିବେ ଏବଂ ଧାରଣା କରିବେ, ( ମାଧ୍ୟମିକ ଏବଂ ଉପରଶ୍ରେଣୀର ପିଲାମାନଙ୍କୁ ମନେରଖିବାକୁ ପଡୁଥିବା ପାଠ ଅନେକ ବେଶୀ ) ବାସ୍ତବ ପାଠରୁ ଅବାସ୍ତବ ପାଠକୁ ଏବଂ ଚିନ୍ତା କରିବା ଏବଂ ଆଲୋଚନା କରିବା ପାଇଁ ସାଧାରଣ ଶ୍ରେଣୀଭୁକ୍ତ କରିବା ସେତିକି ଅଧିକ ଆବଶ୍ୟକତା ଉପଲବ୍ଧ ହୁଏ । (୧୪,୮)

ମାନସିକ ସ୍ତରର କସରତ କେବଳ ମନେରଖିବା ଏବଂ ମୁଖସ୍ଥ କରିବା ଉଦ୍ଦେଶ୍ୟରେ ହେବା ଉଚିତ୍ ନୁହେଁ । ଅରେ ବିଶ୍ଳେଷଣ ଶେଷ ହେଲେ ମାନସିକ କସରତ ମଧ୍ୟ ବନ୍ଦ ହୋଇଯାଇଥାଏ ଏବଂ ବୋକା ହୋଇ ଘୋଷିବା ସାର ହୁଏ । (୩, ୧୬୯)·

ବାଧ୍ୟବାଧକତାର ଘୋଷିବା ଦ୍ୱାରା ଛାତ୍ରର ନୈତିକ ମନୋବଳ ବିପର୍ଯ୍ୟୟ ହୁଏ । ଅନେକ ବର୍ଷ ଧରି ଦିନ ପରେ ଦିନ ସେ ଯେତେ ତା'ର ଅଧିକ କିନ୍ତୁ ମୂଲ୍ୟହୀନ କାମ କରିଚାଲେ, ଛାତ୍ରଟିଏ ସାଧାରଣ ଭାବରେ ମାନସିକ କାମର ଭୁଲ୍ ଧାରଣା ଆହରଣ କରିଥାଏ ଏବଂ ପାଠପଢ଼ାକୁ ଘୃଣା କରିବା ଆରମ୍ଭ କରିଥାଏ । କେତେ ସମୟ ପରେ ସେ ପାଠପଢ଼ା କାମ ବନ୍ଦ କରିଦିଏ । (୩,୧୭୮)

ଶିକ୍ଷକଙ୍କୁ କିଶୋର ବୟସର ପିଲାମାନଙ୍କର ଚାହିଦାକୁ ମେଣ୍ଟାଇବା ସେମାନଙ୍କୁ ଅବାସ୍ତବ ଚିନ୍ତାରେ ନିୟୋଜିତ କରିବା, ତଥ୍ୟର ବିଶ୍ଳେଷଣ କରିବା ପାଇଁ ଶିକ୍ଷକଙ୍କ ଉପସ୍ଥାପନାରେ ଅନେକ ତଥ୍ୟ ଏବଂ କମ୍ ସାଧାରଣ କଥା ରହିବା ଉଚିତ୍ । ମାଧ୍ୟମିକ ଏବଂ ଉପରଶ୍ରେଣୀର ଛାତ୍ରମାନଙ୍କର ପାଇଁ ଆଗ୍ରହ ଉଦ୍ଦୀପକ ଜିନିଷ ବା ଭାଷଣଗୁଡ଼ିକ ଏପରି ହେବା ଉଚିତ ଯେମିତି କିଛି ଜିନିଷ କହିବା ପାଇଁ ବାକି ରହିଯାଉଛି । ଆମେ ଯେତେବେଳେ ଛାତ୍ରମାନଙ୍କୁ ତଥ୍ୟ ଉପସ୍ଥାପନା କରୁ, ଆମେ ସେମାନଙ୍କୁ ତଥ୍ୟଗୁଡ଼ିକ ବିଶ୍ଳେଷଣ ଏବଂ ତୁଳନା କରିବା ପାଇଁ କହିବା ଉଚିତ୍ । ତଥ୍ୟଠାରୁ ସାଧାରଣ ମତରେ ଉପନୀତ ହେବାର ପ୍ରକ୍ରିୟା ମୋର ଅନୁଭୂତିରେ ଏକ ଗାଢ଼ ଆବେଗଭରା ସମୟ । କୌଣସି ଉଚ୍ଚତର ଲକ୍ଷ୍ୟ ହାସଲ କରିବାର ସମୟ ଛାତ୍ରମାନଙ୍କର ବିଜୟ ସହିତ ତୁଳନା କରାଯାଇପାରେ ।

ବିଷୟବସ୍ତୁ ଯେତେ ସରଳ ହେବ (ଉଦାହରଣ ସ୍ୱରୂପ ଚିନ୍ତା କରିବାରେ ଯେଉଁ ଜଟିଳ ପ୍ରକ୍ରିୟା ସମ୍ପୃକ୍ତ ଥାଏ, ଉଦ୍ଭିଦ ବିଜ୍ଞାନ ଗଣିତ ଠାରୁ ସହଜ) । ଜ୍ଞାନ ଆହରଣ ସମୟରେ କିଶୋର ବୟସର ପିଲାମାନେ ସେତିକି ଉଦାସୀନ ହେବେ । (୧୪,୮)

କିଶୋର ବୟସର ପିଲାମାନଙ୍କର ବ୍ୟବହାର ଅବଲୋକନରୁ ଜଣାଯାଏ ଯେ ସେମାନେ ଜାଣି ଜାଣି କୌଣସି ଜିନିଷ ଟିକିନିଖି କରି ଦେଖନ୍ତି ନାହିଁ । ଯାହା ସେମାନଙ୍କର ସିଧାସାଧା କିମ୍ବା ସ୍ୱଭାବ ସୁଲଭ ଲାଗେ, ସେମାନେ ଏହା ଉପରେ ନଜର ପକେଇବାର ଜରୁରୀ ନାହିଁ ବୋଲି ଭାବନ୍ତି, କାରଣ ଏଥିରେ ଗୁରୁତ୍ୱପୂର୍ଣ୍ଣ

ମାନସିକ କାମର ଆବଶ୍ୟକତା ପଡ଼େ ନାହିଁ । ଏଥିରୁ ବୁଝାପଡ଼େ ଯେ ଘଟଣାବଶତଃ କିଶୋର ବୟସ ପିଲାଙ୍କର ଆକ୍ଷରିକ ଘୋଷା ପାଠପ୍ରତି ଘୃଣାଭାବ ରହିଛି । ଏବଂ ଉଦାହରଣ ସ୍ୱରୂପ ସେମାନଙ୍କର ସୃଜନାତ୍ମକ କାମ ପ୍ରତି ଥିବା ଆଗ୍ରହ କବିତା ମନେରଖିବା ଦ୍ୱାରା ବାଧାପ୍ରାପ୍ତ ହେଉଛି । (୧୬,୧୨୨)

କିଶୋର ବୟସର ପିଲାମାନଙ୍କର ନିର୍ଦ୍ଦିଷ୍ଟ ଭାବରେ ମାନସିକ ପ୍ରଚେଷ୍ଟା, ଦକ୍ଷତା ଏବଂ ବିଚକ୍ଷଣତା ଦରକାର ପଡ଼ୁଥିବା କେତେକ ବୌଦ୍ଧିକ ବିଷୟବସ୍ତୁ ଉପରେ ସମ୍ମାନ ଥାଏ । ନିର୍ଦ୍ଦିଷ୍ଟ ଭାବରେ ଗଣିତ କ୍ଷେତ୍ରରେ ଏହା ପ୍ରଯୁଜ୍ୟ । ପାଠଚକ୍ରରେ କିଶୋର ଗଣିତଜ୍ଞଙ୍କ କଳ୍ପନା ଶକ୍ତି ବୃଦ୍ଧି କରିବା ପାଇଁ ପ୍ରଶ୍ନଗୁଡ଼ିକ ପ୍ରସ୍ତୁତି ହୋଇଥାଏ ଏବଂ ଆମ ପୁଅ ଝିଅମାନଙ୍କର ଜୀବନରେ ଉପାୟବନ୍ତ ହେବା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର ହୋଇଥାଏ ।

ଅନୁଭୂତିରୁ ଏହା ସ୍ପଷ୍ଟ ହୋଇଛି ଯେ, କିଶୋର ବୟସର ପିଲାମାନଙ୍କୁ ଗଣିତ ପଢ଼େଇବା ପିଲାମାନଙ୍କର ବୌଦ୍ଧିକ କାମରେ ଆଗ୍ରହ ବଢ଼ିବାର ପ୍ରକ୍ରିୟା, ଏପରିକି ତା'ର ପୂରା ବୌଦ୍ଧିକ ପ୍ରକ୍ରିୟା ଉପରେ ବହୁତ ଭାବରେ ନିର୍ଭର କରେ । ଧିରେ ଧିରେ ଅବାସ୍ତବ ଏବଂ ସାମଗ୍ରୀକତାର ଗୁରୁତ୍ ଉପରେ ଥିବା ତାର ସଚେତନତା ବାହାର ଜଗତ ସହିତ ସମ୍ପର୍କୀତ ବୌଦ୍ଧିକ ସମ୍ବେଦନଶୀଳତାର ଜ୍ଞାନକୁ ବଢ଼େଇଥାଏ । ସେମାନେ ସଚେତନ ଭାବରେ ସେମାନଙ୍କ ଅନ୍ତର ଦୃଷ୍ଟିକୁ ବିଶ୍ଳେଷଣ କରିବା ପାଇଁ ଆଗ୍ରହ ଦେଖାନ୍ତି, ଯାହା ହୁଏତ ପାଖରେ ଦେଖିବା ସୁଯୋଗ ପାଇପାରି ନଥାନ୍ତେ । ନିଜ ଦ୍ୱାରା ପ୍ରମାଣିତ ସ୍ୱତଃ ପ୍ରବୃତ୍ତ କାର୍ଯ୍ୟକାରଣ ସମ୍ପର୍କ କୌଣସି ଘଟଣାକୁ ଆଗ୍ରହ ବଢ଼େଇବାରେ କେବଳ ବିଫଳ ହେବ ନାହିଁ, ଏହା ମଧ୍ୟ ଆଗ୍ରହକୁ କମେଇଦେବ । (୬, ୧୨୫)

ମୁଁ ଏଠାରେ ଛାତ୍ରଟିଏ ତା'ର ବିଦ୍ୟାଳୟର ଦଶବର୍ଷ ଭିତରେ ହାସଲ କରିବାକୁଥିବା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦକ୍ଷତାଗୁଡ଼ିକ ତାଲିକା କରିଛି :

୧) ପଢ଼ିବାରେ ବାକ୍‌ପଟୁ, ସ୍ପଷ୍ଟ ଏବଂ ବୋଧକ୍ଷମ ।

୨) ଶିକ୍ଷକ ଡାକୁଥିବା ପାଠକୁ ସ୍ପଷ୍ଟ ଅପେକ୍ଷାକୃତ ଭାବରେ ଶୀଘ୍ର ଏବଂ ନିର୍ଭୁଲ ଭାବରେ ଲେଖିପାରୁଥିବ,

୩) ଚିନ୍ତା କରିବା, ତୁଳନା କରିବା ଏବଂ ଜିନିଷ ଏବଂ ଘଟଣାଗୁଡ଼ିକୁ ବିପରୀତ ଭାବରେ ସ୍ଥାପିତ କରିବାର ଦକ୍ଷତା,

୪) ନିଜ ପରିବେଶରୁ ବିଭିନ୍ନ ଘଟଣାକୁ ଟିକିନିଖି ନିରୀକ୍ଷଣ କରିବା,

୫) ଶବ୍ଦରେ ଧାରଣାଗୁଡ଼ିକର ପ୍ରକାଶ କରିବା,

୬) ପଢ଼ିଥିବା ପାଠକୁ କେତେକ ଅଂଶ ନିର୍ଦ୍ଦିଷ୍ଟ ତର୍କକୁ ନେଇ ଭାଗ ଭାଗ କରି ବାଛିବା, ଏବଂ ପାଠଗୁଡ଼ିକ ଭିତରେ ଥିବା ସମ୍ପର୍କ ଏବଂ ପରସ୍ପର ନିର୍ଭରଶୀଳତାକୁ ପ୍ରତିଷ୍ଠା କରାଇବା ।

୭) ଦରକାର ଥିବା ଏକ ବିଷୟ ଉପରେ ବହିଟିଏ ବାଛିବା ।

୮) ଗୋଟିଏ ବହିରୁ ଦରକାରୀ ଏବଂ ଉପଯୋଗୀ ପାଠ ବାରିବା ।

୯) ପଢ଼ିବା ସମୟରେ ଗୋଟିଏ ପାଠ ଆଗୁଆ ତାର୍କିକ ପର୍ଯ୍ୟାଲୋଚନା କରିବା ।

୧୦) ଜଣେ ଶିକ୍ଷକଙ୍କ ଠାରୁ ଶୁଣିବା ଏବଂ ସେହି ସମୟରେ ଯାହା ଉପସ୍ଥାପନା କରା ହୋଇଥିଲା, ତାହାର ମୂଖ୍ୟ ବିଷୟବସ୍ତୁକୁ ତାଲିକା କରିବା ।

୧୧) ଗୋଟିଏ ପାଠକୁ ପଢ଼ିବା ଏବଂ ସେହି ସମୟରେ ସେହି ପାଠ ଉପରେ ଶିକ୍ଷକ ଦେଉଥିବା କାମ ଏବଂ ଏହାର ତାର୍କିକ ଉପାଦାନର ଅଂଶଗୁଡ଼ିକ ବାରିବା ।

୧୨) ଛାତ୍ରମାନେ ସେମାନଙ୍କର ଚାରିପାଖକୁ କେମିତି ଭାବରେ ଦେଖନ୍ତି ଏବଂ କ'ଣ ପର୍ଯ୍ୟବେକ୍ଷଣ କରନ୍ତି ତା' ଉପରେ ଏକ ରଚନା ଲେଖିବା ଇତ୍ୟାଦି । (୧୩,୧୧)

କୁରାଢ଼ି ସାହାଯ୍ୟରେ ଜଣେ ବଢ଼େଇ ରୁଲର ଟିଏ ତିଆରି କରିପାରିବ ନାହିଁ । ସେହିପରି ଠିକ୍ ଭାବରେ ଏବଂ ଶୀଘ୍ର ଶୀଘ୍ର ଲେଖି ପାରୁନଥିବା ଛାତ୍ରଟିଏ ରଚନା ଟିଏ କିମ୍ବା ଶିକ୍ଷକ ପଢ଼ାଉଥିବା ପାଠରୁ ଟିପ୍ପଣୀଟିଏ ଲେଖିପାରିବ ନାହିଁ । ବୈଜ୍ଞାନିକ ପଦ୍ଧତିରେ ଆଧାରିତ ହୋଇଥିବା ଶିକ୍ଷାଗତ ପଥପଦର୍ଶକ ଗୁଡ଼ିକ ଛାତ୍ରମାନଙ୍କର ଦକ୍ଷତା ଏବଂ କୌଶଳ ଗୁଡ଼ିକର ବୃଦ୍ଧିକୁ ଠିକ୍ ବାଟରେ କରାଇବା ପାଇଁ ସାହାଯ୍ୟ କରିଥାଏ । ଏହା ଛାତ୍ରମାନଙ୍କୁ ମାଧ୍ୟମିକ ଶିକ୍ଷା ପାଇଁ ଦକ୍ଷତାର ଦୃଢ଼ଭିତ୍ତି ହୋଇ ରହିଥାଏ । ଆମେ ଯଦି ମନୋଯୋଗୀ ହୋଇ ପର୍ଯ୍ୟବେକ୍ଷଣ କରିବା, ଛାତ୍ରମାନେ ଘରେ କରିବାକୁ ଥିବା ପାଠ କଲାବେଳେ ଆମେ ଅନୁଭବ କରିପାରିବା ଯେ ସେମାନେ ସବୁଗୁଡ଼ିକ ବଢ଼େଇ ଭଳି କୁରାଢ଼ି ସାହାଯ୍ୟରେ ରୁଲର୍ ତିଆରି କରିବା ପାଇଁ ଅସଫଳ ପ୍ରୟାସ କରୁଛନ୍ତି । ଠିକ୍ ଭାବରେ ପଢ଼ି ପାରୁନଥିବା ଛାତ୍ରଟିକୁ ପ୍ରାଚୀନ ଗ୍ରୀସ୍‌ରେ ଦାସ ମାନଙ୍କର ମାଲିକାନା ରାଜ୍ୟର

ଅଭ୍ୟୁଦୟ ଏବଂ ପତନ ହେବାର କାରଣ ବିଷୟରେ ବୁଝିବା ଏବଂ ଜାଣିବାକୁ କୁହାଯାଇଛି । ଲେଖିବାକୁ ସମର୍ଥ ହୋଇନଥିବା ପିଲାଟିକୁ ଘରକୁ ଯାଇ 'ଶୀତଋତୁର ଖରାଦିନ' ବିଷୟରେ ଲେଖିବାକୁ କୁହାଯାଉଛି । ପିଲାମାନଙ୍କୁ କଷ୍ଟକର ପାଠ ଘରେ କରିବାକୁ ଦେବା ପୂର୍ବରୁ ସେମାନଙ୍କୁ ତାହା କରିବା ପାଇଁ ଯେଉଁ ଜଟିଳ ଦକ୍ଷତା ଦରକାର, ସେତିକି ସକ୍ଷମ କରାଇବାର ଆବଶ୍ୟକତା ରହିଛି । (୧୩,୧୧)

ପଢ଼ିବାରେ ଭଲ ଦକ୍ଷତା ବିନା ପ୍ରକୃତ ବିଦ୍ୟାଳୟ ଶିକ୍ଷା ଏବଂ ପ୍ରକୃତ ମସ୍ତିଷ୍କର କାର୍ଯ୍ୟ ହୋଇପାରିବ ନାହିଁ । ବହି ପଢ଼ିବାରେ ଖରାପ ଦକ୍ଷତା ଗୋଟିଏ ମଇଳା ଝରକା ସଦୃଶ୍ୟ ଯେଉଁଥିରେ କିଛି ହେଲେ ଦେଖାଯାଇପାରିବ ନାହିଁ । (୩୧)

ପିଲାଟିଏ ଯଦି ବିଦ୍ୟାଳୟରେ ଭଲ କରୁଛି, ଲେଖିବାର ଦକ୍ଷତା, ଅଳ୍ପେ ହେଉ କି ବେଶୀ ହେଉ ମଧ୍ୟ ଆପେ ଆପେ ଭଲ ହୋଇଯିବ । ତା'ର ମାନସିକ ପ୍ରକ୍ରିୟାର ପ୍ରଥମ ଲକ୍ଷ୍ୟ ଲେଖିବାର ପ୍ରକ୍ରିୟାକୁ ନ ଦେଖି, ସେ ଯାହା ଲେଖୁଛି ଏବଂ ଯାହା ଉପରେ ଭାବୁଛି, ତା' ବିଷୟରେ ଜାଣିବା ଉଚିତ୍ । ମୋର ଲମ୍ବା ଅନୁଭୂତିରୁ ମୁଁ ଜାଣିଛି ଯେ, ଶୀଘ୍ର, ପ୍ରାଞ୍ଜଳ ଭାବରେ ଏବଂ ବିଜ୍ଞତାର ସହିତ ଲେଖିବାଏବଂ ଗୋଟିଏ କ୍ରମରେ ପାଠପଢ଼ାର ମାଧ୍ୟମ ହେବା ଉଚିତ୍, କିନ୍ତୁ ଏହା ଶେଷ ଲକ୍ଷ୍ୟ ହେବା ଉଚିତ୍ ନୁହେଁ । ଛାତ୍ରଟିଏ ତା'ର ପ୍ରାଥମିକ ଶିକ୍ଷା ପ୍ରାପ୍ତି ସମୟରେ ଅଭ୍ୟାସ ଖାତାରେ ୧୪୦୦ ରୁ ୧୫୦୦ ପୃଷ୍ଠାର ଲେଖା ଶେଷ କରିବାକୁ ପଡ଼େ । ଏହି କାରଣରୁ ଶୀଘ୍ର ଲେଖିବାର ଦକ୍ଷତା ଏବଂ କୌଶଳର ବିକାଶ କରିବା ପାଇଁ ସ୍ୱତନ୍ତ୍ର ଅଭ୍ୟାସ ଦରକାର । (୧୧,୨୮୫)

ନିୟମଟିକୁ ମନେ ରଖିବା ପାଇଁ (ସଜ୍ଞା କିମ୍ବା ଉପସଂହାର) ସ୍ୱତନ୍ତ୍ର ଭାବରେ ଛାତ୍ରଟିକୁ ସାହାଯ୍ୟ କରିବାକୁ ନଯାଇ ନିର୍ଭରଯୋଗ୍ୟ ଭାବରେ ସାହାଯ୍ୟ କରିବା ଜଣେ ଦକ୍ଷ ଶିକ୍ଷକ ପକ୍ଷେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସଫଳତା । ପ୍ରାଥମିକ ଶ୍ରେଣୀମାନଙ୍କରେ ଆମେ ନୀତି ଠାରୁ ପାଠପଢ଼ାକୁ ଯେଭଳି ଭାବରେ ଦୂରରେ ରଖିଥାଉ, ସେହିପରି ଶିକ୍ଷକମାନଙ୍କର ଜ୍ଞାନ ପରୀକ୍ଷା କରିବା ପାଇଁ ପିଲାମାନଙ୍କଠାରୁ ପାଠଗୁଡ଼ିକ ଜାଣିବାକୁ ଚାହିଁ ନଥାଉ । ଯଦି ଛାତ୍ରଟିଏ ନିୟମଗୁଡ଼ିକ ଜାଣିନଥାଏ, କିମ୍ବା ଭୁଲିଯାଇଥାଏ (ସେଗୁଡ଼ିକ କେବେ ଆନୁଷ୍ଠାନିକ ଭାବେ ମନେ ରଖାଯାଇନଥାଏ) ତାକୁ ବାରମ୍ବାର ଅଭ୍ୟାସ ଏବଂ ବାସ୍ତବ ତଥ୍ୟରୁ ବିଶ୍ଳେଷଣ

କରିବାକୁ ପଡ଼େ । ପୁନଃ ଚିନ୍ତା କରିବା ପାଇଁ ବ୍ୟବସ୍ଥା କରାଯାଇଥାଏ ଏବଂ ଏହାକୁ ସମ୍ପୂର୍ଣ୍ଣ ଭାବେ ବୁଝିଲା ପରେ ମନେ ରଖିବାକୁ କୁହାଯାଇଥାଏ ।

କୌଣସି ବିଷୟକୁ ମନେ ରଖିବା ପୂର୍ବରୁ ତା' ବିଷୟରେ ଭଲ ଭାବରେ ବୁଝିବା ଯେତିକି ଗୁରୁତ୍ୱପୂର୍ଣ୍ଣ, ପିଲାଟିକୁ ନିୟମ ବିଷୟରେ ଆଗରୁ ଜଣାନଥିବା ସେତିକି ଗୁରୁତ୍ୱପୂର୍ଣ୍ଣ । ବେଳେ ବେଳେ ଛାତ୍ରଟିଏ ନିୟମଟିକୁ ଭୁଲିଯାଏ, ତାହାର ମସ୍ତିଷ୍କରୁ ବାହାର କରିଦିଏ, ଯେହେତୁ ସୂତ୍ରଟିଏ ସେ ବୁଝିନଥାଏ । ସେ ତଥ୍ୟ ଏବଂ ଘଟଣାଗୁଡ଼ିକର ମୂଳ ତତ୍ତ୍ୱ ବିଷୟରେ ଚିନ୍ତା କରିବା ପାଇଁ ମୂଳରୁ ଆଉଥରେ ଆରମ୍ଭ କରିବା ଉଚିତ୍ । (୧୧,୨୬୫)

ସବୁ ଅପରିହାର୍ଯ୍ୟ ନୀତି, ସଜ୍ଞା ଏବଂ ଅନ୍ୟାନ୍ୟ ସାଧାରଣ ସୂତ୍ରଗୁଡ଼ିକ ଯାହା ପ୍ରଥମ ପାଞ୍ଚବର୍ଷର ବିଦ୍ୟାଳୟ ଶିକ୍ଷାରେ ଅନ୍ତର୍ଭୁକ୍ତ କରାଇବା ଦରକାର ସେଗୁଡ଼ିକ କେବଳ ଶ୍ରେଣୀର ହେଉଥିବା କାମ ଦ୍ୱାରା ଏବଂ କେବଳ ବ୍ୟାଖ୍ୟା ସାହାଯ୍ୟରେ ମନେ ରଖାଯାଇଥାଏ , ପାଠ ବହିରୁ ଏହା ହୋଇନଥାଏ । ସେମାନେ ପାଠ ବହି ପଢ଼ିବା ପୂର୍ବରୁ ନିୟମ ଏବଂ ଅନ୍ୟାନ୍ୟ ସୂତ୍ରଗୁଡ଼ିକ ମନେରଖିବା ପାଇଁ ସେହି ୫ ବର୍ଷ ସମୟରେ ସମ୍ଭବ ହୋଇଥାଏ । ଏହାର ଅର୍ଥ ଏସବୁ ସରିଲା ପରେ ସେମାନେ କୌଣସି ଜିନିଷର ଅର୍ଥ ନବୁଝି କେବଳ ଘୋଷି ଦେବେ ନାହିଁ । (୩,୧୭୪)

କୌଣସି ବିଷୟରେ ଧାରଣାଗୁଡ଼ିକ ଯେତିକି ବୁଝାପଡ଼ିଥାଏ, ଶିକ୍ଷକଙ୍କ ବର୍ଣ୍ଣନା ଗୁଡ଼ିକ ସେତିକି ଭଲ ହୋଇଥାଏ । ଏବଂ ଛାତ୍ରମାନେ ସେମାନଙ୍କୁ ମନେ ରଖିବାକୁ କୁହାଯାଇଥିବା ବିଷୟଗୁଡ଼ିକୁ ସେତିକି ବେଶି ବୁଝିପାରନ୍ତି । ସେମାନଙ୍କୁ ସ୍ୱତନ୍ତ୍ର ଭାବରେ ଦିଆଯାଇଥିବା ଜ୍ଞାନକୁ ଏକାଠି କରିବା / କାମକୁ ପୂରା କରିବା ପାଇଁ କୁହାଯିବା ଯାଏଁ ସେମାନେ ପାଠକୁ ମନେ ରଖିଥାନ୍ତି । ବିଦ୍ୟାଳୟର ପିଲାମାନଙ୍କର ମାନସିକ କ୍ରିୟାକଳାପକୁ ପାଠ ବୁଝିବା ଏବଂ ବିଶ୍ଳେଷଣ କରିବା ପାଇଁ ନିୟୋଜିତ ହେଲାବେଳେ ସେମାନଙ୍କୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ କାମ କରିବାପାଇଁ କୁହାଯିବା ଉଚିତ୍ ହେବ । (୩,୧୭୨)

ଜ୍ଞାନର ଅର୍ଜନ ଯଦି ସକ୍ରିୟ ଚିନ୍ତା ଦ୍ୱାରା ନହେଲା, ଏବଂ ଏହା କେବଳ ମନେରଖିବା, ଘୋଷିବା, ଉପରେ ପର୍ଯ୍ୟବେସିତ ହେଲା, ମନେରଖିବା କାମ କେବଳ ପିଲାର ମାନସିକ କ୍ରିୟା କଳାପକୁ ନଷ୍ଟ କରିବ ନାହିଁ, ଏହା ସଙ୍ଗେ ସଙ୍ଗେ ତାହାର ବିକାଶର ପ୍ରତିରୋଧ କରିବ ଏବଂ ପିଲାଟିର ଉନ୍ନତି ପଛେଇ ଯିବ । ଏଭଳି

ବିପଦ ପ୍ରଥମରୁ ଚତୁର୍ଥ ଶ୍ରେଣୀ ଭିତରେ ଅଧିକ ଥାଏ । ଏହା ମୁଖ୍ୟତଃ ଜ୍ଞାନକୁ ଠୁଳ ଏକାଠି କରିବା ପାଇଁ ଦିଆଯାଉଥିବା କାମରେ ଭୁଲ୍ ଯୋଗୁଁ ଆସିଥିବା ଦୁର୍ବଳତା ସମୟରେ ହୋଇଥାଏ । ଛାତ୍ର ମାନଙ୍କର ପାଠ ପ୍ରତି ବିତୃଷ୍ଣା ମନୋଭାବ ଆସିଥାଏ । (୩,୧୭୩)

ବିଦ୍ୟାଳୟରେ ପାଠପଢ଼ା ସମୟରେ ଆଳସ୍ୟ ବିପଦ୍‌ଜନକ । ପ୍ରତ୍ୟେକ ଦିନ ଏକାବେଳକେ ୬ ଘଣ୍ଟା ଧରି ଯଦି ମାସ ମାସ, ବର୍ଷ ବର୍ଷ ଧରି ଆଳସ୍ୟ ଆସେ, ଶେଷରେ ଏହା ପିଲାର ଚରିତ୍ର ଓ ନୈତିକ ଗୁଣଗୁଡ଼ିକ ନଷ୍ଟ କରିଦିଏ । ଏହା ମାନବୀୟ କାମରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କ୍ଷତି, ଯାହା କି କୌଣସି ଜିନିଷ ଦ୍ୱାରା ପୂରଣ ହୋଇପାରିବ ନାହିଁ । ଏଭଳି ଚିନ୍ତା କ୍ଷେତ୍ରରେ ଜଣେ କର୍ମୀ ଟିଏ କାମ କରିପାରେ । (୩୧)

ମୁଁ ଦୃଢ଼ ଭାବରେ ବୁଝିଛି ଯେ ବିଦ୍ୟାଳୟର ଶ୍ରେଣୀଗୃହରେ ବସିଲା ବେଳେ କେହି ଗଭୀର ଭାବରେ ଚିନ୍ତା କରନ୍ତି, ତେବେ ପାଣି ପାଇପ୍ କାମ କରୁଥିବା ଲୋକ, ଟ୍ରାକ୍‌ଟର ଡ୍ରାଇଭର, ପଥର ମିସ୍ତ୍ରୀ, ଗାଈ ଜଗୁଆଳିମାନଙ୍କର କାମକୁ ତଳିଆ କରି ଦେଖିବେ ନାହିଁ । କାରଣ ପ୍ରକୃତ ମାନସିକ କାମରେ ବହୁତ କଷ୍ଟ ରହିଛି । ଯଦି ଚିନ୍ତାକୁ କାମ ସହିତ ସମାନ କରି ଦେଖାଯାଏ, ବିଦ୍ୟାଳୟ କାମର ରାଜପ୍ରସାଦ ହୋଇଯିବ । ତା'ପରେ ଯେଉଁମାନେ ବିଦ୍ୟାଳୟରୁ ପାସ୍ କରିଯିବେ, ସେମାନଙ୍କର ଯେକୌଣସି କାମ ପ୍ରତି ପ୍ରଗାଢ଼ ଅନୁରକ୍ତି ରହିବ, ଯେତେବେଳେ ଜଗତର ଚିନ୍ତା ପ୍ରକ୍ରିୟା ଏବଂ ବୋଧଶକ୍ତି କାମ କରିବାର ପ୍ରକ୍ରିୟାରେ ରହିବ, ବ୍ୟକ୍ତିମାନଙ୍କର ମାନସିକ ଏବଂ ଶାରିରିକ କାମ ଏକ ହୋଇପାରିବ । । (୩୧)

## ଛାତ୍ରମାନଙ୍କୁ ଜ୍ଞାନର କ୍ଷଣିକ ଆଲୋକ ଦେବାପାଇଁ ଶିକ୍ଷକଙ୍କୁ ସମସ୍ତର ଆଲୋକର ସମୁଦ୍ରକୁ ବହନ କରିବାକୁ ପଡ଼ିବ ।

ପିଲାମାନଙ୍କ ଦକ୍ଷତା , ଆଗ୍ରହ ଏବଂ ତୀକ୍ଷ୍ଣ ଧୀ ଶକ୍ତି ବୃଦ୍ଧି କରିବାରେ ନିଭାଇବାକୁ ପଡୁଥିବା ଶିକ୍ଷକଙ୍କ ଭୂମିକା, ମନ ଓ ଜ୍ଞାନକୁ ଅତ୍ୟଧିକ କାମ ବୋଲି କୁହାଯାଇନପାରେ । ଯଦି ବିଦ୍ୟାଳୟର ଶିକ୍ଷକ, ଦଳ ଭିତରୁ ଜଣେ ଗଣିତରେ ତୀକ୍ଷ୍ଣ ଧୀ ଶକ୍ତି ଥିବା ଶିକ୍ଷକ ଅଛନ୍ତି, ଏବଂ ତାଙ୍କର ସେ ବିଷୟ ପ୍ରତି ଶ୍ରଦ୍ଧା ରହିଛି, ତାହା ହେଲେ ଛାତ୍ରମାନଙ୍କ ଭିତରୁ ଦକ୍ଷ ଏବଂ ତୀକ୍ଷ୍ଣ ଧୀ ଶକ୍ତି ସଂପନ୍ନ ଗଣିତଜ୍ଞ

ନିଶ୍ଚୟ ବାହାରିବେ । ଯଦି ବିଦ୍ୟାଳୟରେ ଭଲ ଗଣିତ ଶିକ୍ଷକ ନାହାଁନ୍ତି, କୌଣସି ତୀକ୍ଷ୍ଣ ଧୀ ଶକ୍ତି ଥିବା ଛାତ୍ର ବାହାରି ପାରିବେ ନାହିଁ । ଏଭଳି କ୍ଷେତ୍ରରେ ଯେଉଁମାନେ ଗାଣିତିକ ଦକ୍ଷତାର ସଫଳ ହୋଇଥାଆନ୍ତି, ସେମାନେ ସେମାନଙ୍କର ଦକ୍ଷତା ଦେଖେଇ ପାରିବେ ନାହିଁ । ପିଲାର ବୌଦ୍ଧିକ ବିକାଶରେ ଜଣେ ଶିକ୍ଷକ ହେଉଛି ପ୍ରଥମ ପଥ ପ୍ରଦର୍ଶକ । (୯,୨୬)

ଆମ ଦଳର ଶିକ୍ଷକଙ୍କର ଦକ୍ଷତା ଆସ୍ତେ ଆସ୍ତେ ବୃଦ୍ଧି ହୋଇଛି । ସେମାନେ ନିମ୍ନଲିଖିତ ନିୟମ ଅନୁସାରେ ମନୋନୀତ ହୋଇଥିଲେ । ପ୍ରଥମରେ ସେମାନଙ୍କର ପାଠ ପଢ଼େଇବା ଏବଂ ପିଲାମାନଙ୍କୁ ଶିଖେଇବାରେ ଥିବା ନୈତିକ ଅଧିକାର; ଦ୍ୱିତୀୟରେ ସେମାନଙ୍କର ଅଧ୍ୟବସାୟ, ତୃତୀୟରେ ସେମାନଙ୍କର ପିଲାମାନଙ୍କ ପ୍ରତି ସ୍ନେହ ଏବଂ ପ୍ରତ୍ୟେକ ପିଲାଙ୍କ ପ୍ରତି ବିଶ୍ୱାସ - ପିଲାଟିର ଶିକ୍ଷାରେ ଯାହା ସମସ୍ୟା ଆସୁ ନା କାହିଁକି ସେ ଜଣେ ସାର୍ଥକ ବ୍ୟକ୍ତି ହୋଇ ବାହାରିବ । ଯଦି ଜଣେ ଏସବୁ ଗୁଣଗୁଡ଼ିକର ଅଧିକାରୀ ହୋଇଛନ୍ତି, ତାଙ୍କର ପାଠପଢ଼ାଇ ପଦ୍ଧତିରେ ଅନୁଭୂତି ନଥିଲେ ମଧ୍ୟ କୌଣସି ବିପର୍ଯ୍ୟୟ ହେବ ନାହିଁ । ପ୍ରାଥମିକ ସ୍ତରରେ ତାଙ୍କର ଜ୍ଞାନରେ ଯଦି କିଛି ଊଣା ଥାଏ, ତାହାହେଲେ ସେଠାରେ ଜଗତ ଶେଷ ହୋଇଯିବନାହିଁ । ଯଦି ସେ ତୀକ୍ଷ୍ଣ ଶକ୍ତିସମ୍ପନ୍ନ ଏବଂ ତାଙ୍କର ଜ୍ଞାନ ପ୍ରତି ଶୋଷ ରହିଛି, ବିଦ୍ୟାଳୟରେ ଶିକ୍ଷକ ହିସାବରେ ଜ୍ଞାନ ବୃଦ୍ଧି ପାଇଁ ନିଜେ ପଢ଼ିପାରିବେ । ଯଦି ଜଣକର ପିଲାଙ୍କ ପ୍ରତି ବିଶ୍ୱାସ ନାହିଁ, ଯଦି ସେ ଟିକିଏ କ'ଣ ଅସୁବିଧା ହେଲେ ଭୟାତୁର ହୋଇପଡୁଛନ୍ତି ଏବଂ ପିଲାର ପାଠପଢ଼ାରୁ କିଛି ହୋଇପାରିବ ନାହିଁ ବୋଲି ଭାବୁ, ତାହାହେଲେ ତାଙ୍କର ବିଦ୍ୟାଳୟରେ କୌଣସି ପ୍ରୟୋଜନ ନାହିଁ । ତାଙ୍କର ଭୂମିକରେ ପିଲାମାନଙ୍କର ଭବିଷ୍ୟତକୁ ବିକଳାଙ୍ଗ କରିବା ହିଁ ସାର ହେବ । (୯,୨୮)

ଜଣେ ଶିକ୍ଷକ ହିସାବରେ କାମ କରିପାରିବେ କି ନାହିଁ, ସେ ଆମ ବିଦ୍ୟାଳୟ,ରେ ରହିବେ କି ନାହିଁ, କୌଣସି ବିଧିବଦ୍ଧ ନିୟମ ଦ୍ୱାରା ନିଷ୍ପତ୍ତି ନିଆଯାଏ ନାହିଁ । ଏହା ଶିକ୍ଷକ ପରିଷଦର ଏକ ପ୍ରସ୍ତାବ ଦ୍ୱାରା ନିଷ୍ପତ୍ତି ଗୃହୀତ ହୋଇଥାଏ । ପ୍ରସ୍ତାବଗୁଡ଼ିକ ନିମ୍ନଲିଖିତ ନିୟମଗୁଡ଼ିକ ପାଳନ କରନ୍ତି : ଯେତେବେଳେ ସର୍ବସମ୍ମତିକ୍ରମେ ନିଷ୍ପତ୍ତି ନିଆଯାଏ, ସେତେବେଳେ ବିଧି ଦ୍ୱାରା ନିଆଯାଇଥିବା ନିଷ୍ପତ୍ତି ବଳବତ୍ତର ରୁହେ । ଯେତେବେଳେ ଶିକ୍ଷକଙ୍କର କାମରେ ପ୍ରଶ୍ନବାଚୀ ଆସେ, ତାଙ୍କର ଭବିଷ୍ୟତ ସଙ୍କଟାପୂର୍ଣ୍ଣ ଅବସ୍ଥାରେ ପହଞ୍ଚେ, ସେ ନିଜେ ପାଠପଢ଼ା ତା'ର କାମ ନୁହେଁ ବୋଲି ମାନି ନିଅନ୍ତି । (୯,୨୯)

ସାମ୍ୟବାଦ୍‌ର ସବଳ, ସାହାସୀ ନିର୍ମାତା ସୃଷ୍ଟି କରିବା ପାଇଁ ଯେଉଁମାନେ ତାଲିମ ଦେବେ, ସେମାନଙ୍କର ନିଜ ଉପରେ ଦୃଢ଼ ବିଶ୍ୱାସ ଥିବା ଦରକାର ଏବଂ ସେମାନେ ଏ କ୍ଷେତ୍ରରେ କିଛି କାମ କରିଥିବା ଦରକାର । ସେମାନେ ପ୍ରକୃତ ବିପ୍ଳବୀ, ସାମ୍ୟବାଦୀ ଏବଂ ଭବିଷ୍ୟତ ଉପରେ ବିଶ୍ୱାସ ରଖୁଥିବା ଲୋକ ହେବା ଦରକାର ଏବଂ ସେମାନେ ନିମ୍ନଲିଖିତ କେତେ କଥାକୁ ପସନ୍ଦ କରୁଥିବେ । ବ୍ୟକ୍ତିର ଶିକ୍ଷା, ତା ସଚେତନ ଜୀବନର ଆରମ୍ଭରୁ ସାମାଜିକ ଧାରଣା ସହିତ ସମ୍ପର୍କୀତ ହୋଇଥିବା ଦରକାର । (୭,୨୦)

ଭଲ ଶିକ୍ଷକର ଅର୍ଥ କ'ଣ ବୁଝାଏ ? ସର୍ବପ୍ରଥମେ ଏହାର ଅର୍ଥ ଯିଏ ପିଲାମାନଙ୍କୁ ଭଲ ପାଏ, ଯିଏ ତାଙ୍କ ସହିତ ସମ୍ପର୍କରେ ଆନନ୍ଦ ଅନୁଭବ କରେ । ଯିଏ ପ୍ରତ୍ୟେକ ପିଲା ଜଣେ ଯୋଗ୍ୟ ପୁରୁଷ ଅବା ମହିଳା ହୋଇପାରିବ ଏହା ଉପରେ ତାର ପୂରା ବିଶ୍ୱାସ ରଖୁଥିବେ । ଯିଏ ପିଲାମାନଙ୍କ ସହିତ ବନ୍ଧୁର ସମ୍ପର୍କ ରଖିପାରୁଥିବେ, ଯିଏ ପିଲାମାନଙ୍କର ଖୁସୀ ଓ ଦୁଃଖକୁ ହୃଦୟ ସହିତ ଅନୁଭବ କରିପାରୁଥିବେ, ସେମାନଙ୍କର ମନକୁ ବୁଝିପାରୁଥିବେ, ଏବଂ ସେ କେବେ ଭୁଲି ଯାଉନଥିବେ ଯେ, ସେ ନିଜେ ମଧ୍ୟ ପିଲାଟିଏ ଥିଲେ । ଦ୍ୱିତୀୟରେ ଯାହାର ବିଜ୍ଞାନ ଉପରେ ଭଲ ଧାରଣା ଅଛି, ସେ ଜଣେ ଭଲ ଶିକ୍ଷକ । ସେ ଯେଉଁ ବିଷୟରେ ପଢ଼ାଉଛନ୍ତି, ଏହା ଗୋଟିଏ ତାହାର ଅଂଶ । ସେ ବିଷୟକୁ ପ୍ରକୃତରେ ଭଲ ପାଆନ୍ତି, ଏବଂ ଏ ବିଷୟରେ ଯାହା ନୂଆ ବିଷୟ ଆସେ ତା' ବିଷୟରେ ଜାଣି ରଖନ୍ତି - ନୂଆ ଉଦ୍‌ଭାବନ, ଗବେଷଣା ଏବଂ ସଫଳତା । ବିଦ୍ୟାଳୟଗୁଡ଼ିକ ସେମାନେ ନିଜେ ନିଜେ ଗର୍ବ ଅନୁଭବ କରିବା ଉଚିତ୍ ଯେ ଶିକ୍ଷକମାନେ ଉପର ଲିଖିତ ଗୁଣ ସହିତ ବର୍ତ୍ତମାନ ସମୟରେ ଗବେଷକମାନେ ନିଜ ନିଜ କ୍ଷେତ୍ରରେ କାମ କଲାବେଳେ ସାମନା କରୁଥିବା ସମସ୍ୟା ସହିତ ସେମାନେ ଉଦାସୀନ ନୁହଁନ୍ତି ଏବଂ ସ୍ୱତନ୍ତ୍ର ଭାବେ ଗବେଷଣା କରିବା ପାଇଁ ସେମାନଙ୍କର ଦକ୍ଷତା ରହିଛି । ମାଧ୍ୟମିକ ବିଦ୍ୟାଳୟ ପାଠ୍ୟଖସଡ଼ାକୁ ନେଇ ଶିକ୍ଷକଙ୍କ ଠାରୁ ଯେତିକି ଦକ୍ଷତା ଆଶା କରାଯାଏ, ଜଣେ ଭଲ ଶିକ୍ଷକ ତାହାଠାରୁ ଅଧିକ ଜାଣିଥାଏ । ଅକ୍ଷରର ବିଜ୍ଞାନ, ଗଭୀର ଜ୍ଞାନ, ବିସ୍ତୃତ ସମ୍ଭାବନା ଏବଂ ନିଜ ବିଷୟର ବର୍ତ୍ତମାନର ସମସ୍ୟା ପ୍ରତି ଆଗ୍ରହ ହେବା ଜଣେ ଶିକ୍ଷକଙ୍କ ପାଇଁ ଜରୁରୀ । କାରଣ ଶିକ୍ଷକଙ୍କ ପାଖରେ ନିଜ ବିଷୟରେ ବିଜ୍ଞାନ ଓ ପାଠପଢ଼ାର ପଦ୍ଧତି ଉପରେ ଏଭଳି ଜ୍ଞାନ ଅଛି ଯାହା ଛାତ୍ରମାନଙ୍କୁ ଆକର୍ଷିତ କରିପାରେ । ଛାତ୍ରମାନେ ସେମାନଙ୍କ ଶିକ୍ଷକଙ୍କୁ ଜଣେ ବୁଦ୍ଧିଆ, ସଚେତନ ଏବଂ ଚିନ୍ତାଶୀଳ, ଜ୍ଞାନକୁ ଭଲ ପାଉଥିବା ବ୍ୟକ୍ତି ହିସାବରେ ଦେଖିବା

ଉଚିତ୍ । ଶିକ୍ଷକଙ୍କ ଜ୍ଞାନ ଯେତିକି ପ୍ରଖର ହେବ, ଦିଗ୍‌ବଳୟ ଏବଂ ସାଧାରଣ ପାଣ୍ଡିତ୍ୟ ବଢ଼ିବ, ସେ ସେତିକି କେବଳ ପିଲାମାନଙ୍କୁ ପାଠ ପଢ଼େଇବାରେ ଦକ୍ଷ ହେବେ ନାହିଁ, ପିଲାମାନଙ୍କୁ ଶିଖିତ ମଧ୍ୟ କରାଇପାରିବେ । ଜଣେ ପ୍ରାଥମିକ ଶ୍ରେଣୀର ଶିକ୍ଷକଙ୍କ ପକ୍ଷେ କେବଳ ସାଧାରଣ ଭାବେ ଭଲ ଶିକ୍ଷା ଦରକାର ତାହା ନୁହେଁ, ନିର୍ଦ୍ଦିଷ୍ଟ ବିଷୟ ବା ଜ୍ଞାନ ଉପରେ ଆଗ୍ରହ ଥିବା ଦରକାର ।

ତୃତୀୟରେ ଜଣେ ଭଲ ଶିକ୍ଷକର ମନସ୍ତତ୍ତ୍ୱ ଏବଂ ପାଠପଢ଼ାର ବିଜ୍ଞାନ ଉପରେ ଦକ୍ଷତା ରହିବା ଦରକାର । ସେ ବୁଝିବା ଦରକାର ଯେ ପାଠପଢ଼ାର ବିଜ୍ଞାନକୁ ନ ଜାଣି ପିଲାମାନଙ୍କ ସହିତ କାମ କରିହେବ ନାହିଁ । ଚତୁର୍ଥରେ ଜଣେ ଭଲ ଶିକ୍ଷକ ସମ୍ପୂର୍ଣ୍ଣ ଭାବରେ ଘରେ ହସ୍ତ ବା ଶାରୀରିକ ଶ୍ରମର କାମରେ ନିୟୋଜିତ ହେବା ଦରକାର । ଗୋଟିଏ ଭଲ ବିଦ୍ୟାଳୟରେ ସବୁ ଶିକ୍ଷକମାନଙ୍କର କିଛି ନା କିଛି ଅଭ୍ୟାସ ରହିଥିବା ଆବଶ୍ୟକ, ଯେଉଁଥିରେ ସେମାନେ ଖୁସୀ ଅନୁଭବ କରିପାରନ୍ତେ ।

ବହୁମୁଖୀ ଦକ୍ଷତା ଥିବା ଲୋକ କେଉଁଠାରୁ ଆସିପାରିବେ ? ଆମମାନଙ୍କ ଭିତରେ ସେଭଳି ଲୋକ ଅଛନ୍ତି ଏବଂ ଆମେ ସେମାନଙ୍କୁ ଖୋଜି ବାହାର କରିବାର ଅଛି । ମୁଁ ସବୁବେଳେ ସ୍ୱତନ୍ତ୍ର ଭାବରେ ଶିକ୍ଷକ ନିଯୁକ୍ତି କରିବାର ଅଧିକାର ପାଇଁ ପ୍ରୟାସ କରୁଥିଲି । କାରଣ ଏହା ନହେଲେ ବିଦ୍ୟାଳୟଟିଏ ଭଲ ଭାବରେ ଚଳେଇବା ଅସମ୍ଭବ ହୋଇପଡ଼େ । (୧୧,୪୦)

ମୁଁ ନିର୍ଦ୍ଦେଶକ ହିସାବରେ ଶିକ୍ଷାର ପ୍ରଶ୍ନଗୁଡ଼ିକ ସବୁବେଳେ ଆଗରେ ରଖି ମୋର କାର୍ଯ୍ୟ ଆରମ୍ଭ କରିଥାଏ, ଯାହା ପ୍ରଶାସନିକ ଦୃଷ୍ଟିରୁ ଦେଖିଲେ ବିରୋଧାଭାଷ ଆସେ । ପ୍ରତ୍ୟେକ ଦିନ ସକାଳର ପାଠପଢ଼ା ଆରମ୍ଭ ହେବା ପୂର୍ବରୁ ଦଶ ପନ୍ଦର ମିନିଟ୍ ପ୍ରଶାସନିକ କଥା ବୁଝିଥାଏ ଏବଂ ବାକି ସମୟ ଶିକ୍ଷା କାମରେ ନିୟୋଜିତ ରୁହେ । ପ୍ରଶାସନିକ କାମ ସମ୍ପର୍କୀତ ସମସ୍ତ କାମ ଯାହା ମୋତେ ବୁଝିବାକୁ ପଡ଼େ, ମୁଁ ଲେଖି ରଖେ । ମୋର ପ୍ରସ୍ତୁତି ପରବର୍ତ୍ତୀ ପ୍ରଶାସନିକ ବ୍ୟବସ୍ଥା ସମ୍ପର୍କରେ କୋଷାଧକ୍ଷ୍ୟଙ୍କ ସହିତ ଆଲୋଚନା ପାଇଁ ମୋର ପ୍ରସ୍ତୁତି ଅବା ପରବର୍ତ୍ତୀ କର୍ମୀ ବୈଠକ ପାଇଁ ହୋଇଥାଏ । ବିଦ୍ୟାଳୟର ପ୍ରଶାସନିକ ସମସ୍ୟାର ଆଲୋଚନାର ବଡ଼ ଭାଗ ଶିକ୍ଷା ସମ୍ପର୍କରେ ହୋଇଥାଏ, ଯେଉଁଥିରେ କୋଷାଧକ୍ଷ୍ୟମାନେ ସବୁବେଳେ କମ୍ ଗୁରୁତ୍ୱ ପାଇଥାଆନ୍ତି । ଶିକ୍ଷା ସମ୍ବନ୍ଧରେ ଆଲୋଚନାଗୁଡ଼ିକ ଶିକ୍ଷକ, ଛାତ୍ରମାନଙ୍କ ମିଳିତ ଭାବରେ ହୋଇଥାଏ । (୧୧,୩୯)

ବିଦ୍ୟାଳୟର ପରିଦର୍ଶକ ହିସାବରେ ଶିକ୍ଷକମାନେ କିପରି ଚିନ୍ତାଶୀଳ ଗବେଷକ ହେବେ ଏବଂ ସେମାନଙ୍କର ଜ୍ଞାନ ପ୍ରତି କିପରି ଶୋଷ ରହିବ, ସେଇଥିପାଇଁ ମୁଁ ସବୁବେଳେ ଚେଷ୍ଟା କରୁଥିଲି । ପୃଥକ୍ ପୃଥକ୍ ଅଧ୍ୟୟନରୁ ବୈଜ୍ଞାନିକ ଅନୁସନ୍ଧିତ୍ସା ଏବଂ ବୈଜ୍ଞାନିକ ସିଦ୍ଧାନ୍ତ ଗୁଡ଼ିକ ପ୍ରକୃତ ସୃଜନଶୀଳତାର ପାଠପଢ଼ା ପାଇଁ ଅପରିହାର୍ଯ୍ୟ । (୧୩,୯)

ନିର୍ଦ୍ଦେଶକ ହିସାବରେ ଯଦି ମୋର କାମକୁ ସବୁ ଶିକ୍ଷକଙ୍କ ନୈତିକ ସମର୍ଥନ ମିଳିନଥାନ୍ତା, ମୁଁ ଗୋଟିଏ ଦିନ ମଧ୍ୟ ଏହି କାମରେ ରହିବା ଉଚିତ୍ ବୋଲି ମଣି ନଥାନ୍ତି । (୧୧,୪୧)

ପାଠପଢ଼ା ବିଷୟରେ ଧାରଣାଗୁଡ଼ିକ ହେଉଛି ଡ଼େଣା , ଯାହା ସାହାଯ୍ୟରେ ଶିକ୍ଷକ ସମୟର ସୃଜନଶୀଳତାକୁ ନେଇ ଉପରେ ଉଡ଼ିପାରିବେ । ଧାରଣାଗୁଡ଼ିକ ସମସ୍ତଙ୍କୁ ପ୍ରେରଣା ଦିଏ ଏବଂ ଏକାଠି ଗବେଷଣା କରିବା ପାଇଁ ଆଗ୍ରହ ଜନ୍ମାଇ ଥାଏ । ଏହା ହେଉଛି ବିଦ୍ୟାଳୟର ସବୁଠାରୁ ଆଗ୍ରହ ଉଦ୍ଦୀପକ କାମ । ( ୧୧,୯୩)

ବିଦ୍ୟାଳୟର ମୁଖ୍ୟ ଏବଂ ଶିକ୍ଷକମାନଙ୍କ ଭିତରେ ବନ୍ଧୁତ୍ୱ, ଖୋଲା ଏବଂ ଆନ୍ତରିକତାର କଥାବାର୍ତ୍ତା ବିଦ୍ୟାଳୟକୁ ଉତ୍ତମ ଭାବରେ ଚଳେଇବା ପାଇଁ ସବୁଠାରୁ ଭଲ ପଦ୍ଧତି । ବୌଦ୍ଧିକ କ୍ରିୟାକଳାପ ମଧ୍ୟରୁ ଶିକ୍ଷା ହେଉଛି ସବୁଠାରୁ ସୂକ୍ଷ୍ମ ଜିନିଷ । ଅବଶ୍ୟ ବାଦ୍ୟଯନ୍ତ୍ରର ପ୍ରଭାବ ସହିତ ଛାତ୍ରମାନଙ୍କ ଉପରେ ଶିକ୍ଷକଙ୍କର ପ୍ରଭାବକୁ ମୁଁ ତୁଳନା କରିବା ଉଚିତ୍ ।

ଟଲଷ୍ଟଏ ଲେଖୁଛନ୍ତି ଯେ ବୌଦ୍ଧିକ କାର୍ଯ୍ୟକୁ ଠିକ୍ ଭାବରେ ପରିଚାଳନା କରିବା ଅର୍ଥାତ୍ ସୂର୍ଯ୍ୟକିରଣକୁ ଧରିବାକୁ ଚେଷ୍ଟା କରିବା । ସୂର୍ଯ୍ୟକିରଣକୁ ଯେଉଁପ୍ରକାରେ ଢ଼ାଙ୍କିବାକୁ ଚେଷ୍ଟା କଲେ ମଧ୍ୟ ସେ ଢାଙ୍କୁଣିର ଉପରେ ପଡ଼ିବ । ଶିକ୍ଷକମାନଙ୍କ ସହିତ ହୋଇଥିବା ମୋର ହଜାର ହଜାର କଥାବାର୍ତ୍ତା ମନେ ପକାଇ ପାରିବି । ତା' ଭିତରୁ କେତେଗୁଡ଼ିଏ ମୋ ହୃଦୟକୁ ଆନନ୍ଦରେ ଭରି ଦେଇଛି ଏବଂ ଅନ୍ୟଗୁଡ଼ିକ ହତୋତ୍ସାହ କରିପକାଇଛି । ମୁଁ ଶିକ୍ଷକମାନଙ୍କର ଗୋଟିଏ ଗୋଟିଏ ଶବ୍ଦକୁ ନେଇ କିମ୍ବା ସେମାନଙ୍କର କ୍ରୋଧ କିମ୍ବା ହସକୁ ନେଇ ବେଳେ ବେଳେ ଥରେ, ଦୁଇଥର କିମ୍ବା ତିନିଘଣ୍ଟା ମଧ୍ୟ ସେମାନଙ୍କ ସହିତ କଥାବାର୍ତ୍ତାରେ କଟେଇଛି । (୧୧,୩୧)

ବିଦ୍ୟାଳୟର ସବୁକଥା ବୁଝୁଥିବା ବ୍ୟକ୍ତି ପାଠପଢ଼ାଉଥିବା ଜଣେ ନିର୍ଦ୍ଦେଶକ କିମ୍ବା ଜଣେ ଶିକ୍ଷକଙ୍କ ଖରାପ ଏବଂ ମୂଲ୍ୟହୀନ ପାଠପଢ଼ା ବିଷୟରେ ବୁଝିପାରେ । ସେ ନିଶ୍ଚିତ ଭାବେ ଜାଣିପାରିବେ ଯେ କେଉଁ ପାଠଟି ସ୍ପଷ୍ଟ ଏବଂ କେଉଁ ପାଠଟି ଅସ୍ପଷ୍ଟ ଭାବରେ ବୁଝାଯାଉଛି । ଏଭଳି ଉପସ୍ଥାପନା ବିଷୟରେ ପାଠପଢ଼ାଉଥିବା ଶିକ୍ଷକ ସହିତ ମିଳିତ ଭାବରେ ଆଲୋଚନା କରିବା ହେଉଛି ବୈଜ୍ଞାନିକ ସିଦ୍ଧାନ୍ତ ଏବଂ ଅନୁସନ୍ଧାନର ପ୍ରଥମ ପାହାଚ । (୧୩,୨)

ପ୍ରତ୍ୟେକ ତାତ୍ତ୍ୱିକ, ଦାର୍ଶନିକ ଓ ସୃଜନଶୀଳ ଭାବରେ ପାଠପଢ଼ାର କାମ ବୈଜ୍ଞାନିକ ଗବେଷଣା ନହେଲେ ସମ୍ଭବପର ହେବନାହିଁ । ତୁମେ ଯଦି ପାଠପଢ଼ାକୁ ଗୋଟିଏ ଆନନ୍ଦର କାମ ହିସାବରେ ଦେଖିବାକୁ ଇଚ୍ଛା କରୁଛ ଏବଂ ପ୍ରତ୍ୟେକ ଦିନର ପାଠପଢ଼ା ବିରକ୍ତିକର ନହେବାପାଇଁ ଚାହୁଁଛ, ତାହା ହେଲେ ନିରସ ଅଙ୍ଗୀକାରବଦ୍ଧତାକୁ ତୁଚ୍ଛ ଆନୁଷ୍ଠାନିକ ପ୍ରକ୍ରିୟା ହିସାବରେ ଦେଖ ଏବଂ ତା'ପରେ ପ୍ରତ୍ୟେକ ଶିକ୍ଷକଙ୍କୁ ବିଜ୍ଞାନ ଶିକ୍ଷାର ଗବେଷଣା ବାଟକୁ ନେଇଆସିବ । (୧୩,୨)

ଶିକ୍ଷକଙ୍କ କାମ ଏବଂ ବୈଜ୍ଞାନିକ ଗବେଷଣାର ଘନିଷ୍ଠ ସମ୍ପର୍କ ପ୍ରଥମେ ତଥ୍ୟ ବିଶ୍ଳେଷଣରୁ ଆରମ୍ଭ ହୋଇଥାଏ ଏବଂ ଉଭୟେ ଆଶା କରିଥିବା ଫଳାଫଳରେ ସେମାନେ ସମ୍ମିଳିତ ହୁଅନ୍ତି । ଯେଉଁ ଶିକ୍ଷକ ତଥ୍ୟକୁ ଏବଂ ବିଭିନ୍ନ ତଥ୍ୟ ଭିତରେ ଥିବା କାରଣଗୁଡ଼ିକୁ ଗଭୀର ଭାବରେ ଚିନ୍ତା କରିପାରୁ ନାହାଁନ୍ତି, କି ଚିନ୍ତା କରିବାପାଇଁ ଚାହୁଁନାହାଁନ୍ତି, ସେମାନଙ୍କ କାମର ଫଳ ଛିନ୍‌ଭିନ୍ ହୋଇଥାଏ । ପ୍ରତୀକ୍ଷା କରିବାର କଳା ନଷ୍ଟ ହୋଇଯାଏ ଏବଂ ଏହା ଛାତ୍ରମାନଙ୍କ ସହିତ ନିଜ ପାଇଁ ମଧ୍ୟ ଦଣ୍ଡ ହୋଇଥାଏ ।। (୧୩,୨)

ଶିକ୍ଷକଟିଏ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଭଲ ପାଠ ପ୍ରସ୍ତୁତ କରୁଛି । ଏହା ହେଉଛି ଆମ ପେଶାର ବୌଦ୍ଧିକ ଏବଂ ଦାର୍ଶନିକ ମୂଳଦୁଆ ଏବଂ ଆମ କାମର ଦକ୍ଷତାର ନିଦର୍ଶନ । ପିଲାମାନଙ୍କୁ ଜ୍ଞାନ ଆଲୋକର ବିଚ୍ଛୁରଣଟିଏ ଦେବା ପାଇଁ ଶିକ୍ଷକଙ୍କୁ ଆଲୋକର ସମୁଦ୍ରକୁ ଧାରଣା କରିବାକୁ ହୁଏ । (୧୩,୨)

ଜଣେ ବିଦ୍ୱାନ ଅନୁଭବୀ ଏବଂ ଅନୁଭୂତି ସମ୍ପନ୍ନ ଶିକ୍ଷକ ତା' ବସିବା ସ୍ଥାନରେ ବେଶୀ ସମୟ ବସି ରହେନାହିଁ କାରଣ ସେ ପାଠ ପଢ଼େଇବା ପାଇଁ ପ୍ରସ୍ତୁତ ହୋଇଥାଏ । ସେ ତା'ର ପ୍ରତ୍ୟେକ ପାଠପାଇଁ ସବିଶେଷ ବର୍ଣ୍ଣନା ଥିବା ଯୋଜନା ପ୍ରସ୍ତୁତ କରେନାହିଁ । ସେହି ପାଠପାଇଁ ସେ ସବିଶେଷ ତଥ୍ୟପୂର୍ଣ୍ଣ ଜିନିଷ ପ୍ରାୟ କମ୍ ସମୟରେ ଯୋଡ଼ି ଥାଏ । ପାଠ ପଢ଼ାଇବାର ଦକ୍ଷତା ବଢ଼େଇବା ପାଇଁ ସେ ତା'ର

ସାରା ଜୀବନ ନୂତନ ଧାରଣା ଏବଂ ନୂତନ ଜ୍ଞାନ ଅନ୍ୱେଷଣ କରୁଥାଏ । (୧୩,୨)

ଶ୍ରେଣୀ ଗୃହରେ ପଢ଼ା ହେବାକୁ ଥିବା ପାଠର ଯୋଜନା କରିବାର ଦକ୍ଷତା ବିନା ଶିକ୍ଷକଙ୍କ କାମ ସମ୍ଭବପର ହୋଇପାରେନାହିଁ । କିନ୍ତୁ ଶ୍ରେଣୀଗୃହରେ କିପରି ଭଲ ପାଠପଢ଼ା ହୋଇପାରିବ, କେବଳ ଶିକ୍ଷକଙ୍କ ମୁଣ୍ଡରେ ହିଁ ପଶିଥାଏ । ଭଲ ପାଠ ପ୍ରସ୍ତୁତ କରିବା, ପ୍ରକୃତରେ ସୃଜନଶୀଳ କାମ କରିବା କେବଳ ପାଠପଢ଼ା ପ୍ରକ୍ରିୟାରେ ହିଁ ହୋଇଥାଏ । । (୧୩,୭)

ସତକଥା କହିବାକୁ ଗଲେ, ଜଣେ ଭଲ ଶିକ୍ଷକଙ୍କୁ ପାଠ କିପରି ବିସ୍ତୃତ ଭାବରେ ପ୍ରସ୍ତୁତ ହେବ ଏବଂ ନୂଆ ପଦ୍ଧତି କିପରି ବାହାରିବ, ତାଙ୍କୁ ଜଣାନଥାଏ । ଏହାର ଅର୍ଥ ସେ ଅନ୍ଧାରରେ ବାଡ଼ି ବୁଲେଇଥାନ୍ତି ସେମିତି ନୁହେଁ, ତାହାର କାରଣ ଭଲ ପାଠ ପ୍ରସ୍ତୁତମାନେ ତାକୁ ଭଲ ଭାବରେ ଜଣାଯାଏ । (୧୩,୭)

ଯେତେବେଳେ ଶିକ୍ଷକଙ୍କର ଜ୍ଞାନର ପରିସୀମା, ବିଦ୍ୟାଳୟର ପାଠ୍ୟକ୍ରମଠାରୁ ଅନେକ ଅଧିକ ହୋଇଥାଏ, ଯେତେବେଳେ ତାଙ୍କର ପାଠ୍ୟଖସଡ଼ା ବିଷୟବସ୍ତୁ ମୁଖ୍ୟ ଆକର୍ଷଣ ହୋଇନଥାଏ; କିନ୍ତୁ କହିବାକୁ ଗଲେ ଏହା ତାଙ୍କ ମାନସିକ କ୍ରିୟା କଳାପର ଆନୁସଙ୍ଗିକ କାର୍ଯ୍ୟ ହୋଇଥାଏ; ତା'ପରେ ଯାଇ ଜଣେ ପୋଖତ ଶିକ୍ଷକ, କଳାକାର ଏବଂ କବି ହୋଇପାରିବ । ପାଠ ପଢ଼ା ପେଷାର ଜଣେ ପୋଖତ ଶିକ୍ଷକ ପାଠପଢ଼ା ବିଜ୍ଞାନର ପ୍ରାରମ୍ଭିକ କାମକୁ ଏତେ ଭଲ ଭାବରେ ଜାଣିଥାଏ ଯେ, ପାଠ ପଢ଼େଇଲା ବେଳେ, ପାଠ ବହିଗୁଡ଼ିକୁ ଅନୁଧ୍ୟାନ କଲାବେଳେ ତାଙ୍କର ଧ୍ୟାନ ପଢ଼ାହେଉଥିବା ପାଠର ବିଷୟବସ୍ତୁ ଉପରେ ନଥାଏ ସତ, କିନ୍ତୁ ଛାତ୍ରମାନଙ୍କର ଚିନ୍ତା କରିବାର ପ୍ରକ୍ରିୟା ଏବଂ ମାନସିକ କାର୍ଯ୍ୟରେ ସେମାନେ ସାମନା କରୁଥିବା ସମସ୍ୟାଗୁଡ଼ିକ ପ୍ରତି ଧ୍ୟାନ ଥାଏ ।

ଆମେ କିପରି ନିଶ୍ଚିତ କରାଇ ପାରିବା ଯେ ପ୍ରତ୍ୟେକ ଶିକ୍ଷକ କେବଳ ଉପସ୍ଥାପନା କରୁଥିବା ପ୍ରାଥମିକ ପାଠକୁ ଜାଣିବେ ନାହିଁ, ତା' ସହିତ ଏହାର ପୃଷ୍ଠଭୂମି ଏବଂ ବିଷୟବସ୍ତୁର ଉତ୍ସଗୁଡ଼ିକ ଜାଣିବେ ?

ପାଠ ପଢ଼ିବାକୁ ଜାରି ରଖିବା । ପାଠପଢ଼ା ପ୍ରୋରଚନା ଦ୍ୱାରା ହୁଏ ନାହିଁ କିମ୍ବା ନିର୍ଦ୍ଦେଶକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହୁଏ ନାହିଁ । କିନ୍ତୁ ଏହାର ଏକ ବୌଦ୍ଧିକ ଆବଶ୍ୟକତା ରହିଛି, ଏହା ମନ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଖାଦ୍ୟ । ପଢ଼ିବା ପ୍ରତି ଆଦର, ବହି ଖେଳେଇବା, ବହିଗୁଡ଼ିକୁ ସବୁବେଳେ ପଢ଼ିବାର ଦକ୍ଷତା ଏବଂ

ଅନୁଧ୍ୟାନ ଜାରି ରଖିବା, କାମଗୁଡ଼ିକ ପ୍ରତି ଶିକ୍ଷକଙ୍କୁ କିପରି ପ୍ରକୃତିଗତ କରାଯାଇପାରିବ । ଯେପରିକି ପାଠପଢ଼ା ଏଠାରେ ଅବଶ୍ୟ ସେତିକି ସ୍ୱତନ୍ତ୍ର କିଛି ଶିକ୍ଷାଗତ ପଦ୍ଧତି ନାହିଁ । ସାମୂହିକ ଭାବରେ ବିଦ୍ୟାଳୟର ଶିକ୍ଷକମାନଙ୍କ ଦ୍ୱାରା ହୋଇଥିବା ବୌଦ୍ଧିକ ବାତାବରଣରେ ପାଠ ପଢ଼ିବାର ଆବଶ୍ୟକତା ଆସେ । (୧୩,୧୦)

ସର୍ବପ୍ରଥମେ ବ୍ୟକ୍ତିଗତ ଭାବରେ ପଢ଼ିବା ହେଉଛି କର୍ମୀ ମାନଙ୍କର ବୌଦ୍ଧିକ ଉନ୍ନତିର ଉତ୍ସ । ଜଣେ ଭଲ ଶିକ୍ଷକ ବହିକୁ ସବୁବେଳେ ଆଦର କରେ । (୧୧,୪୬)

ଆମ ବିଦ୍ୟାଳୟ ପାଠାଗାରରେ ୧୮,୦୦୦ ବହି ରହିଛି ଏବଂ ୪୯,୦୦୦ ବହି ଶିକ୍ଷକଙ୍କ ବ୍ୟକ୍ତିଗତ ପାଠାଗାରରେ ରହିଛି । ଉଦାହରଣ ସ୍ୱରୂପ ସାହିତ୍ୟ ଶିକ୍ଷକଙ୍କର ୧୦୦୦ ଖଣ୍ଡ ବହି ଅଛି । ସେହିପରି ପଦାର୍ଥ ବିଜ୍ଞାନ ଶିକ୍ଷକଙ୍କର ୧୨୦୦ ବହି ଅଛି । ଆମ ଘରେ ମୁଁ ଏବଂ ମୋର ସ୍ତ୍ରୀ ମିଶି ୧୯୦୦ ବହି (ଉପନ୍ୟାସ, ଇତିହାସ, ଶିକ୍ଷା, କଳାର ତତ୍ତ୍ୱ ଇତ୍ୟାଦି) ବିଶିଷ୍ଟ ଏକ ପାଠାଗାର ଆମେ ପରିଚାଳନା କରୁଛୁ । (୧୧,୪୬)

ବିଦ୍ୟାଳୟ ପରିବେଶ ଏବଂ ଏଠାରେ ହେଉଥିବା ପାଠପଢ଼ାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ବହିକୁ ଭଲ ପାଇବା ଏବଂ ଏହାକୁ ସମ୍ମାନ ଦେବା । ଯଦି ବିଦ୍ୟାଳୟର ସବୁକିଛି ଅଛି, କିନ୍ତୁ ଛାତ୍ରମାନଙ୍କର ସାମଗ୍ରିକ ବିକାଶ ଏବଂ ସେମାନଙ୍କର ବୌଦ୍ଧିକ ଜୀବନକୁ ସମୃଦ୍ଧ କରିବାରେ ସାହାଯ୍ୟ କରୁଥିବା ପୁସ୍ତକ ଯୋଗାଣ କମ୍ ହୋଇଛି ଏବଂ ପିଲାମାନେ ବହିକୁ ଭଲ ପାଇବା ବଦଳରେ ଉଦାସୀନ ମନୋଭାବ ପୋଷଣ କରୁଛନ୍ତି , ତାହାହେଲେ ଏହାକୁ ବିଦ୍ୟାଳୟର ଯୋଗ୍ୟତା ଦିଆଯାଇପାରିବ ନାହିଁ ।

ବିଦ୍ୟାଳୟଟିରେ ଅନେକ ଜିନିଷ କମ୍ ପରିମାଣରେ ଯୋଗାଇ ଦିଆଯାଇଛି, କିନ୍ତୁ ଏହା ଅନେକ ଦୃଷ୍ଟିରୁ ଭଲ କୁହାଯାଇପାରିବ ଯଦି ଏଥିରେ ବାହାର ଜଗତକୁ ଜାଣିବା ପାଇଁ ଅନେକ ବହି ଅଛି । ତଥାପି ଏହା ଏକ ପ୍ରକୃତ ବିଦ୍ୟାଳୟ ହୋଇପାରିବ । (୧୧,୪୬)

ତୁମ୍ଭେମାନେ ବାରମ୍ବାର ଏହିଭଳି କଥା ଶୁଣୁଥିବ: '' ଶିକ୍ଷକ ନିହାତି ଭାବେ ଭଲ ପାଠ ପ୍ରସ୍ତୁତ କରୁଥିବେ, ତାଙ୍କର ବ୍ୟକ୍ତିଗତ ଏବଂ ପାରିବାରିକ ଅଶାନ୍ତି ଶ୍ରେଣୀଗୃହ ବାହାରେ ଛାଡ଼ି ଆସୁଥିବେ ।'' ପ୍ରତ୍ୟେକ ପିଲାର ହୃଦୟକୁ ଚିହ୍ନିବାର

ବାଟ ପାଇ ପାରୁଥିବେ । ଅନେକ ସମୟରେ ଆମେ ଅନେକ ଲୋକଙ୍କର ଶିକ୍ଷକଙ୍କ ପ୍ରତି ଥିବା କର୍ତ୍ତବ୍ୟବୋଧତାକୁ ଦେଖିପାରିନଥାଉ । ଏଠାରେ ଅନେକ ଲୋକ ଅର୍ଥାତ୍ ବିଦ୍ୟାଳୟର ମୁଖ୍ୟ, ପ୍ରତ୍ୟେକ ବିଦ୍ୟାଳୟ ସଙ୍ଗଠନ, ଜନସାଧାରଣ । ପ୍ରତିଷ୍ଠିତ ସମୃଦ୍ଧ ସାଂସ୍କୃତିକ ଜୀବନର ପରିବେଶ ସୃଷ୍ଟି କରିବା ପାଇଁ କର୍ତ୍ତବ୍ୟ ପରାୟଣ ହୋଇଥାଉ । ଏଭଳି ପରିବେଶ ସୃଷ୍ଟି ହେବା ଦରକାର ଯେପରି ଶିକ୍ଷକଙ୍କର ଶକ୍ତି ଏବଂ ମୂଲ୍ୟବାନ ସମୟ ଅଯଥାରେ ନଷ୍ଟ ନହୁଏ । ଶିକ୍ଷକଙ୍କ ପାଇଁ ଏହା ହେଉଛି ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ । ଯେତେସମ୍ଭବ ଶିକ୍ଷକମାନେ ସବୁପ୍ରକାର ଲେଖାପଢ଼ା ଏବଂ ପ୍ରଶାସନିକ କାମରୁ ମୁକ୍ତ ରହିବା ଦରକାର । (୧୩,୨)

ଆମର ହୃଦ୍‌ବୋଧ ହୋଇଛି ଶିକ୍ଷକଙ୍କର ଯେତିକି କମ୍ ଅବସର ସମୟ ଥାଏ, ସେ ସେତିକି ସମସ୍ତ ମିଟିଂ, ବିବରଣୀ, ଏବଂ ଯୋଜନା ପ୍ରସ୍ତୁତ କାମରେ ଲାଗି ରୁହନ୍ତା ଏବଂ ସେତିକି ତାଙ୍କର ବୌଦ୍ଧିକ ଓ ମାନସିକ ଜୀବନର ଅବନତି ଆସେ । ଏପରି ଅବସ୍ଥା ଯଦି ଶିକ୍ଷକଙ୍କ ଜୀବନରେ ଶୀଘ୍ର ଆସେ, ତାଙ୍କ ପାଖରେ ଛାତ୍ରମାନଙ୍କୁ କିଛି ଦେବାପାଇଁ ଜ୍ଞାନ ରୁହେ ନାହିଁ । ଆମର କର୍ମୀମାନେ ତଳେ ଲିଖିତ ଅଭ୍ୟାସକୁ ପାଳନ କରନ୍ତି । ଶିକ୍ଷକଙ୍କୁ ବିବରଣୀ ଲେଖା ବା ବୁଲେଟିନ୍‌ରେ ସମ୍ପୃକ୍ତ ହେବାପାଇଁ କୁହାଯାଇ ନଥାଏ । ଶିକ୍ଷାଗତ ଯୋଜନାକୁ ବାଦ୍ ଦେଇ ତାଙ୍କୁ ତାଙ୍କର ଦୈନନ୍ଦିନ ପାଠ କାମ ଏବଂ ତାଙ୍କର ପ୍ରତ୍ୟେକ ପାଠ ପାଇଁ କୌଣସି ଯୋଜନା କରିବା ପାଇଁ କୁହାଯାଇନଥାଏ, ତାହା ଶିକ୍ଷକଙ୍କର ଅଭ୍ୟାସରେ ପଡ଼ିଯାଇଥାଏ । ଯଦି ଶିକ୍ଷକ ଏହାକୁ ଦରକାରି ଭାବନ୍ତି, ଏହି ଅଭ୍ୟାସ ତାଙ୍କର ବ୍ୟକ୍ତିଗତ ସୃଜନଶୀଳ କୌଶଳର ଏକ ଅଂଶ ହୋଇ ରହିବ । ବିଦ୍ୟାଳୟରେ ସପ୍ତାହକୁ ଦିନେ କେବଳ ତାଙ୍କୁ ସେମିନାର୍ ଏବଂ ପାଠଚକ୍ର ପରିଚାଳନା କାମରେ ଅତିରିକ୍ତ ଭାବରେ କାମ କରିବାକୁ ପଡ଼େ । ମୁଁ ଆଉଥରେ କହି ରଖୁଛି ଯେ ଶିକ୍ଷକଙ୍କ ବୌଦ୍ଧିକ ବିକାଶ ପାଇଁ ସମୟ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ଉତ୍ସ । (୧୩,୧୦)

ଶୀତ ଦିନର ସବୁଛୁଟି ଦିନମାନଙ୍କରେ ଶିକ୍ଷକମାନଙ୍କୁ ସମୟ ଦେବାପାଇଁ କୌଣସି ମତେ ଦାବୀ କରାଯାଇ ପାରିବ ନାହିଁ । ସେମାନଙ୍କ ଇଚ୍ଛା ଅନୁସାରେ ସେମାନେ ସମୟ କଟାଇପାରିବେ । ବିଦ୍ୟାଳୟରେ ଛାତ୍ରମାନଙ୍କ ପାଇଁ ସବୁ ଜିନିଷ ଆୟୋଜନ କରାଯାଇଥାଏ । ଶୀତଦିନର ଛୁଟିଦିନ ଗୁଡ଼ିକ ବାହାର ଆମୋଦ ପ୍ରମୋଦ ପାଇଁ ହୋଇଥାଏ ଏବଂ ପିଲାମାନେ ନିଜେ ସେଗୁଡ଼ିକ ପରିଚାଳନା

କରିଥାଆନ୍ତି । ଆମେ ମେ ଆଉ ଜୁନ୍ ମାସରେ ସେମିନାର୍ ଏବଂ କର୍ମଶାଳା ଆୟୋଜନ କରିନଥାଉ । ପ୍ରାୟ ସମୟରେ ଅନେକ ଶିକ୍ଷକ ରବିବାରକୁ ଛାଡ଼ି ଆଉଗୋଟିଏ ଅବସର ଦିନ କଟାଇ ଥାଆନ୍ତି । ଏହି ସବୁ ଜିନିଷ ଶିକ୍ଷକଙ୍କୁ କିଛି ମୁଖ୍ୟ ସମୟ ପାଇବାରେ ସାହାଯ୍ୟ କରିଥାଏ ।

ମୁଁ ଏ ବିଷୟରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛି ନିମ୍ନଲିଖିତ କାରଣ ଯୋଗୁଁ : ମୁଁ ଦୃଢ଼ ଭାବରେ ବୁଝିଛି ଯେ ଜଣେ ଶିକ୍ଷକ ତାଙ୍କ ଜୀବନର ୨୦ ରୁ ୩୦ ବର୍ଷ ବିଦ୍ୟାଳୟରେ ରହିବା ପରେ ଯେହେତୁ ତାଙ୍କର ଶାରୀରିକ ଏବଂ ମାନସିକ ଶକ୍ତି କ୍ଷୀଣ ହୋଇଛି, ଜୀବନ ଶେଷ ବୋଲି କୌଣସି କାରଣରୁ ଅନୁଭବ କରିବା କଥା ନୁହେଁ । ପାଠପଢ଼େଇବା କାମର ସମସ୍ୟା ସହିତ ସମ୍ପର୍କିତ ଏହା ବୋଧହୁଏ ଗୁରୁତ୍ୱର ପ୍ରଶ୍ନ, ଯାହା ସାଧାରଣ ଭାବରେ ପାଠ ପଢୁଥିବା କର୍ମୀମାନଙ୍କ ମଧ୍ୟରେ ଘଟିଥାଏ । ୨୫ କିମ୍ବା ୩୦ ବର୍ଷର ଅନୁଭୂତି ଥିବା ଶିକ୍ଷକ ଖୁସୀ ଏବଂ ଅକ୍ଲାନ୍ତ ଅନୁଭବ କରିବା କଥା । ଛାତ୍ରମାନଙ୍କ ସହିତ ଚାଲି ଚାଲି ବାହାରକୁ ଯିବାର ସମ୍ଭାବନା କିମ୍ବା ବାହାରେ ସେମାନଙ୍କ ସହିତ ରାତିଟିଏ କଟାଇବା, ଛଣ ଛପର ଘରେ ଶୋଇବା, ଆଦି କାମଗୁଡ଼ିକ ତାଙ୍କପାଇଁ ଭୟର କଥା ନହୋଇ ଆନନ୍ଦଦାୟକ ହେବା ଉଚିତ୍ । (୧୩,୨)

ଆମେ ଛାତ୍ରମାନଙ୍କୁ ଛୋଟ ପିଲା ମାନଙ୍କ ମା'ମାନଙ୍କ ସହିତ କିମ୍ବା ବିଲରେ କାମ କରୁଥିବା ମା'ମାନଙ୍କ ସହିତ ଛାଡୁ ନଥିଲୁ । ସେହି ମହିଳାମାନଙ୍କୁ ଏହା ବହୁତ ଭାବରେ ସାହାଯ୍ୟ କରିଥାଏ । ଏହା ମଧ୍ୟ ମନେ ରଖିବା ଉଚିତ୍ ଯେ ପିଲାମାନଙ୍କ ଅଭ୍ୟାସ ଖାତାଗୁଡ଼ିକ ଠିକ୍ କରିବା ଶିକ୍ଷକମାନଙ୍କ ପାଇଁ କଷ୍ଟଦାୟକ ହୋଇଥାଏ । ଆମର ସେହି କାମପାଇଁ ନିଜର ସ୍ୱତନ୍ତ୍ର ବ୍ୟବସ୍ଥା ରହିଛି । ତଳ ଶ୍ରେଣୀ ମାନଙ୍କରେ ଅନେକ କାମ (ଖାତା ଦେଖିବା କାମ) ପିଲାମାନେ ନିଜେ ନିଜ ଭିତରେ କରିଦିଅନ୍ତି । ସେମାନେ ସେମାନଙ୍କର ଅଭ୍ୟାସ ଖାତାକୁ ତାଙ୍କ ଭିତରେ ଆଦାନ ପ୍ରଦାନ କରନ୍ତି ଏବଂ ଜଣେ ଅନ୍ୟଜଣଙ୍କ ଖାତାରୁ ଭୁଲ୍‌ଗୁଡ଼ିକ ଠିକ୍ କରିଦିଅନ୍ତି । ତା'ପରେ ଶିକ୍ଷକ ସବୁ ଖାତାଗୁଡ଼ିକ ଦେଖନ୍ତି ନାହିଁ । କିନ୍ତୁ ତା' ଭିତରୁ କେତେଗୁଡ଼ିଏ ଖାତା ଅନ୍ଦାଜ କରି ଦେଖନ୍ତି । ସମାନ ପ୍ରକାର ବ୍ୟବସ୍ଥା ସବୁ ଶ୍ରେଣୀରେ ପ୍ରଚଳନ ହୁଏ । ଉପର ଶ୍ରେଣୀରେ ଛାତ୍ରମାନଙ୍କର ଅନେକ ଫର୍ଦ୍ଦ ଲେଖାଥିବା ପ୍ରବନ୍ଧଗୁଡ଼ିକୁ ଆମେ ବିରୋଧ କରୁ । ଏଭଳି କାମଗୁଡ଼ିକ ଅଦରକାରୀ ହୋଇଥାଏ । ପ୍ରବନ୍ଧଗୁଡ଼ିକର ବିଷୟବସ୍ତୁ ଏପରି ଭାବରେ ବ୍ରଛା ଯାଇଥାଏ ଯେ ସେଗୁଡ଼ିକ ଦୁଇରୁ ତିନି ପୃଷ୍ଠାରୁ ଅଧିକ ହୋଇ

ନଥାଏ । ଛାତ୍ରମାନଙ୍କୁ ସେମାନଙ୍କ ନିଜ ଧାରଣାଗୁଡ଼ିକ କେବଳ ଶିକ୍ଷକମାନଙ୍କୁ ଲେଖି ଦେଖେଇବା ପାଇଁ କୁହାଯାଇଥାଏ । ଉପର ଶ୍ରେଣୀର ଗଣିତ ଶ୍ରେଣୀରେ ପିଲାମାନଙ୍କ ନିଜ ନିଜ ମଧ୍ୟରେ ଖାତା ଦେଖାଦେଖି ବେଶୀ ପରିମାଣରେ ହୋଇଥାଏ । (୧୩,୨)

*ଶିକ୍ଷକଙ୍କ ଅବସର ସମୟ ଯାହା ଶିକ୍ଷକଙ୍କ ସୃଜନଶୀଳ ପାଠପଢ଼ାକୁ ସମୃଦ୍ଧ କରିବାରେ ଉତ୍ସ ହୋଇଥାଏ । (୧୩,୨)

ଗ୍ରାମ ପରିସ୍ଥିତିରେ ବାଦ୍ୟ ଯନ୍ତ୍ରର ବିସ୍ତୃତ ଅନୁଭୂତି ପିଲାମାନଙ୍କୁ ଦେବା କଷ୍ଟକର । ଆମେ ସେହି ସ୍ଥଳରେ ବୌଦ୍ଧିକ ଓ ସାଂସ୍କୃତିକ ସମୃଦ୍ଧିକୁ ଅବହେଳା କରିନଥାଉ । ଖରାଦିନେ ଅନେକ ଶିକ୍ଷକ ମସ୍କୋ ଓ ଲେଲିନ୍ ଗ୍ରାମ ଭ୍ରମଣ କରିଥାଆନ୍ତି । ଏହି ଅବସରରେ ସେମାନେ ଭଲ ଅପେରା, ବାଦ୍ୟଯନ୍ତ୍ରର ଧ୍ୱନି ଶୁଣିବାକୁ ପାଇଥାଆନ୍ତି । ଯାହାହେଉନା କାହିଁକି ଆମର ବାଦ୍ୟଯନ୍ତ୍ରର ଜଗତକୁ ପ୍ରବେଶ କରିବାକୁ ଟେଲିଭିଜନ୍ ଝରକା ହିସାବରେ କାମ କରିଥାଏ । (୧୩,୨)

ବିଦ୍ୟାଳୟକୁ ନୂଆ ଶିକ୍ଷକ ଆସିଲେ ବିଦ୍ୟାଳୟର ଶ୍ରମିକ ସଂଗଠନ ଏବଂ ସମସ୍ତ ଶିକ୍ଷକ ସ୍ୱାଗତ କରିଥାଆନ୍ତି । ଗାଁ'ର ଲୋକମାନେ ବାହାରୁ ଆସିଥିବା ସବୁ ଶିକ୍ଷକକୁ ବିଦ୍ୟାଳୟ ପାଖରେ ଘର ଯୋଗାଇ ଦେଇଥାଆନ୍ତି । ବିଦ୍ୟାଳୟ ସେମାନଙ୍କର ଘରଭଡ଼ା ଅନେକ ମାସପାଇଁ ଆଗୁଆ ଦେଇଥାଏ, ଯାହାଦ୍ୱାରା ନୂତନ ଶିକ୍ଷକଙ୍କୁ ସେଥିପାଇଁ ବ୍ୟସ୍ତ ହେବାକୁ ପଡ଼େନାହିଁ । ଖରାଛୁଟିରେ ଶିକ୍ଷକମାନେ ଆସିବା ପୂର୍ବରୁ ଭଡ଼ାଘର ମରାମତି କରାଯାଇଥାଏ । ସବୁ କୋଠରୀ ଏବଂ ବଗିଚାକୁ ଠିକ୍ ଭାବରେ ସଜେଇ ରଖାଯାଇଥାଏ ।

ନୂଆ କରି ଆସିଥିବା ଶିକ୍ଷକଙ୍କୁ ସେ ପୂରା ସମୟ ପ୍ରସ୍ତୁତ ହେବା ପର୍ଯ୍ୟନ୍ତ ନୂଆ ଆସବାବପତ୍ର ଯୋଗାଇ ଦିଆଯାଏ ଏବଂ ଦରକାର ପଡ଼ିଲା ରୋଷେଇ ସାମଗ୍ରୀ ମଧ୍ୟ ଯୋଗାଇ ଦିଆଯାଇଥାଏ । ବିଶେଷ କରି ଯୁବ ଶିକ୍ଷକମାନଙ୍କ ପାଇଁ ବିଦ୍ୟାଳୟ ଏପ୍ରକାର ସମସ୍ତ ଜିନିଷ ରଖିଥାଏ । ଶୀଘ୍ର ହେଉ କିମ୍ବା ଡ଼େରି ହେଉ ଯୁବ ଶିକ୍ଷକ ତା' ନିଜର ଜିନିଷ କିଣିଲେ ବିଦ୍ୟାଳୟ ଉପକରଣ ଫେରାଇ ନିଆଯାଇଥାଏ ।

ଯୁବଶିକ୍ଷକମାନଙ୍କ ଉପସ୍ଥିତିକୁ ଏଭଳି ଭାବରେ ପ୍ରସ୍ତୁତ କରାଯାଇଥାଏ : ସେ ଯେଉଁ ବିଷୟରେ ପଢ଼ାଇବେ , ସେ ବିଷୟରେ ଗୋଟିଏ ସେଟ୍ ପାଠ ବହି,

କିଛି ଅନ୍ୟାନ୍ୟ ବହି ରଖାଯାଇଥାଏ । ତାଙ୍କ ନାମରେ ଖବରକାଗଜ ଗୋଟିଏ ବରାଦ ଦିଆଯାଇଥାଏ । ଏସବୁ ଜିନିଷଗୁଡ଼ିକ ନୂଆ ଘରରେ ପ୍ରସ୍ତୁତ ହୋଇଥିବାର ଦେଖିପାରିବେ । ଏଭଳି ପ୍ରସ୍ତୁତ କରିବା ଗୋଟିଏ କଷ୍ଟକର କାମ ନୁହେଁ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯିଏ ଏସବୁ ଦେଖୁଛି ତା'ଙ୍କ ତରଫରୁ ଆଗ୍ରହ ଆସିବାର କଥା ଏବଂ ଶିକ୍ଷକମାନେ, ବିଦ୍ୟାଳୟର ପିଲାମାନେ ଓ ଆଞ୍ଚଳିକ ଲୋକମାନେ ନୂତନ ଶିକ୍ଷକଙ୍କୁ ଏକାଠି ହୋଇ ସ୍ୱାଗତ କରିବା ଉଚିତ୍ । (୨,୩୨)

ବିଦ୍ୟାଳୟର କର୍ମଚାରୀମାନେ ଭୁଲନ୍ତି ନାହିଁ ଯେ ସବୁ ଶିକ୍ଷକଙ୍କ ପିଲାମାନେ ସେ ବିଦ୍ୟାଳୟରେ ପଢ଼ନ୍ତି । ସେ ପିଲାଗୁଡ଼ିକ ଯେଭଳି ପଢ଼ନ୍ତି ଏବଂ ବ୍ୟବହାର କରନ୍ତି, ଶିକ୍ଷକ ଓ କର୍ମଚାରୀମାନଙ୍କର କେତେ ସମ୍ମାନ ରହିବ ତା' ଉପରେ ନିର୍ଭର କରେ । କର୍ମଚାରୀମାନେ କଷ୍ଟ ସ୍ୱୀକାର କରି ଚେଷ୍ଟା କରନ୍ତି ଯେପରିକି ଶିକ୍ଷକମାନଙ୍କର ପିଲାଗୁଡ଼ିକର ପାଠରେ ଅଗ୍ରଗତି ସନ୍ତୋଷଜନକ ହୋଇପାରିବ ଏବଂ ସେମାନଙ୍କର ବ୍ୟବହାରରେ କୌଣସି ତ୍ରୁଟି ରହିବ ନାହିଁ । (୨,୩୭)

ଅନେକ ଶିକ୍ଷକ ଅଛନ୍ତି, ଯାହାଙ୍କ ଭିତରେ ସବୁ ଉତ୍ସାହ ମରି ଯାଇଥାଏ । ସେମାନେ ଗୋଟିଏ ଜାଗାରେ ରହି ଦିନ ଗଣୁଥାଆନ୍ତି । କାରଣ ନିଜର ସାମର୍ଥ୍ୟ ଉପରେ ତାଙ୍କର ଆସ୍ଥା ତୁଟିଯାଇଥାଏ । ତାଙ୍କ ପାଇଁ କର୍ତ୍ତବ୍ୟ ସମ୍ପାଦନ ଗୋଟିଏ ବୋଝ ଭଳି ଲାଗୁଥାଏ । ଏଭଳି ଶିକ୍ଷକମାନେ ଛାତ୍ରମାନଙ୍କର କାମ ଏବଂ ଜୀବନରେ ସମ୍ପୃକ୍ତ ହୋଇ ପଡ଼ିଲେ ତାଙ୍କ ଭିତରେ ନିରୁତ୍ସାହବୋଧ ଏବଂ ଉଦାସୀନତା ଦୂର ହୋଇଯାଆନ୍ତା । ସେମାନେ ନିଜର ସାମର୍ଥ୍ୟ ଉପରେ ବିଶ୍ୱାସ ଫେରି ପାଆନ୍ତେ ଓ ପାଠ ପଢ଼େଇବାର ପୂର୍ବ ଆନନ୍ଦ ଉପଲବ୍ଧ କରିପାରନ୍ତେ । (୨,୭୧)

ଗୋଟିଏ ବିଦ୍ୟାଳୟରେ ମୁଖ୍ୟ ହେବା ସର୍ବୋପରି ଏକ ଶିକ୍ଷାଗତ ଦାୟିତ୍ୱ ଏବଂ ସର୍ବଶେଷରେ ଏକ ପ୍ରଶାସନିକ ଦାୟିତ୍ୱ ।

## ତୃତୀୟ ଅଧ୍ୟାୟ

# ଶ୍ରମ

**ଶ୍ରମକୁ ଭଲ ପାଇବା, ଆମର ଚାରିତ୍ରିକ ବିକାଶ ଏବଂ ବୌଦ୍ଧିକ ସାମର୍ଥ୍ୟବୃଦ୍ଧି ନିମନ୍ତେ ତାହା ଅତ୍ୟାବଶ୍ୟକ, - ପ୍ରକୃତରେ ସବାମୂଳର ହିଁ କଥାଟିଏ**

ଶ୍ରମର ମାଧମରେ ଶିକ୍ଷା, ଏଇଟି ଭିତରେ ପ୍ରକୃତରେ ତିନୋଟି ବିଚାର ଏକତ୍ର ହୋଇ ରହିଛି: ଏହା ସର୍ବଦା ଉଚିତ, ଏହା କଠିନ ଏବଂ ଏଥିରେ ବହୁ ବିସ୍ମୟକର ଅନୁଭବ ଭର୍ତ୍ତି ହୋଇ ରହିଥାଏ । ଯଦି ଘରମାନଙ୍କରେ ଏହି ତିନୋଟିଯାକ ବିଚାରକୁ ପରସ୍ପର ସହିତ ସଙ୍ଗତି ରଖି ଗ୍ରହଣ କରା ଯାଉଥାନ୍ତା, ତେବେ ବିଦ୍ୟାଳୟମାନଙ୍କରେ ଶ୍ରମର ଜରିଆରେ ଶିକ୍ଷାର ବିଷୟଟିକୁ ସ୍ୱତନ୍ତ୍ର ଭାବରେ ଆଣି ପ୍ରବିଷ୍ଟ କରାଇବାର କୌଣସି ପ୍ରୟୋଜନ ନଥାନ୍ତା । ... କିନ୍ତୁ କର୍ମର ବାହାରେ କିମ୍ବା କର୍ମକୁ ବାଦ୍ ଦେଇ ଆଦୌ କୌଣସି ଶିକ୍ଷା ସମ୍ଭବ ହେବନାହିଁ; କାରଣ, ଆପଣାର ବହୁମୁଖିତା ଓ ବୈଚିତ୍ର୍ୟ ସହିତ ଏହି କର୍ମ ବ୍ୟତୀତ କୌଣସି ବ୍ୟକ୍ତିକୁ ଶିକ୍ଷିତ କରାଯାଇ ପାରିବନାହିଁ । (୩୧)

ବର୍ତ୍ତମାନ ଆମେ ଏହି ବିଷୟଟି ଉପରେ କିଛି ସମୟ ଆଲୋଚନା କରିବା । ଆମ ଦେଶରେ ସାତରୁ ସତର କିମ୍ବା ଅଠର ବର୍ଷ ହୋଇଥିବା କୋଟି କୋଟି ଲୋକ ବିଦ୍ୟାଳୟରେ ଅଧୟନ କରୁଛନ୍ତି । ପୂର୍ବର ଇତିହାସରେ ଏହି ଘଟଣାର କୌଣସି ପଟାନ୍ତର ନାହିଁ । ଏହାକୁ ସମାଜବାଦ ଆଣି ଦେଇଥିବା ଏକ ବୃହତ୍ ଆଶୀର୍ବାଦ ବୋଲି କୁହାଯିବ । କିନ୍ତୁ, ସେହି ଆଶୀର୍ବାଦଟିରୁ କେତେକ ନିଜସ୍ୱ ସମସ୍ୟା ମଧ୍ୟ ଜନ୍ମଲାଭ କରିଛି, କେବଳ ସମୁଚିତ ପ୍ରଜ୍ଞା ତଥା ବୁଦ୍ଧିର ପ୍ରୟୋଗ କରାଯିବା ଦ୍ୱାରା ହିଁ ଯେଉଁଗୁଡ଼ିକର ସମାଧାନ ସମ୍ଭବ ହେବ । ସାତରୁ ସତର ପର୍ଯ୍ୟନ୍ତ ବୟସର ସବୁ ନାଗରିକଙ୍କୁ ଆଦୌ କୌଣସି ବ୍ୟତିକ୍ରମ ନରଖି ବିଦ୍ୟାଳୟର ଶିକ୍ଷା ପ୍ରଦାନ କରିବା ନିମନ୍ତେ ଆମର ସମାଜ ଅଙ୍ଗୀକାରବଦ୍ଧ ରହିଛି ।

( ଏବଂ, ତା'ଛଡ଼ା, ୧୮ ରୁ ୨୫ ବର୍ଷ ବୟସର ଆହୁରି ଏକାଧିକ ନିଯୁତ ତରୁଣ-ତରୁଣୀ ଉଚ୍ଚତର ଶିକ୍ଷା ମଧ୍ୟ ଲାଭ କରୁଛନ୍ତି ।) କାରଣ, ସବୁ ମନୁଷ୍ୟ ଶିକ୍ଷାଲାଭ ନକଲେ, ସାକ୍ଷର ତଥା ସଂସ୍କୃତିସଂପନ୍ନ ନହେଲେ ଶ୍ରମିକମାନଙ୍କୁ ସର୍ବବିଧ ପ୍ରଶିକ୍ଷଣମାନ ପ୍ରଦାନ କରି ପୂର୍ଣ୍ଣ-ବିକଶିତ ବ୍ୟକ୍ତିତ୍ୱମାନ ଗଠନ କରି ଆଣିବା ଆଦୌ ସମ୍ଭବ ହେବନାହିଁ ।

କିନ୍ତୁ, ତରୁଣବର୍ଗ କାହିଁକି ଏତେ ଅଧିକ ସଂଖ୍ୟାରେ ଏହି ଆଶୀର୍ବାଦଟି ନିମନ୍ତେ ଏଭଳି ଅଳ୍ପ ସମ୍ମାନ ପ୍ରଦର୍ଶନ କରୁଛନ୍ତି ?.....

ଆମ ବିପ୍ଳବ ପୂର୍ବରୁ ଦାରିଦ୍ର୍ୟ ଭିତରୁ ମୁକ୍ତ ହୋଇପାରିବା ସକାଶେ ହିଁ ପୁଅ ଏବଂ ଝିଅମାନେ ପାଠ ପଢ଼ିବାକୁ ଯାଉଥିଲେ । "ଶିକ୍ଷାର ଅଭାବରୁ ଜାତ" ସେହି ସର୍ବଶକ୍ତିଶାଳୀ ଦରିଦ୍ର ବର୍ତ୍ତମାନ ଦୂର ହୋଇ ଯିବାପରେ, ପ୍ରକୃତରେ ସ୍ଥିତିଟି କେତେ ଅଧିକ ଭଲ ହୋଇଯାଇଛି । ତଥାପି, ଆମ ବିଦ୍ୟାଳୟ ମାନଙ୍କରେ ଯେ ସତରବର୍ଷୀୟ ମନୁଷ୍ୟମାନେ ନିଯୁତ ନିଯୁତ ସଂଖ୍ୟାରେ ରହିଛନ୍ତି, ତାହାର ଅର୍ଥ ହେଉଛି ଯେ, ଇତିହାସରେ ଆଦୌ କୌଣସି ସମଦୃଷ୍ଟାନ୍ତ ନଥିବା ଏହି ସଫଳତାଟିକୁ ଅବଶ୍ୟ ଏକ ପ୍ରଭାବଯୁକ୍ତ ନୈତିକ ସମର୍ଥନ ଅବଶ୍ୟ ପ୍ରାପ୍ତ ହେବା ଆବଶ୍ୟକ । ସେହି ନୈତିକ ଦିଗଟି ହିଁ ଅତ୍ୟନ୍ତ ସୁନିର୍ଦ୍ଦିଷ୍ଟ ଭାବରେ ପ୍ରତିପାଦିତ କରିଦେବ ଯେ, ଏକ ସାର୍ବଜନୀନ ମାଧ୍ୟମିକ ଶିକ୍ଷା ମଧ୍ୟ ସୁଚାରୁ ଏବଂ ଫଳପ୍ରଦାୟକ ଭାବରେ ମଧ୍ୟ ଚାଲିପାରିବ ଏବଂ ଏପରି ବହୁ ବିପର୍ଯ୍ୟୟର ଗତିରୋଧ କରିପାରିବ, ଯେଉଁଗୁଡ଼ିକ ସଂପ୍ରତି ବିଦ୍ୟାଳୟ-ଜୀବନଟିକୁ ପ୍ରକୃତରେ ବିପନ୍ନ କରି ରଖୁଛି । ତାହା ସର୍ବୋପରି ତଥାକଥିତ କେବଳ ଏକାଡ଼େମିକ୍ କ୍ଷେତ୍ରର ବାହାରେ ରହିଥିବା ଏକ ଶିକ୍ଷାର ଧାରାଦ୍ୱାରା ହିଁ ସମ୍ଭବ ହେବ । (୩୧)

ଉଦାହରଣ ସ୍ୱରୂପ ଆମେ ବିଚାର କରିଥିଲୁ ଯେ, ପାଠଶାଳାରେ ରହିଥିବା ସମୟରେ ହିଁ ଯଦି ଜଣେ ପିଲା ଉତ୍ସାହର ସହିତ ଘରକୁ ଦିଆ ଯାଇଥିବା ପାଠଗୁଡ଼ିକୁ କରିଦେଇ ପାରିବ, ତେବେ ବିଦ୍ୟାଳୟରୁ ଘରକୁ ଯିବାପରେ ମଧ କାମ ପ୍ରତି ତାର ଦୃଷ୍ଟିକୋଣଟି ସମାନ ଭାବରେ ଉତ୍ସାହପୂର୍ଣ୍ଣ ହୋଇ ରହିପାରିବ । ଅବଶ୍ୟ, ଅଭିଜ୍ଞତାରୁ ଜଣା ଯାଇଥିଲା ଯେ, ଏଥିରେ ଆହୁରି ଅନ୍ୟ ବହୁ କଥା ମଧ୍ୟ ଜଡ଼ିତ ହୋଇ ରହିଛି । ପିଲାଟି ଠାରୁ ଯାହା ପ୍ରତ୍ୟାଶା କରାଯାଉଛି ତାହାକୁ ସିଏ ବିବେକର ସହିତ ସେହି ବିଦ୍ୟାଳୟରେ ହିଁ ହୁଏତ କରିଦେଇ ପାରିବ,

ମାତ୍ର ତଥାପି ବିଦ୍ୟାଳୟ ପରେ ସିଏ ବଞ୍ଚୁଥିବା ଜୀବନଟି ବିଷୟରେ ହୁଏତ ସମୁଚିତ ଭାବରେ ଆଦୌ ନୀତିଯୁକ୍ତ ଭାବରେ ପ୍ରସ୍ତୁତ ହୋଇ ପାରିବନାହିଁ ।

ତେବେ ଆମେ ପିଲାଟି ଭିତରେ ନୈତିକ ଦୃଢ଼ତା ଏବଂ ପରିପକ୍ୱତାକୁ କିପରି ବଢ଼ାଇ ପାରିବା, - ଏଠାରେ ସେହି ସମସ୍ୟାଟି ଆସି ପହଞ୍ଚୁଛି । ଆପଣାର କର୍ମଜୀବନ ନିମନ୍ତେ ପିଲାମାନେ ଯେ କିପରି ସୁନିଶ୍ଚିତ ଭାବରେ ନୈତିକ ସ୍ତରଟିରେ ହିଁ ପ୍ରସ୍ତୁତ ରହି ପାରୁଥିବେ, ସେଥିଲାଗି କ'ଣସବୁ କରିବା ଉଚିତ ? ...(୨,୧୪୧)

ଯଦି ଗୋଟିଏ ପିଲା ବିଦ୍ୟାଳୟରେ ଦଶବର୍ଷ କାଳ ପାଠ ପଢ଼ିଲା ଏବଂ ବିଜ୍ଞାନଗୁଡ଼ିକ ସମ୍ବନ୍ଧରେ ପ୍ରାଥମିକ ଜ୍ଞାନଗୁଡ଼ିକୁ ଲାଭ କଲା, ଏବଂ ତା'ପରେ ଯଦି ତା' ହାତରେ ଗୋଟିଏ କୋଡ଼ି ଧରାଇ ଦିଆଯାଇ, ଏଥର ତୋ'ର ଇସ୍କୁଲ ସରିଲା ଓ ଏଥର ତୁ ଘରକୁ ଫେରିଯାଇ କାମ କର ବୋଲି କୁହାଯାଏ, ତେବେ ତା' ଲାଗି ସେଇଟି କେବଳ ଏକ ଦୁର୍ଭାଗ୍ୟର ହିଁ ବିଷୟ ହେବ । ମାତ୍ର, ଇସ୍କୁଲ ଶେଷ କରି ଯାଉଥିବା ବହୁ ପିଲାଙ୍କୁ ସେହି ଦୁର୍ଭାଗ୍ୟଟିକୁ ଭୋଗ କରିବାକୁ ହୁଏ । କାରଣ, ସେମାନଙ୍କର ଭାବଗତ ଜୀବନ, ଯାବତୀୟ ଚିନ୍ତା ଓ ଭାବନା ତଥା ଆଗ୍ରହମାନେ ମଧ ଦଶବର୍ଷରୁ ଅଧିକ ସମୟ ନିମନ୍ତେ ବାସ୍ତବ ଜୀବନରୁ ବିଚ୍ଛିନ୍ନ ହୋଇ ହିଁ ରହିଥାନ୍ତି । ଯାବତୀୟ ଶ୍ରମରୁ ବିଚ୍ଛିନ୍ନ ହୋଇ ରହିଥାନ୍ତି । ତେଣୁ, ସ୍କୁଲଛାତ୍ର ମାନଙ୍କର ସକଳବିଧି କ୍ରିୟାଶୀଳତାରେ ପ୍ରାତ୍ୟହିକ କର୍ମଲାଗି ପ୍ରସ୍ତୁତ ହୋଇ ପାରୁଥିବାର ସୁଯୋଗମାନ ଅବଶ୍ୟ ଦିଆଯିବା ଉଚିତ । ଏବଂ, ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ କଥା ମଧ୍ୟ ହେଉଛି ଯେ, ସେମାନଙ୍କର ମାନସିକତା, ବିଚାର ତଥା ଭାବନା ଏବଂ ସଂବେଗଗତ ଜୀବନର ଭିତ୍ତିଭୂମି ଉପରେ ହିଁ ସେଗୁଡ଼ିକୁ ଯୋଗାଇ ଦିଆଯିବା ଉଚିତ । (୩,୮୬)

ଜଣେ ବ୍ୟକ୍ତି କର୍ମ ବିଷୟରେ କେଉଁଭଳି ଏକ ଦୃଷ୍ଟିକୋଣ ପୋଷଣ କରୁଛି, ଏଇଟି ହେଉଛି ତା'ର ଚରିତ୍ର ତଥା ମାନସିକ କ୍ରିୟାତ୍ମକତାର ଏକ ଅସଲ ଉପାଦାନ । ଏପରି କହିବା ଅତ୍ୟନ୍ତ ନିର୍ବୋଧ ଓ ଅଳପ ମଧ୍ୟ ହେବ ଯେ, କର୍ମର ପ୍ରକ୍ରିୟାଟିର ମାଧମରେ ହିଁ କର୍ମ ନିମନ୍ତେ ଆଗ୍ରହଟିକୁ ବୃଦ୍ଧି କରା ଯାଇଥାଏ । ଜଣେ ବ୍ୟକ୍ତିର ସ୍ୱଭାବରେ ଏକ କେନ୍ଦ୍ରସ୍ଥ ସମ୍ପଦରୂପେ କର୍ମପ୍ରତି ତା'ର ଆଗ୍ରହକୁ ତା'ର ବୁଦ୍ଧିଗତ ତଥା ସଂବେଗମୟ ଜୀବନଟି ଦ୍ୱାରା ମଧ ଉତ୍ସାହିତ କରା ଯାଇଥାଏ । ଯେଉଁ ଲୋକଟି ବେଶୀକିଛି ବିଚାର କରି ପାରେନାହିଁ କିମ୍ବା ଅନୁଭବ ବି

କରେନାହିଁ, ସିଏ ତା'ର ଐଚ୍ଛିକ କାର୍ଯ୍ୟରେ ଆଗ୍ରହ ପ୍ରକାଶ କରିବା କଦାପି ସମ୍ଭବ ହେବନାହିଁ । ଜଣେ ବ୍ୟକ୍ତି ଯେତେ ଅଧିକ ବୁଦ୍ଧିମାନ୍ ହୋଇଥିବ, ସେହି କାରଣରୁ ତା'ର ଭାଗସଂବେଗ ଗୁଡ଼ିକ ମଧ୍ୟ ସେତିକି ଅଧିକ ସମୃଦ୍ଧ ହୋଇଥିବେ, ତା'ର ଇଚ୍ଛାଶକ୍ତି ସେତିକି ଦୃଢ଼ତା ଲାଭ କରିଥିବ ଓ ତା'ର କର୍ମାଚରଣଟି ମଧ୍ୟ ସେତିକି ଭିନ୍ନ ଭିନ୍ନ ପ୍ରକାରେ ଆପଣାକୁ ବ୍ୟକ୍ତ କରିବାରେ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ଭାବରେ ଅନୁକୂଳତା ପ୍ରଦର୍ଶନ କରୁଥିବେ । ....ଖାଲି କର୍ମ ନାହିଁ; ଏବଂ, ବୁଦ୍ଧିମତ୍ତା ଓ ଗାମ୍ଭୀର୍ଯ୍ୟ ରହିଥିବା କଥାଗୁଡ଼ିକ ବ୍ୟତୀତ ମଧ ତାହାର ଅଭିବୃଦ୍ଧି ହେବନାହିଁ । (୩,୧୪)

ମାଧମିକ ବିଦ୍ୟାଳୟ ଗୁଡ଼ିକର ପାଠ୍ୟକ୍ରମ ଓ ପାଠ୍ୟବିଷୟ ଗୁଡ଼ିକ ଉପରେ ମନ୍ତବ୍ୟ ଦେଇ କେତେ ସମାଲୋଚକ କହିଥାଆନ୍ତି ଯେ, ସେଗୁଡ଼ିକରେ ପ୍ରାକୃତିକ ବିଜ୍ଞାନ ମାନଙ୍କର ତୁଳନାରେ ସାହିତ୍ୟ ଇତ୍ୟାଦି ଅନ୍ୟାନ୍ୟ ବିଷୟରେ ଅତିରିକ୍ତ ପରିମାଣର ସାମଗ୍ରୀଗୁଡ଼ିକୁ ଭର୍ତ୍ତି କରି ଦିଆଯାଇଛି ବୋଲି ହିଁ ସେହି ପାଠ୍ୟକ୍ରମ ଦ୍ୱାରା ସମୁଚିତ ଫଳଗୁଡ଼ିକ ଆଦୌ ମିଳି ପାରୁନାହିଁ । ତେଣୁ ଦାବୀ ହେଉଛି, ଏଥର ସେହି ଇତର ନାନାଭଳି ବିଷୟମାନଙ୍କୁ କମାଇ ଦେଇ ବ୍ୟାବହାରିକ କ୍ରିୟାଶୀଳତାଟିର କ୍ଷେତ୍ରରେ ପିଲାମାନଙ୍କର ମୂଳଦୁଆକୁ ଅଧିକ ମଜବୁତ କରାଯାଉ । ତେବେଯାଇ ପଢ଼ା ହେଉଥିବା ପାଠ ଏବଂ ପ୍ରକୃତ ଜୀବନ ମଧ୍ୟରେ ରହିଥିବା ଦୂରତାଟିକୁ କମ୍ କରି ଆଣିହେବ ବୋଲି କୁହାଯାଇଥାଏ । ଏହି ସମାଲୋଚନାଟିକୁ ତାହାର ନ୍ୟାୟୋଚିତ ଶେଷସିଦ୍ଧାନ୍ତଟି ଯାଏ ଲମ୍ବାଇନେଇ ପାରିଲେ ଆମେ ଏପରି ଏକ ମତ ପାଖରେ ଆସି ଉପନୀତ ହେବା ଯେ, ତଥାକଥିତ ବିଜ୍ଞାନ ବାହାରେ ରହିଥିବା ସେହି ଅନ୍ୟ ବିଷୟଗୁଡ଼ିକର ଅଧ୍ୟୟନଟିର କର୍ମଲାଗି ଆଗ୍ରହବୃଦ୍ଧି ଘଟିବା ସହିତ ସମ୍ଭବତଃ ଆଦୌ କୌଣସି ସମ୍ବନ୍ଧ ହିଁ ନଥାଏ । ଏପରି ଏକ ରୀତିରେ ସମସ୍ୟାଟିର ସମ୍ମୁଖୀନ ହେବାକୁ ପ୍ରକୃତରେ ଏକ ଅତ୍ୟନ୍ତ ଆଦିମ ରୀତି ବୋଲି ହିଁ କୁହାଯିବ । କେବଳ କେତେଟା କୌଶଳ ଶିକ୍ଷା କରିବାର ସେହି ଅତ୍ୟଳ୍ପ ପରିସରଟି ଉପରେ ଦକ୍ଷତା ଅର୍ଜନ କରି ଜୀବନ ତଥା ଶ୍ରମସକ୍ରିୟାଟି ନିମନ୍ତେ କଦାପି ଆବଶ୍ୟକ ପ୍ରଶିକ୍ଷଣଟି ମିଳି ଯାଏନାହିଁ ।.... ଜଣେ ଶିଶୁର ବୁଦ୍ଧିକ୍ଷେତ୍ରର ଅନୁଭବଟିକୁ ଗଠନ କରିଆଣି ତାହାକୁ ସମୁଚିତ ମାର୍ଗମାନଙ୍କରେ ପରିଚାଳିତ କରାଇନେବା ଓ ଆପଣାର କରୁଥିବା କର୍ମଗୁଡ଼ିକର ଯଥାର୍ଥ ତାତ୍ପର୍ଯ୍ୟଟିକୁ ବୁଝିବାରେ ସେମାନଙ୍କର ସହାୟତା କରିପାରିବା, - ଏଥିନିମନ୍ତେ ସେହି ମାନବିକୀ

ଅନ୍ୟବିଷୟ ଗୁଡ଼ିକର ଅଧ୍ୟୟନ ଅବଶ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ସାଧନ ଆଣି ଯୋଗାଇ ଦେଇଥାଏ । (୩,୯୧)

କଠିନ ଶରୀରଶ୍ରମ ଏବଂ ତାହାସହିତ ନାନାଭାବେ ବନ୍ଧିତ କରି ରଖିବା ଏବଂ ପ୍ରତିବନ୍ଧକଗୁଡ଼ିକ ଠିଆ ହୋଇ ରହିଥିବାର ଏକ ବାତାବରଣରେ ରହିଲେ ପାଠ ପଢୁଥିବା ଗୋଟିଏ ପିଲାର ନୈତିକ ମନ ତଥା ଆଦର୍ଶମାନେ ଆପେ ଆପେ ବିକାଶଲାଭ କରିବାର ବଳ ପାଇଯାଆନ୍ତି ବୋଲି ଯେଉଁ ନିତାନ୍ତ ଉପରଠାଉରିଆ ମତଟି ରହିଛି, ତାହାକୁ ଆମେ ଆଦୌ ଗ୍ରହଣ କରି ପାରିବାନାହିଁ । ଶ୍ରମର ଶିକ୍ଷାଦାନକାରୀ ଭୂମିକାଟି ପ୍ରକୃତରେ କିଭଳି ହେବ ବା ନହେବ, ତାହା, ଶ୍ରମ ଜଣେ ବ୍ୟକ୍ତିର ବିଚାରଗୁଡ଼ିକୁ କିପରି ପ୍ରଭାବିତ କରୁଛି, ଓ ତା'ର ଦୃଷ୍ଟି ତଥା ଭାବସଂବେଗ ଗୁଡ଼ିକ ଉପରେ କିପରି ପ୍ରଭାବ ପକାଉଛି ଏବଂ ତା'ର ଇଚ୍ଛାଶକ୍ତିକୁ କେତେ ନିବିଡ଼ ଭାବରେ ଗତିଶୀଳ ମଧ୍ୟ କରିପାରୁଛି, ସେହିଗୁଡ଼ିକ ଉପରେ ହିଁ ସର୍ବଦା ନିର୍ଭର କରିବ । (୬,୨୭)

ଶ୍ରମ କରାଇବା ପଛରେ ଆଦୌ କୌଣସି ବୁଦ୍ଧିର ପ୍ରୟୋଗ ହେଉନଥିବ ଏବଂ ଆଦୌ କୌଣସି ବିଚାର ନକରି ଗୋଟିଏ ପିଲାକୁ ଯେକୌଣସି ଶରୀରଶ୍ରମ କରିବାଲାଗି କୁହା ଯାଉଥିବ, - ଅର୍ଥାତ୍, ତାକୁ କୌଣସି ପ୍ରକାରେ କର୍ମରତ ହୋଇ ରଖିବାର ଅଭିପ୍ରାୟରେ ହିଁ ସବୁକିଛି କରା ଯାଉଥିବ, - ଶିଶୁର ବୌଦ୍ଧିକ ବିକାଶରେ ତାହା ସମାନ ଭାବରେ କେବଳ ଅନିଷ୍ଟକାରକ ହୋଇ ହିଁ ରହିଥିବ । (୧୪,୮)

ଅଧ୍ୟୟନ ପ୍ରତି ମଧ୍ୟ, ଏକ ଉପରଠାଉରିଆ ମନୋଭାବ ପୋଷଣ କରିବା, - ଆମେ ତାହାକୁ ହିଁ ଶିକ୍ଷାସଂପର୍କୀୟ ଯାବତୀୟ କାର୍ଯ୍ୟରେ ଏକ ସର୍ବାଧିକ ପରିମାଣର ଭୟଙ୍କର ତ୍ରୁଟି ବୋଲି ହିଁ କହିବା । ... ଶ୍ରେଣୀଗୁଡ଼ିକରେ ଛାତ୍ରମାନେ ଯଦି ମୁଖ୍ୟତଃ ଲକ୍ଷ୍ୟହୀନ ଭାବରେ ସମୟ କଟାଇ ଦେଉଥିବେ, ତେବେ ସେମାନେ କ୍ରମେ ନାନା ବିକୃତି ଭିତରେ ଯାଇ ପଡ଼ିଯିବେ ଏବଂ, ସେମାନଙ୍କର ସେହି ଅତ୍ୟନ୍ତ କୋମଳ ବୟସରେ ପ୍ରକୃତରେ ନାନାବିଧ ମନ୍ଦ ଅଭ୍ୟାସଦ୍ୱାରା ଗ୍ରସ୍ତ ହୋଇଯିବେ । ଏପରି ଅଗଣିତ ଉଦାହରଣ ତ ରହିଛି, ଯେଉଁ କ୍ଷେତ୍ରରେ କି, ପାଠ ସମାପ୍ତ କରି ସ୍କୁଲ ଛାଡ଼ିବାପରେ ପିଲାମାନେ ବାହାରର ବୃହତ୍ତର ଜୀବନଟି ନିମନ୍ତେ ସମୁଚିତ ଭାବରେ ପ୍ରସ୍ତୁତ ହୋଇ ପାରିନଥିଲେ । ସ୍କୁଲରେ ପାଠ ପଢୁଥିବା ସମୟରେ ସେମାନେ ତ ସେହି ଅବଧିଟିକୁ ଆଳସ୍ୟରେ ହିଁ କଟାଇ ଦେଇଥିଲେ । ଏବଂ,

ଭିତରେ ଯେଉଁସବୁ ମନ୍ଦ ଅଭ୍ୟାସର ପୂର୍ବରୁ ହିଁ ଚେର ଧରି ସାରିଛି, ବର୍ତ୍ତମାନ ଯେତେ ବାଧ୍ୟ କଲେ ଅଥବା ସମୁଚିତ ବୋଲି ମନେ ହେଉଥିବା ଯେତେ ଯାହା କର୍ମ ତଥା କର୍ତ୍ତବ୍ୟମାନ ଆଣି ଲଦିଦେଲେ ମଧ୍ୟ ସେଗୁଡ଼ିକୁ କେବେହେଲେ ଦୂର କରାଯାଇ ପାରିବନାହିଁ । ଏହି ପିଲାମାନଙ୍କର ତ ଏକାଧିକ ବର୍ଷ ସେହି ସ୍କୁଲରେ ହିଁ ନଷ୍ଟ ହୋଇ ଯାଇଛି ଏବଂ ସେମାନେ ସେତେବେଳେ ଆଦୌ କିଛି ନକରି ଶ୍ରେଣୀରେ ବସି ବସି ସମୟ କାଟିଛନ୍ତି । ସମ୍ଭବତଃ,ଅପେକ୍ଷାକୃତ ଅଧିକ କ୍ୱଚିତ୍ ଏବେ ସେମାନଙ୍କୁ କୌଣସି କାର୍ଯ୍ୟ ଦିଆଯିବ, ଏବଂ ସେମାନଙ୍କର ବର୍ତ୍ତମାନର ଆଳସ୍ୟପୂର୍ଣ୍ଣ ନୀରସ ଜୀବନରେ କିଛି ବୈଚିତ୍ର୍ୟକୁ ସମ୍ଭବ କରି ଆଣି ପାରିବ, ତେବେ ସେମାନେ କର୍ମରେ କିଞ୍ଚିତ୍ ପରିମାଣରେ ଏକ ଆଗ୍ରହ ପ୍ରଦର୍ଶନ କରିପାରିବେ । (୩,୧୨୦)

ପରସ୍ପର ସହିତ କୌଣସି ସମ୍ପର୍କ ରହିନଥିବା କେତେଟା ପ୍ରଣାଳୀ ଓ ଆନୁଷ୍ଠାନିକ ଛାଞ୍ଚକୁ ପ୍ରୟୋଗ କରିବାଟାକୁ କଦାପି ଶ୍ରମ ମାଧ୍ୟମରେ ଶିକ୍ଷା ବୋଲି କୁହାଯିବ ନାହିଁ । ମୁଁ ବେଶ୍ ବହୁ ସଂଖ୍ୟାରେ ଏପରି ଲେଖାମାନ ପଢ଼ିଛି, ଯେଉଁଗୁଡ଼ିକର ଲେଖକମାନେ ମତ ବ୍ୟକ୍ତ କରିଛନ୍ତି ଯେ, ଯଦି କୌଣସି ଗାଆଁ ସ୍କୁଲରେ ଉତ୍ପାଦାନର ବିଭାଗଟିଏ ରହିଥାଏ ଓ ସହରର ଗୋଟିଏ ସ୍କୁଲରେ ଗୋଟିଏ ଓ୍ୱାର୍କ୍ଶପ୍ ଥାଏ ତେବେ ଶ୍ରମ ମାଧମରେ ଶିକ୍ଷା ଦେବାର ସମସ୍ୟାରେ ପୂର୍ଣ୍ଣ ସମାଧାନ ହୋଇଯିବ । ହଁ, ଉତ୍ପାଦନକେନ୍ଦ୍ର ଓ ଓ୍ୱାର୍କଶପ୍ - ଦୁଇଟି ଯାକର ପ୍ରକୃତରେ ବହୁତ ଆବଶ୍ୟକତା ଅବଶ୍ୟ ରହିଛି, କିନ୍ତୁ ଶ୍ରମମାଧମରେ ଶିକ୍ଷା ଦେବାର କ୍ଷେତ୍ରରେ ସେହି ଦୁଇଟିକୁ କେବଳ ଗୋଟିଏ ଗୋଟିଏ ଅଲଗା ଅଲଗା ଦିଗ ବୋଲି ହିଁ କୁହାଯିବ । ଶ୍ରମର ମାଧମରେ ଶିକ୍ଷା କହିଲେ ସର୍ବଦା ଏକ ଏକକ ଭାବରେ ନିର୍ଦ୍ଦିଷ୍ଟ, ବ୍ୟାପକ ଏବଂ ବହୁପ୍ରସ୍ଥଯୁକ୍ତ ବିଚାରକୁ ବୁଝାଇବ । ଶିକ୍ଷାଦାନ ବିଷୟରେ ବହୁବର୍ଷର ଅଭିଜ୍ଞତା ଏବଂ ମୋ' ସମ୍ପର୍କରେ ଆସିଥିବା ଶହ ଶହ ପିଲାଙ୍କର ଜୀବନ ମୋ'ର ଏହି ପ୍ରତ୍ୟୟଟିକୁ ଦୃଢ଼ କରିଦେବାରେ ସମର୍ଥ ହୋଇଛନ୍ତି ଯେ, ଶ୍ରମର ମାଧମରେ ଶିକ୍ଷା କହିଲେ ତାହା ଯଥାର୍ଥରେ ବିଦ୍ୟାଳୟଗତ ତଥା ପାରିପାରିକ ଜୀବନର ମୌଳିକ ଅର୍ଥ ଏବଂ ପ୍ରଧାନତମ ଲକ୍ଷ୍ୟଟିକୁ ହିଁ ବୁଝାଇଥାଏ । (୩୧)

ଶ୍ରମ ଏବଂ ଶ୍ରମ ମାଧମରେ ଶିକ୍ଷାକୁ ଆମେ କଦାପି ଅଧ୍ୟୟନ, ନୈତିକ ଶିକ୍ଷା ଓ ବିକାଶର ସମତୁଲ କରି ବିଚାର କରି ପାରିବାନାହିଁ । ଶ୍ରମ ତ ଆମ

ଜୀବନର ସକଳ କ୍ଷେତ୍ରରେ ଆମର ଯାବତୀୟ କ୍ରିୟାଶୀଳତା ସହିତ ଜଡ଼ିତ ହୋଇ ରହିଛି । ଆମ ବିଦ୍ୟାଳୟର ଗୋଟିଏ ପିଲାକୁ (ବା ଯୁବାକୁ ) ଅଧ୍ୟୟନ ବାହାରେ ଆହୁରି କୌଣସି ଏକ କାର୍ଯ୍ୟ ସହିତ ସଂଯୁକ୍ତ କରି ରଖିବା ନିମନ୍ତେ ଆମେ ଯାହାକିଛି କୌଶଳ ଅବଲମ୍ବନ କରିବାକୁ ମନ କରିବା ପଛକେ, ମାନସିକ ଅନୁଧାବନର କ୍ଷେତ୍ରରେ ଅଧ୍ୟୟନ ହିଁ ତଥାପି ଅବଶ୍ୟ ମୁଖ୍ୟ ସ୍ଥାନରେ ରହିଥିବ ଏବଂ ସେହି ସତ୍ୟଟିକୁ କଦାପି ଏଡ଼ି ଦେଇ ହେବନାହିଁ । ଶ୍ରମର ମାଧ୍ୟମରେ ଶିକ୍ଷାଦାନର ସକଳ କାର୍ଯ୍ୟକ୍ରମ ଏହି ବାସ୍ତବସ୍ତରଟିରୁ ହିଁ ସର୍ବଦା ଆରମ୍ଭ କରିବ । ବସ୍ତୁତଃ, ଠିକ୍ ଏହିଠାରୁ ହିଁ ଯାବତୀୟ ଆରମ୍ଭର ପ୍ରଥମାରମ୍ଭଟି ହୋଇଥାଏ । ବିଚାର ନିମନ୍ତେ ଖାଦ୍ୟ ଆଣି ପହଞ୍ଚାଇ ଦିଆ ଯାଉଥିବ, ଆମ ଚତୁର୍ଦ୍ଦିଗର ପୃଥିବୀକୁ ଆବିଷ୍କାର କରି ପାରିବାର ପ୍ରକ୍ରିୟାଟି ଲାଗି ରହିଥିବ, ଜ୍ଞାନର ଭଣ୍ଡାରଟି ବଢ଼ିବାରେ ଲାଗିଥିବ, ଜୀବନର ସତ୍ୟଗୁଡ଼ିକ ଉତ୍ତରୋତ୍ତର ଭାବରେ ଉପଲବ୍ଧ ହେବାରେ ଲାଗିଥିବେ ତଥା ସେହି ଜ୍ଞାନକୁ ଭୂମିରୂପେ ବ୍ୟବହାର କରି ବ୍ୟକ୍ତିଗତ ମତ, ଦୃଷ୍ଟିକୋଣ ଓ ପ୍ରତ୍ୟୟଗୁଡ଼ିକ ମଧ୍ୟ ବିକାଶଲାଭ କରୁଥିବେ, - ଏହି ସବୁଗୁଡ଼ିକୁ ହିଁ ବିଦ୍ୟାଳୟକୁ ଯାଉଥିବା ଜଣେ ଛାତ୍ରଲାଗି ଗୋଟିଏ ଗୋଟିଏ କର୍ମକ୍ଷେତ୍ର ରୂପେ ବ୍ୟବହାର କରାଯାଇ ପାରିବ । (୩୧)

ଜଣେ ଛାତ୍ରର ମାନସିକ କାର୍ଯ୍ୟ କହିଲେ ତା'ର ମନରୂପୀ ଇନ୍ଦ୍ରିୟଟି ପରିପୂର୍ଣ୍ଣ ଶକ୍ତି ସହିତ କର୍ମରତ ହୋଇ ରହିଥିବାକୁ ହିଁ ବୁଝାଇବ । ଯାବତୀୟ ବସ୍ତୁସତ୍ୟକୁ ସେ ନିର୍ଭୁଲ ତଥା ବୈଜ୍ଞାନିକ ଭାବରେ ନିଜର ଅବବୋଧ ମଧ୍ୟକୁ ଆଣି ପାରିବ, ତାହାହିଁ ଏହି କ୍ଷେତ୍ରରେ ଅଭିପ୍ରାୟ ହୋଇ ରହିବ । ତା'ର ମଥାଟି ପୂର୍ଣ୍ଣ ଶକ୍ତିରେ ସକ୍ରିୟ ରହିଥିବ, କାରଣ ସେହି ସାମର୍ଥ୍ୟଟି ନଥିଲେ ଅଧ୍ୟୟନଟିକୁ ଆଦୌ ଏକ କର୍ମ ବୋଲି କୁହା ଯିବନାହିଁ ଏବଂ ଏକ ସ୍ଖଳନ ଘଟି ତାହା କେବଳ ବୁଦ୍ଧିହୀନ ଓ କେବଳ ନିଷ୍କ୍ରିୟ ପାଠଆହରଣରେ ପରିଣତ ହୋଇଯିବ, ଯାହାକି ଛାତ୍ର ଉପରେ ଗୋଟିଏ ବୋଝ ହୋଇ ରହିଥିବ ।

ମଥାର ସକ୍ରିୟତା କହିଲେ କେବଳ କଦାପି "ଭାବିବା"କୁ ବୁଝାଏ ନାହିଁ । ଯଦି ଭାବନା ପଛରେ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିଥିବ ଅର୍ଥାତ୍ ଜଣେ ବ୍ୟକ୍ତି ଯେତେବେଳେ ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ କରିବା ନିମନ୍ତେ ଚେଷ୍ଟା କରୁଥିବ, ସେତିକିବେଳେ ଯାଇ ତାହା ଏକ ଯଥାର୍ଥ କର୍ମରେ ପରିଣତ ହେଲା ବୋଲି କୁହାଯିବ ।(୩,୭୨)

ଯେଉଁ ଅଧ୍ୟୟନରେ ଯେକୌଣସି ଯଥାର୍ଥ କାର୍ଯ୍ୟର ମୂଳ ଗୁଣଗୁଡ଼ିକ ରହିଥାଏ, ଅର୍ଥାତ୍, ଯାହା ସମ୍ମୁଖରେ ଗୋଟିଏ ଲକ୍ଷ୍ୟ ରହିଥାଏ, ସେହି ଲକ୍ଷ୍ୟରେ ପହଞ୍ଚିବା ନିମନ୍ତେ ଚେଷ୍ଟା ବିଦ୍ୟମାନ୍ ଥାଏ ଓ ସେଥିରୁ କିଛି ଫଳ ମଧ୍ୟ ଉପଲବ୍ଧ ହେଉଥାଏ, ସେତେବେଳେ ଯାଇ ତାହାକୁ ଏକ ଶାରୀରିକ କର୍ମ ବୋଲି କୁହାଯାଇ ପାରିବ ।(୩,୧୯୪)

ବିଦ୍ୟାଳୟରେ ଯଦି ଖଣ୍ଡାଦାଢ଼ରେ ପକାଇଲା ପରି ଶାରୀରିକ ଓ ମସ୍ତିଷ୍କଗତ କାର୍ଯ୍ୟ ମଧ୍ୟରେ କୌଣସି ବିଭାଗକାରୀ ରେଖା ଟାଣି ଦିଆଯାଏ, ତେବେ ସେଥିରୁ ବହୁ ବିପଦର ହିଁ ସୂତ୍ରପାତ ହୁଏ; ସେତେବେଳେ ଯାବତୀୟ ଶିକ୍ଷା ସକଳ କ୍ରିୟାତ୍ମକତାରୁ ବର୍ଜିତ ହୋଇ କେବଳ କେତେଟା ସୂତ୍ରମାତ୍ର ହୋଇ ରହିଯାଏ । ମସ୍ତିଷ୍କର କାର୍ଯ୍ୟ ଓ ଶରୀରର କାର୍ଯ୍ୟକୁ ଏକାଠି ମିଶାଇଦେଲେ ଆମେ ତାହାଦ୍ୱାରା ଆପଣାଛାଏଁ ଉଭୟ ଶାରୀରିକ ପ୍ରୟାସ ତଥା ମସ୍ତିଷ୍କର ଉଦ୍ୟମରେ ମଧ୍ୟ ଅଭିବୃଦ୍ଧି ହୋଇଗଲା ବୋଲି କଦାପି କୁହା ଯିବନାହିଁ । ଅସଲ କଥାଟି ହେଉଛି ଯେ, ଶାରୀରିକ କାର୍ଯ୍ୟକୁ ଭୂମିରୂପେ ବ୍ୟବହାର କରି ବୌଦ୍ଧିକ ଉଦ୍ୟମଟିଏ ଅନୁକ୍ଷଣ ଆପଣାକୁ ସକ୍ରିୟ କରି ରଖିଥିବ ।(୩,୭୧)

ସମ୍ପୂର୍ଣ୍ଣ ଭ୍ରାନ୍ତିରହିତ ଭାବରେ କଳ୍ପନା କରା ଯାଉଥିବା ମସ୍ତିଷ୍କ-କାର୍ଯ୍ୟରେ "ପରିଷ୍କାର" ଏବଂ "ଅପରିଷ୍କାର" କାର୍ଯ୍ୟ ମଧ୍ୟରେ ଆଦୌ କୌଣସି ଭେଦ ରଖା ଯାଏନାହିଁ ଅଥବା କାର୍ଯ୍ୟ ବିଭାଜନ ମଧ୍ୟ କରିଦିଆ ଯାଏନାହିଁ । ନିଜର ଅଭିଜ୍ଞତାରୁ ହିଁ ପ୍ରକୃତ ମଥାର କାର୍ଯ୍ୟ ନିମନ୍ତେ ଆବଶ୍ୟକ ପ୍ରଚେଷ୍ଟାଟିକୁ ଗୋଟିଏ ପିଲା ଉତ୍ତମରୂପେ ଉପଲବ୍ଧି କରିବ ଓ ଏଣେ ଶାରୀରିକ ଶ୍ରମକୁ ମଧ୍ୟ ସମ୍ମାନ ସହିତ ଗ୍ରହଣ କରିବାକୁ ସମର୍ଥ ହେବ । (୩,୧୧୦)

## କର୍ମରୁ ପ୍ରାପ୍ତ ଆନନ୍ଦ, ଯାହା ପ୍ରାତ୍ୟହିକ ଜୀବନରେ ଅଧିକ ଅଭିବୃଦ୍ଧି ଆଣେ

\+ \+ \+

ନୈତିକ ଚେତନାର କ୍ଷେତ୍ରରେ ଏକ ଜାଗରଣ ସମ୍ଭବ କରାଇ ଆଣି ଅପେକ୍ଷାକୃତ ଅଧିକ ବୟସର ଛାତ୍ରମାନଙ୍କୁ ବେଶ୍ ମହତ୍ତ୍ୱପୂର୍ଣ୍ଣ ଭାବରେ ଶ୍ରମଲାଗି ଆବଶ୍ୟକ ପ୍ରେରଣାଟିକୁ ଯୋଗାଇଦେଇ ହୁଏ ସତ, ଶ୍ରମର ପ୍ରକ୍ରିୟାଗୁଡ଼ିକ ମଧ୍ୟରେ

ରହିଥିବା ସୃଜନାତ୍ମକ ବିଭାବଗୁଡ଼ିକ ହିଁ ଅପେକ୍ଷାକୃତ କମ୍ ବୟସର ପିଲାମାନଙ୍କ ଲାଗି ପ୍ରଧାନ ପ୍ରେରଣା ହୋଇ ରହିଥାଏ; ବସ୍ତୁତଃ ବେଳେ ବେଳେ କେବଳ ତାହାହିଁ ଏକମାତ୍ର ଉତ୍‌ପ୍ରେରକ ହୋଇ ରହିଥାଏ, ଯାହାକି ସେମାନଙ୍କୁ ଦୀର୍ଘ ଅବଧିମାନ ଦରକାର ହେଉଥିବା ସମ୍ପୂର୍ଣ୍ଣ ଶ୍ରମର କ୍ଷେତ୍ରଗୁଡ଼ିକ ମଧ୍ୟକୁ ପରିଚାଳିତ କରି ନେଇ ଯାଉଥାଏ । ଏକ ସର୍ଜନାତ୍ମକ କାର୍ଯ୍ୟମଧ୍ୟରେ ପିଲାମାନଙ୍କୁ ପ୍ରାୟ ସେହି ଉପାଦାନଗୁଡ଼ିକ ମିଳିଯାଏ, ଯେଉଁଗୁଡ଼ିକ କି ପରୀଗଳ୍ପ ତଥା ନାଟକରେ ସେମାନଙ୍କୁ ଅତ୍ୟନ୍ତ ଶକ୍ତିଶାଳୀ ଆବେଦନମାନ ପ୍ରଦାନ କରିଥାଏ । ସର୍ବାଧିକ ରେଖାପାତ କରୁଥିବା ବୌଦ୍ଧିକ ଓ ସଂବେଗଗତ ଏକାଧିକ ମନୁଷ୍ୟଗୁଣର ଏକ ସ୍ପଷ୍ଟ ପରିପ୍ରକାଶକୁ ଆଣି ହାବୁଡ଼େଇ ଦେଇଥାଏ । (୬,୮୫)

ଏପରି ପ୍ରତ୍ୟାଶାଟିଏ ରଖିବା ଉଚିତ ନୁହେଁ ଯେ ଶ୍ରମ-ଅନୁଭୂତିର କ୍ଷେତ୍ରଟିରେ ପ୍ରଥମ ପାଦଗୁଡ଼ିକୁ ପକାଉ ପକାଉ ହିଁ ଗୋଟିଏ ପିଲା ସେଇଟିଦ୍ୱାରା ଆକୃଷ୍ଟ ହେବ ଏବଂ ତାହାକୁ ଉପଭୋଗ ମଧ୍ୟ କରିବ । ବରଂ, ଅନ୍ୟ ପକ୍ଷରେ, ସିଏ କ୍ଲାନ୍ତି ଅନୁଭବ କରିବାର ବହୁ ପୂର୍ବରୁ ହିଁ ଶ୍ରମର କୌଣସି ପ୍ରକୃତ କାର୍ଯ୍ୟକ୍ରମରେ ତା'ର ଏକ ମୋହଭଙ୍ଗ ହିଁ ହୋଇଯିବ । ଆପଣା ଉଦ୍ୟମଗୁଡ଼ିକର ସର୍ଜନାତ୍ମକ ଭୂମିକାଟିକୁ ଏବଂ ନିଜେ କରୁଥିବା କାର୍ଯ୍ୟଟିରେ ରହିଥିବା ସାମାଜିକ ତାତ୍ପର୍ଯ୍ୟଟିକୁ ଉଚିତ ପ୍ରକାରେ ବୁଝିବାକୁ ସମର୍ଥ ହେଉଥିବାରୁ ହିଁ ପିଲା କ୍ରମେ ନିଜେ କରୁଥିବା ଶ୍ରମଟିକୁ ମଧ୍ୟ ଭଲ ପାଇବାକୁ ଆରମ୍ଭ କରିବ । ସେହି ଉପଲବ୍ଧିଟି ନହୋଇଥିବା ପର୍ଯ୍ୟନ୍ତ ଯଦି ଆମେ ସେମାନଙ୍କୁ ବାଧ କରି କିଛି ଅନୁଭବ କରାଇବାକୁ ଉଦ୍ୟମ କରୁଥିବା, ତେବେ ପିଲାମାନେ ତାହାର ପ୍ରତିରୋଧ କରିବେ ଓ ଆମ ବାଧ କରିବାର ମାତ୍ରାଟି ବଢୁଥିବା ସଙ୍ଗେ ସଙ୍ଗେ ପ୍ରତିରୋଧଟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଥିବ ।

ପିଲାମାନେ ସବୁକାଳେ ସେହି ପିଲା ହିଁ ରହିବେ ଏବଂ ସେମାନଙ୍କର ଆଗ୍ରହକୁ ଉନ୍ମେଷଣା ଆଣି ଦେଉଥିବା କ୍ରିୟାଶୀଳତା ଗୁଡ଼ିକ ହିଁ ଅନ୍ୟ ସବୁକିଛି ଅପେକ୍ଷା ସେମାନଙ୍କୁ ଆଗ ସନ୍ତୋଷ ଆଣି ଦେଉଥିବ । କେତେକ ଶିକ୍ଷକ ମତ ଦିଅନ୍ତି ଯେ, ପିଲାମାନଙ୍କୁ କର୍ମରତ କରି ରଖିବାରେ ଆଗ୍ରହକୁ ବଜାୟ ରଖିବାକୁ ହିଁ କଦାପି ଏକ ନିର୍ଭରଯୋଗ୍ୟ ସାଧନ ହିସାବରେ ବ୍ୟବହାର କରି ହେବନାହିଁ ଏବଂ ତେଣୁ ଏହି କ୍ଷେତ୍ରରେ ଆମକୁ ଅଧିକ ନିର୍ଦ୍ଦିଷ୍ଟ ଭାବରେ ସଂଜ୍ଞାଟିକୁ ବୁଝିବା ଅବଶ୍ୟ ଉଚିତ ହେବ । ପିଲାମାନଙ୍କ ମଧ୍ୟରେ କ'ଣ ସବୁ ପ୍ରକୃତରେ ଆଗ୍ରହର

ଜାଗୃତି ଘଟାଇଥାଏ, - ସେମାନଙ୍କର ଯେଉଁସବୁ କର୍ମପ୍ରତି ପ୍ରବୃତ୍ତି ରହିଥାଏ ଅଥବା ସେହି କର୍ମଟିରୁ ସେମାନଙ୍କୁ ଯେଉଁ ଫଳଟି ମିଳିବାକୁ ଯାଉଥାଏ, - ଆମକୁ ସର୍ବପ୍ରଥମେ ଏହି ଉଭୟ ମଧ୍ୟରେ ରହିଥିବା ପାର୍ଥକ୍ୟଟିକୁ ବୁଝିବାକୁ ହେବ । ଏପରି ଅନେକ ଆଗ୍ରହ ଉଦ୍ରେକ କରୁଥିବା ବିଷୟମାନ ରହିଛି ଯେଉଁଗୁଡ଼ିକ କି ଆଦୌ କୌଣସି ଶ୍ରମ ଆବଶ୍ୟକ କରନ୍ତିନାହିଁ । ଯଦି କେବଳ ଏହିପରି ଆଗ୍ରହ-ଉଦ୍ରେକକାରୀ କ୍ଷେତ୍ରରେ ହିଁ ପିଲାମାନଙ୍କର ଉଦ୍ୟମ ଏବଂ ଶକ୍ତିକୁ ନିୟୋଜିତ କରି ରଖାଯାଏ, ତେବେ ତାହା ଅଚିରେ ସେମାନଙ୍କର ଚରିତ୍ରବଳର କ୍ଷେତ୍ରଟି ନିମନ୍ତେ ବାଧକ ଭଳି କାର୍ଯ୍ୟ କରିବ । ବେଳେ ବେଳେ ତ କେତେ ଲୋକ ବ୍ୟାପାରଗୁଡ଼ିକୁ ଏକାବେଳେକେ ଏକ ହାସ୍ୟକର ଚରମଗାର ପର୍ଯ୍ୟନ୍ତ ମଧ୍ୟ ଲମ୍ବାଇ ନେଇଯାଆନ୍ତି : ଗୋଟିଏ ପକ୍କା ଆଳସ୍ୟପରାୟଣ ବ୍ୟକ୍ତି ନିମନ୍ତେ ଏକ " ଆଗ୍ରହ ଉତ୍ପାଦନ କରି ପାରିବାର କ୍ଷେତ୍ରଟିଏ ବାଛିଦେବା ଲାଗି ମଧ୍ୟ ଏକ ଉଦ୍ୟମ କରାଯାଏ ଏବଂ ଆଶା କରା ଯାଉଥାଏ ଯେ ସିଏ ତାହାରି ମଧ୍ୟରେ ପ୍ରକୃତରେ ନିମଗ୍ନ ହୋଇ ରହିଯିବ ଓ ଏହାଦ୍ୱାରା ତା'ର ସମସ୍ତ ଅଭାବ ଓ ଦୋଷ ନିଶ୍ଚୟ ଦୂର ହୋଇଯିବ । ଅନୁଭବରୁ ସ୍ପଷ୍ଟ ହୋଇ ଯାଇଛି ଯେ, ଅଳସ ବ୍ୟକ୍ତିମାନେ ସର୍ବଦା ମୁଖ୍ୟତଃ ସେହିସବୁ କ୍ଷେତ୍ରକୁ ହିଁ ପସନ୍ଦ କରିନିଅନ୍ତି, ଯେଉଁଠାରେ କି ଏକାଧିକ ଆଗ୍ରହ-ଉଦ୍ଦୀପନକାରୀ ଖେଳ ନିମନ୍ତେ ହିଁ ଦେଖିବାକୁ ମିଳେ, ମାତ୍ର ଆଗ୍ରହ-ଉଦ୍ଦୀପନକାରୀ କାର୍ଯ୍ୟ ବୋଲି କିଛି ନଥାଏ ।

ତେବେ ପିଲାମାନେ ବସ୍ତୁତଃ କେଉଁଭଳି କାର୍ଯ୍ୟଗୁଡ଼ିକରେ ଆଗ୍ରହୀ ହୋଇ ପାରିବେ ? କୌଣସି କାର୍ଯ୍ୟରେ ହିଁ ସ୍ୱତଃ ସେପରି କିଛି ନଥାଏ, ଯାହାକି ସେମାନଙ୍କର ଆଗ୍ରହକୁ ଉଦ୍‌ଘାଟିତ କରି ଆଣିବ । ଏପରି ଆଦୌ କଳ୍ପନା କରାଯାଇ ନପାରେ ଯେ, ଭଲିବଲ୍ ଖେଳିବା ପାଇଁ ବାହାରିଥିବା ପିଲାମାନେ ପାଖରେ ଥିବା ଗୋଟିଏ ଫୁଲର କିଆରୀ ବାଟରେ ଆସି ପହଞ୍ଚିଯିବେ ଓ ସେଠାରେ ମନ୍ଦା ଖୋଳିବାର କାମଟିଏ ବାକୀ ରହିଛି ବୋଲି ଦେଖି ଭଲିବଲ୍ ଖେଳକୁ ଭୁଲିଯାଇ କୋଡ଼ି କାଙ୍କ ଧରି ଆଗ ସେହି କାମଟିକୁ ଯେ କରିବେ, ଏକଥା କଦାପି ଘଟେ ନାହିଁ । ତଥାପି, ଭଲିବଲ୍ ଖେଳିବାଦ୍ୱାରା ପିଲାମାନଙ୍କର ଅନେକ ଅଧିକ ଶକ୍ତି ଖରଚ ହୁଏ, - ସାନ ଫୁଲକିଆରୀରେ ମନ୍ଦା ଖୋଳିବା ଅପେକ୍ଷା ଅନେକ ଅଧିକ ଶକ୍ତି । ମାତ୍ର, ବଲ୍ ଖେଳିବାଟା ସେମାନଙ୍କୁ ସନ୍ତୋଷ ଆଣିଦିଏ ଏବଂ ଫୁଲଗଛ ପାଇଁ ମନ୍ଦା ଖୋଳିଦେବାରୁ ସ୍ୱତଃ ସେପରି କୌଣସି ସନ୍ତୋଷ ପ୍ରାପ୍ତ ହୁଏନାହିଁ ।

ତେଣୁ ଶ୍ରମ କରିବାରେ ଆଗ୍ରହ ଏବଂ ଶ୍ରମ କରିବାରୁ ସନ୍ତୋଷ ଲାଭ କରିବା, - ଏଗୁଡ଼ିକୁ ଅର୍ଜନ କରାଯାଏ ଓ ଏମାନେ ପ୍ରକୃତରେ ବିକଶିତ ହୋଇ ଆସିଥାନ୍ତି । କୌଣସି ଶ୍ରମ କରିବାଦ୍ୱାରା ପ୍ରକୃତିର କୌଣସି କ୍ଷେତ୍ରରେ ଏକ ପ୍ରଭାବ ପକାଇବା ସମ୍ଭବ ହୁଏ, - ସେମାନଙ୍କର ଶ୍ରମଜନିତ ଆଗ୍ରହଟି ପ୍ରକୃତରେ ସେହିଭଳି ଏକ ଅନୁଭବରୁ ନିଷ୍ପନ୍ନ ହୋଇ ପାରୁଥିବା ଉଚିତ । ଶ୍ରମଦ୍ୱାରା ଶକ୍ତିକୁ ପ୍ରୟୋଗ କରି ଗୋଟିଏ ଗଛରୁ ଅଧିକ ଫସଲ ଆଦାୟ କରି ହୁଏ ବା କାଠ କିମ୍ବା ଧାତୁକୁ ମଧ୍ୟ ଗୋଟିଏ ଅଭିଳଷିତ ଆକାର ଦେଇହୁଏ । ବସ୍ତୁଗୁଡ଼ିକ ଉପରେ ନିଜର ଏକ ବଳ ତଥା ଶକ୍ତି ରହିଛି ବୋଲି ଗୋଟିଏ ଶିଶୁର ସଜ୍ଞାନତା ଯେତିକି ଅଧିକ ଗଭୀର ହୁଏ, ସମ୍ମୁଖୀନ ହେଉଥିବା ବାଧା ଏବଂ ଅସୁବିଧାଗୁଡ଼ିକୁ ଅତିକ୍ରମ କରିବାରେ ସିଏ ସେତିକି ଅଧ୍ୟବସାୟ ଏବଂ ଦୃଢ଼ତା ସହିତ ନିଜକୁ ନିୟୋଜିତ ବି କରିପାରେ ଏବଂ, ସିଏ ପ୍ରତିଦିନ କରୁଥିବା ସାଧାରଣ କାର୍ଯ୍ୟଗୁଡ଼ିକ ତାକୁ ସେତିକି ପରିମାଣରେ ଅଧିକ ଆଗ୍ରହୋଦ୍ଦୀପକ ମନେ ହୋଇଥାନ୍ତି । ଏହି ପ୍ରକାରର ଆଗ୍ରହକୁ ଜାଗୃତ କରି ଆଣିବାପାଇଁ ହିଁ ଛାତ୍ରମାନଙ୍କର ବୌଦ୍ଧିକ ତଥା ସଂବେଗଗତ ଅନୁଭବର ପରିସରଟି ମଧ୍ୟରେ ଶ୍ରମକୁ ଗୋଟିଏ କାର୍ଯ୍ୟକ୍ରମ ହିସାବରେ ଗ୍ରହଣ କରିନିଆ ଯାଇଥାଏ । (୩,୧୬)

ଶ୍ରମ ପ୍ରତି ଜଣେ ବ୍ୟକ୍ତିର ଆକର୍ଷଣ, - ତାହା ବହୁବିଚିତ୍ର ଅନେକ ଅଭିପ୍ରାୟ ହେତୁ ଘଟିଥାଏ । ହୁଏତ କୌଣସି ଏକ ଯୋଜନା କାର୍ଯ୍ୟକାରୀ କରିବାକୁ ରହିଥାଏ, ଏକ ବାସ୍ତବ ଲାଭ ବା ଫଳ ସେଥିରୁ ପ୍ରାପ୍ତ ହେବ ବୋଲି ପ୍ରତ୍ୟାଶାଟିଏ ଥାଏ, ଗୋଷ୍ଠୀଜୀବନ ନିମନ୍ତେ ଏକ କର୍ତ୍ତବ୍ୟ ସମ୍ପାଦନ କରିବା ବିଷୟରେ ସଜ୍ଞାନତା ଥାଏ, କୌଣସି ପ୍ରକୃତରେ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ଯାଉଥିବାରୁ ଏକ ଦାୟିତ୍ୱବୋଧ ରହିଥାଏ ଓ ଶେଷରେ କର୍ମାନୁଷ୍ଠାନର କ୍ଷେତ୍ରଟିରେ ଅର୍ଥାତ୍ ଶ୍ରମର ସେହି ପ୍ରକ୍ରିୟାଟି ଦ୍ୱାରା ନୂତନ କିଛି ସମ୍ଭବ କରିବାର ବାସନା ରହିଥାଏ, - ପୂର୍ବରୁ ଏଗୁଡ଼ିକରୁ ଯେଉଁ ଆନନ୍ଦର ଆସ୍ୱାଦନ ପ୍ରାପ୍ତ ହୁଏ, - ଏହି ସବୁଗୁଡ଼ିକ ହିଁ ସେହି ଆକର୍ଷଣର କାରଣ ହୋଇପାରେ । ସେହି ଯାବତୀୟ ଅଭିପ୍ରାୟର ଯଥାସମ୍ଭବ ଏକ ପୂର୍ଣ୍ଣ ସଦୁପଯୋଗ କରି ଆମେ ଆମ ବିଦ୍ୟାଳୟରେ ଏହି ଗୋଟିକ ବିଷୟରେ ସୁନିଶ୍ଚିତ ହୋଇ ରହିଥିଲୁ ଯେ, ଏହି କ୍ଷେତ୍ରରେ ଆମ ନିଜର ବିଚାରଟି ହେଉଛି ସବୁଠାରୁ ଅଧିକ ଶକ୍ତିଶାଳୀ । ଅନ୍ତର୍ନିହିତ ସେହି ବିଚାରଟି ବ୍ୟତୀତ ଆମ ଜୀବନ କୌଣସି କ୍ରିୟାଶୀଳ ପ୍ରୟାସ କେବେହେଲେ ସମ୍ଭବ ହେବନାହିଁ । ଏହି ସନ୍ଦର୍ଭରେ ଅବଶ୍ୟ ମନେ

ରହିବା ଉଚିତ ଯେ, ଜୀବନ ସମ୍ବନ୍ଧରେ ଗୋଟିଏ ଶିଶୁର ଯେତେ ଅଳ୍ପ ଅଭିଜ୍ଞତା ରହିଥିବ ଏବଂ ତା'ର ଶାରୀରିକ ଶକ୍ତି ମଧ୍ୟ ଯେତେ କମ୍ ହୋଇଥିବ, ତା' ଭିତରେ ସେହି ବିଚାରକଳ୍ପନାଟି ମଧ୍ୟ ସେତେ ଅଧିକ ପରିମାଣରେ ପିଲାଳିଆ ଓ ହାଲୁକା ହୋଇ ରହିଥିବ । ସିଏ ସବୁକିଛିକୁ ସତେଯେପରି ପ୍ରାୟ ଏକ ଖେଳ ପରି ଗ୍ରହଣ କରୁଥିବ । ତେଣୁ, ଶ୍ରମର ପରିଣାମଟି ସର୍ବଦା ଯଥାସମ୍ଭବ ଅଧିକ ବାସ୍ତବିକ, ସୁସ୍ପଷ୍ଟ ତଥା ମୂର୍ତ୍ତ ହୋଇ ରହିଥିବା ଉଚିତ ହେବ । (୩,୧୭)

ଶ୍ରମକୁ ଭଲ ପାଇବା ହେଉଛି ପ୍ରକୃତରେ ଗୋଟିଏ ନୈତିକ ଗୁଣ, ଏକ ସମଷ୍ଟି ମଧ୍ୟରେ ହିଁ ଯାହାର ଅଭିବୃଦ୍ଧି ସାଧନ କରିବା ସମ୍ଭବ ହେବ । ଗୋଷ୍ଠୀ ବା ସମଷ୍ଟି ଭିତରେ ଶ୍ରମ ପ୍ରତି ଯେତିକି ସମ୍ମାନ ରହିଥିବ, ବିଦ୍ୟାଳୟର ପ୍ରତ୍ୟେକ ଶିଶୁର ଚରିତ୍ରଗଠନ ମଧ୍ୟ ସେତିକି ଅଧିକ ଫଳଦାୟକ ହୋଇପାରିବ । (୩,୧୮)

କୌଣସି ଉତ୍ପାଦନକ୍ଷମ ଶ୍ରମର ସାମାଜିକ ମହତ୍ତ୍ୱଟି ମଧ୍ୟ ସଂପୃକ୍ତ କାର୍ଯ୍ୟକ୍ରମଟି କେତେ ପରିମାଣରେ ସମ୍ପାଦିତ ହୋଇପାରୁଛି ତଥା ସମ୍ପୂର୍ଣ୍ଣତା ଲାଭ କରୁଛି, ତାହାରି ଉପରେ ନିର୍ଭର କରିବ । ଏପରି ବିଦ୍ୟାଳୟମାନେ ଅଛନ୍ତି, ଯେଉଁଠାରେ କି ପିଲାମାନଙ୍କୁ ଏକାବେଳେକେ ବହୁତ କାର୍ଯ୍ୟ କରିବା ନିମନ୍ତେ ଦିଆ ଯାଇଥାଏ ସତ, ସେଗୁଡ଼ିକର ଶିକ୍ଷାଗତ ମୂଲ୍ୟ ଆବଶ୍ୟକତା ଦୃଷ୍ଟିରୁ ଅତ୍ୟନ୍ତ କମ୍ ହୋଇ ରହିଥାଏ, କାରଣର କର୍ମଯୋଜନା ଗୁଡ଼ିକୁ ଶେଷ ପର୍ଯ୍ୟନ୍ତ ଆଦୌ ସମ୍ପନ୍ନ କରା ଯାଏନାହିଁ । ଯଥେଷ୍ଟ କାମ କରିବା ଲୋକ ନାହାନ୍ତି ବୋଲି ଅନୁଭବ କଲେ ବିଦ୍ୟାଳୟର ପିଲାମାନେ ସେହି କାର୍ଯ୍ୟରେ ଆସି ଅଂଶଗ୍ରହଣ କରନ୍ତି, ଅର୍ଥାତ୍ ସେମାନେ ଏକ " ସଂକଟବେଳେ ସାହାଯ୍ୟ କରିବାଲାଗି'' ଆସନ୍ତି । ଜଣେ ବ୍ୟକ୍ତି ପାଇଁ ଖାଦ୍ୟ ଯେତିକି ଆବଶ୍ୟକ, ଶ୍ରମ କରିବା ମଧ୍ୟ ସେତିକି ଆବଶ୍ୟକ, ତେଣୁ ତାହା ନିୟମିତ ଭାବରେ ହେବା ଉଚିତ, ବିଧିବଦ୍ଧ ଭାବରେ ମଧ୍ୟ ହେଉଥିବା ଉଚିତ । ପାଭ୍‌ଲିଶ୍ ବିଦ୍ୟାଳୟର ଶିକ୍ଷକବୃନ୍ଦ ସର୍ବଥା ଏହି ବିଷୟଟି ସମ୍ପର୍କରେ ସୁନିଶ୍ଚିତ ହୋଇ ରହିଥାନ୍ତି ଯେ, ସେଠାରେ ରହିଥିବା ପିଲାମାନେ କେବଳ ସେମାନେ ସେହି ବିଦ୍ୟାଳୟରେ ଅତିବାହିତ ହେଉଥିବା ବର୍ଷମାନଙ୍କରେ ହିଁ ମୋଟେ କର୍ମରତ ରହିବେନାହିଁ, ମାତ୍ର ସେହି ଆରବ୍ଧ କର୍ମପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ ହେବା ପର୍ଯ୍ୟନ୍ତ କାର୍ଯ୍ୟ କରିବେ ତଥା ସେଗୁଡ଼ିକର ସକଳ ପ୍ରକ୍ରିୟାରେ ଅବଶ୍ୟ ରହିଥିବେ । ସେହି କର୍ମର ଅନ୍ତିମ ଲକ୍ଷ୍ୟଗୁଡ଼ିକୁ ଉପଲବ୍ଧି କରିବାର ବେଳଟିଠାରୁ ସେଇଟିରୁ ଲବ୍ଧ

ଫଳଗୁଡ଼ିକରେ ପୂର୍ଣ୍ଣ ସନ୍ତୋଷ ଅନୁଭବ କରିବା ପର୍ଯ୍ୟନ୍ତ । (୩,୧୯)

ଯଦି କୌଣସି ଛାତ୍ର ଅଧିକ ଦୀର୍ଘ ସମୟ ଆବଶ୍ୟକ କରୁଥିବା ଏକ କର୍ମ ଆରମ୍ଭ କରିଥାଏ ତଥା ଦୈନିକ ସେଇଟିକୁ ଧାପେ ଧାପେ କରି ସମ୍ପନ୍ନ କରିବାଦ୍ୱାରା କିଛି ନିର୍ଦ୍ଦିଷ୍ଟ ଫଳ ମଧ୍ୟ ପ୍ରକୃତରେ ପାଉଥାଏ, ତେବେ ଏପରି ଗୋଟିଏ ସମୟ ମଧ୍ୟ ପହଞ୍ଚିବ, ଯେତେବେଳେ କି ସେଇଟିପ୍ରତି ତା'ର ଏକ ଆଗ୍ରହ ମଧ୍ୟ ନିଷ୍ପନ୍ନ ହୋଇ ଆସିବ । କେବଳ ଶିକ୍ଷକଙ୍କର ଉତ୍ସାହଦାନ ଦ୍ୱାରା ଯେ ତାହା ହୋଇଥିବ, ସେକଥା ନୁହେଁ, ନିଜ ଭିତରର କୌଣସି ଇଚ୍ଛା ଓ ପ୍ରେରଣା ଦ୍ୱାରା ସିଏ ତାହା ଅନୁଭବ କରୁଥିବ । ଏକ ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟର ପ୍ରାପ୍ତି ନିମନ୍ତେ କରା ଯାଉଥିବା ଗୋଟିଏ କର୍ମଯୋଜନାରୁ ହିଁ ଏକାନ୍ତ ଅପରିହାର୍ଯ୍ୟ ଭାବରେ ସେହି ଫଳଟି ପ୍ରାପ୍ତ ହେବ । ହଁ, ଯଦି ଭିତରୁ ଏକ ଇଚ୍ଛା ଏବଂ ପ୍ରେରଣା ନିଷ୍ପନ୍ନ ହୋଇ ଆସିବ, ତେବେ ତାହାକୁ ହିଁ ସେହି କ୍ଷେତ୍ରରେ ଗୋଟିଏ ଶକ୍ତିଶାଳୀ ଘଟଣା ବୋଲି ଅବଶ୍ୟ କୁହାଯିବ, - ସେଥିରୁ ଏକ ଆତ୍ମ-ଶୃଙ୍ଖଳା ମଧ୍ୟ ଜନ୍ମଲାଭ କରିବ, - କେବଳ ଗୋଟିଏ ଦୀର୍ଘମିଆଦୀ କର୍ମର ସମ୍ପାଦନ କରୁଥିବାର ପ୍ରକ୍ରିୟାରେ ହିଁ ତାହାର ଅନୁଶୀଳନ ସମ୍ଭବ ହେବ । (୩,୨୦)

ଆମେ ଆମ ଶିକ୍ଷାପ୍ରକ୍ରିୟାଟିର ଯୋଜନା କରିବାରେ ପ୍ରକୃତରେ ଦୀର୍ଘ ସମୟ ଖର୍ଚ୍ଚ କରିଥାଉ, ଯେପରିକି ପ୍ରତ୍ୟେକ ପିଲା ତା' ନିଜ ଶ୍ରମଗୋଷ୍ଠୀର ଜଣେ ସଦସ୍ୟ ହିସାବରେ ଏକ ବହୁମୁଖୀ ଦାୟିତ୍ୱପୂର୍ଣ୍ଣ କର୍ମଟିକୁ ଆରମ୍ଭରୁ ଶେଷଯାଏ ହିଁ ସମ୍ପାଦନ କରିପାରିବ ।

ହଠାତ୍ କୌଣସି "ଜରୁରୀ ଅବସ୍ଥା'' ଆସି ପହଞ୍ଚିଲା ଓ ତେଣୁ କାର୍ଯ୍ୟଟିଏ କରିବାକୁ ହେବ, - ଏପରି ଖାମଖିଆଲି ଓ ଅନିଶ୍ଚିତ ଭାବରେ ଆଦୌ କୌଣସି କର୍ମଯୋଜନା ଆଦୌ ନକରିବାକୁ ହିଁ ସର୍ବବିଧ ପ୍ରୟାସ କରିବାକୁ ହେବ । କର୍ମ ତଥା ଶ୍ରମରେ ଆଗ୍ରହ ବୃଦ୍ଧି କରିବାର ଯାବତୀୟ ଶିକ୍ଷାଗତ ପ୍ରୟାସରେ ଏହି ନିୟମଟି ଅବଶ୍ୟ ଏକ ଅପରିହାର୍ଯ୍ୟ ନିୟମ ହୋଇ ରହିଥିବା ଉଚିତ । (୩,୨୧)

ଶ୍ରମର ଉଦାତ୍ତ ଲକ୍ଷ୍ୟଟି ବିଷୟରେ ଜଣେ ଛାତ୍ର ଯେତେ ଅଧିକ ସଜ୍ଞାନ ହୋଇପାରେ, ତନଖି କରୁଥିବା କାର୍ଯ୍ୟଟିକୁ ବାହାରୁ କେହି ତତ୍ତ୍ୱାବଧାନ କରି ଦେଖିବା ପ୍ରକୃତରେ ସେତିକି କମ୍ ଆବଶ୍ୟକ ହୁଏ ଏବଂ ସେତିକି ଅଧିକ ଉଲ୍ଲେଖନୀୟ ଭାବରେ ତା'ର ନିଜ ବିବେକଟି ହିଁ ତାକୁ ସେହି କାର୍ଯ୍ୟଟି ପାଇଁ

ଆବଶ୍ୟକ ପ୍ରେରଣା ଯୋଗାଇ ଦେଉଥାଏ । (୬,୯୯)

ପିଲାମାନେ ମାନସିକ ଶିକ୍ଷଣର କ୍ଷେତ୍ରରେ ଅଧିକ ପ୍ରୟାସ ଏବଂ ପରିଶ୍ରମ କରନ୍ତୁ, ସେମାନଙ୍କୁ ସେଥିପାଇଁ ବାଧ କରିବା ବହୁତ କଷ୍ଟକର ହୋଇଥାଏ । କିନ୍ତୁ, ଶାରୀରିକ କୌଣସି ଶ୍ରମରେ ନିୟୋଜିତ ହୋଇ ରହିବାକୁ ବାଧ୍ୟ କରିବା, ସର୍ବଥା ଅଧିକ ସହଜ ହୁଏ । ଶରୀରର ଶ୍ରମ ଏବଂ ମାନସିକ ଶ୍ରମ, - ଉଭୟଙ୍କୁ ଏକତ୍ର ଯୋଡ଼ି ରଖିପାରିଲେ ନିର୍ଧୂମ ଅତିଅଳସୁଆ ଓ ସମ୍ପୂର୍ଣ୍ଣ ଭାବରେ ଅବହେଳିତ ଛାତ୍ରମାନଙ୍କ ଠାରେ ମଧ୍ୟ ତାହା ଶ୍ରମ ପାଇ ଏକ ଶ୍ରଦ୍ଧା ବୃଦ୍ଧି କରି ଆଣିବାରେ ଅବଶ୍ୟ ସହାୟକ ହୋଇଥାଏ । ଯେଉଁମାନଙ୍କର ପିତାମାତା ସେମାନଙ୍କ ଦ୍ୱାରା କୌଣସି ଶ୍ରମ କରାଇ ପାରିନଥିଲେ, ସେମାନଙ୍କ କ୍ଷେତ୍ରରେ ମଧ୍ୟ ତାହା ସମ୍ଭବ ହୁଏ । ଏଭଳି ପିଲାଙ୍କୁ ବାଟରେ ଆଣି ପକାଇବାକୁ ହେଲେ ଆମେ ସେମାନଙ୍କୁ ପ୍ରଥମେ କିଛି ଶରୀରଶ୍ରମ କରିବାକୁ ଦେଇଥାଉ, - ଏଭଳି ଅଭିପ୍ରାୟଟିଏ ପୋଷଣ କରି ଦେଇଥାଉ ଯେ ସେମାନେ ସେହି କାର୍ଯ୍ୟଟି ମଧ୍ୟରେ ସେମାନଙ୍କର ବୁଝିବାଶକ୍ତିକୁ ବଢ଼ାଇବା ନିମନ୍ତେ ଓ ପ୍ରାକୃତିକ ଶକ୍ତିଚୟ ଉପରେ ବିଜୟ ହାସଲ କରିବାଲାଗି ବାଟଟିଏ ପାଇଯିବେ । ହୁଏତ , ପ୍ରଥମ ପର୍ଯ୍ୟାୟରେ ଏକଥାଟି ଏକ ଅତ୍ୟନ୍ତ କ୍ଷୁଦ୍ର ପରିଧିମାତ୍ର । ଭିତରେ ହିଁ ସମ୍ଭବ ହୋଇପାରେ । ଶରୀରଶ୍ରମ ସାମାଜିକ ତଥା ବୌଦ୍ଧିକ ଏକାଧିକ ଲକ୍ଷ୍ୟ ହାସଲ କରିବାର ଏକ ଉପାୟ ବୋଲି ଜଣେ ବ୍ୟକ୍ତି ବୁଝିବାକୁ ଆରମ୍ଭ କଲେ ଆମେ ସେଥିରୁ ବୁଝିପାରିବା ଯେ, ସିଏ ତା' ନିଜର ଆଳସ୍ୟଟିକୁ ମଧ୍ୟ ଡେ଼ଇଁଯାଇ ପାରିଛି ଏବଂ ତା' ଜୀବନରେ କର୍ମଠତାର ବୃଦ୍ଧି ଘଟିବାର ସମ୍ଭାବନାଟି ମଧ୍ୟ କ୍ରମେ ନିକଟବର୍ତ୍ତୀ ହୋଇ ଆସିଲାଣି ।(୧୧,୩୫୮)

ଶାରୀରିକ ଶ୍ରମରେ ଏକ ଉଦାତ୍ତକାରୀ ପ୍ରଭାବ ରହିଥାଏ ବୋଲି ଆମେ ଦୃଢ଼ ଭାବରେ ବିଶ୍ୱାସ କରୁ । ଯଦି ଗୋଟିଏ ପିଲା ଅନ୍ୟମାନଙ୍କ ସକାଶେ କୌଣସି କାର୍ଯ୍ୟ କରିବାରେ ନିଜ ହୃଦୟରେ କାଣିଚାଏ ଅଂଶ ବି ପ୍ରକୃତରେ ଦେଇପାରିଛି ଏବଂ ସେହି କାର୍ଯ୍ୟରୁ କିଛି ଆନନ୍ଦ ପାଇଛି, ତେବେ ସିଏ ଆଉ କେବେହେଲେ କଟୁ ସ୍ୱଭାବର ହୋଇ ପାରିବନାହିଁ, ଜଣେ ଆତ୍ମକେନ୍ଦ୍ରୀ ବ୍ୟକ୍ତି ହୋଇ ରହିବାକୁ ତାକୁ କଦାପି ଭଲ ଲାଗିବନାହିଁ । ତେଣୁ, ମୁଁ ସବୁଠାରୁ ଅଧିକ ଅସାଧ୍ୟ ତଥା ବଦଳିଯିବା ପାଇଁ ଅମଙ୍ଗ ପିଲାମାନଙ୍କୁ ହାତ ଧରି ନିଜ ପାଖକୁ ନେଇଯାଏ, ସେମାନଙ୍କୁ ବିଦ୍ୟାଳୟର ଅଙ୍ଗୁରବଗିଚା ଭିତରକୁ ନେଇଯାଇ କହେ: "ଏଠାରେ

ଆମେ ଏକାଠି ହୋଇ କିଛି କାର୍ଯ୍ୟ କରିବା, - ପୂରା ଗୋଷ୍ଠୀଟି ସହିତ ମିଶି କିଛି କରିବା ।'' ଏହିପରି ଭାବରେ ଏକାଠି କାର୍ଯ୍ୟ କରିବା ଆରମ୍ଭ ହୋଇଗଲେ, ସେହି ପିଲାଟି ଯେତେ "ଅସମ୍ଭବ'' ବୋଲି ପ୍ରଥମେ ମନେ ହୋଇଥିଲେ ମଧ୍ୟ, ତା' ଭିତରେ ଶ୍ରମ ପାଇଁ ଏକ ଇଚ୍ଛୁକତା ତଥାପି ଜନ୍ମଗ୍ରହଣ କରିବାକୁ ଆରମ୍ଭ କରେ । ପିଲାଟି ସ୍ୱୟଂ ଅସାଧ୍ୟ ଥିଲା ବୋଲି ଯେ ଆଗରୁ ଅମଙ୍ଗ ଥିଲା ସେକଥା ଆଦୌ ନୁହେଁ; ମାତ୍ର, ପ୍ରକୃତରେ ଏପରି ଏକ ଅବସରର ଅପେକ୍ଷା ରହିଥିଲା, ଯେତେବେଳେ କି କେହି ଜଣେ ତା' ହାତ ଧରି ନେଇଯିବାକୁ ଆସିବ ଏବଂ ତା' ଜୀବନରେ ରହିଥିବା ଜଟିଳତା ଏବଂ ଅନୁଚିତ ଭାବରେ ଗ୍ରହଣ କରା ଯାଇଥିବା ପଦକ୍ଷେପମାନଙ୍କରେ ତା'ର ନିଜ ଭୂମିକାଗୁଡ଼ିକୁ ହୃଦୟଙ୍ଗମ କରିବାରେ ତା'ର ସହାୟତା କରିପାରିବ । ତଥାପି, ଏହି ସବୁକିଛିକୁ ହାସଲ କରିବାକୁ ହେଲେ, ଶ୍ରମରେ ହିଁ ଆଗ୍ରହଗୁଡ଼ିକୁ ପ୍ରୋତ୍ସାହିତ କରି ଆଣିବା ହେଉଛି ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ କଥା । ତେବେ, ଏପରି ଗୋଟିଏ ଦିନ ଆସି ପହଞ୍ଚିବ, ଯେତେବେଳେ କି ସେହି ଅସାଧ ତଥା "ଏକାନ୍ତ ଅମଙ୍ଗ'' ଛାତ୍ରଟି ତା' ସ୍ୱଶ୍ରମର ଫଳଗୁଡ଼ିକୁ ଅନ୍ୟମାନଙ୍କୁ ବଢ଼ାଇଦେଇ ପାରିବ ଓ ସେପରି କରି ଆନନ୍ଦ ମଧ୍ୟ ଅନୁଭବ କରୁଥିବ । ସେହି ମୁହୂର୍ତ୍ତରୁ ହିଁ ସେ ଜଣେ "ଯୋଗ୍ୟ ବ୍ୟକ୍ତି''ରେ ରୂପାନ୍ତରିତ ହୋଇଯିବ । (୯,୭୬)

ସାନ ବଡ଼ ଆମର ସବୁ ପିଲା ଯଥାସମ୍ଭବ ଅଧିକ ସମୟ ନିମନ୍ତେ ଶରୀରଶ୍ରମ କରିବେ, ତାହାହିଁ ଆମର ଲକ୍ଷ୍ୟ ହୋଇ ରହିଛି । ସେମାନଙ୍କ ସହିତ ଜଣେ ବୟସ୍କ ଅବଶ୍ୟ ରହିଥିବେ, ଯିଏକି ଶରୀରଶ୍ରମକୁ ସୁଖ ଏବଂ ଆନନ୍ଦର ଏକ ଉତ୍ସ ବୋଲି ଅନୁଭବ କରୁଥିବେ । ଅନ୍ୟମାନଙ୍କ ସହିତ ଏକତ୍ର କାର୍ଯ୍ୟ କରି ଏକତ୍ର ଯେଉଁ ଆନନ୍ଦମୟ ଅଭିଜ୍ଞତାଟି ପ୍ରାପ୍ତ ହୁଏ, ତାହାକୁ ହିଁ ଯାବତୀୟ ଆତ୍ମଶିକ୍ଷଣର ସର୍ବମୂଳ ଉପାଦାନ ବୋଲି କୁହାଯିବ । ଯିଏ ସେହି ଭାବଟିକୁ ଶୈଶବ କାଳରେ ଗଭୀର ଭାବେ ଅନୁଭବ କରିଥାଏ, ସିଏ ସମାଜର ଚକ୍ଷୁରେ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ହୋଇ ରହିବାର ଏକ ଆସ୍ପୃହା ମଧ୍ୟ ପୋଷଣ କରିଥାଏ । ଏହି ଅର୍ଥରେ, ଆତ୍ମଶିକ୍ଷଣ ହିଁ ନିଜ ସମାଜର ସାଂସ୍କୃତିକ ତଥା ନୈତିକ ଜୀବନରେ ଅଂଶଗ୍ରହଣ କରିବାର ଏକ କ୍ରିୟାଶୀଳ ମାର୍ଗରେ ହିଁ ପରିଣତ ହୋଇ ଯାଇଥାଏ । (୮,୧୪)

ଶରୀରଶ୍ରମର କାର୍ଯ୍ୟକ୍ରମରେ ଜଣେ ଶିକ୍ଷକ ମାର୍ଗଦର୍ଶନ କରାଉ ଥିବାର ଅର୍ଥ ହେଉଛି ଯେ, ପ୍ରେରଣା ତଥା କର୍ମନିମଗ୍ନତାର ଏକ ବାସ୍ତବ ଉପସ୍ଥିତି କର୍ମ

ସମୟରେ ତା'ର ପାଖେ ପାଖେ ରହିଛି ବୋଲି ପିଲା ସର୍ବଦା ସଜ୍ଞାନ ହୋଇ ରହିଥିବ । ଯଦି ଶିକ୍ଷକର କାର୍ଯ୍ୟଟି ପିଲାଟି ନିମନ୍ତେ ଏକ ମଡ଼େଲ୍ ପରି ହୋଇ ରହିଥିବ ଏବଂ ତାକୁ ପ୍ରଭାବିତ କରି ପାରୁଥିବ, ତେବେ ଶିକ୍ଷକ ଅବଶ୍ୟ ତା'ର ଶ୍ରଦ୍ଧାଭାଜନ ବି ହେବ । ଅଭିଜ୍ଞତା କହୁଛି ଯେ, ପୃଥିବୀରେ ଏପରି ଏକ ଅତ୍ୟଧିକ ପରିମାଣର ଉଦାସୀନତା ଅଥବା ଉପେକ୍ଷାଚରଣ କେଉଁଠି ହେଲେ ନାହିଁ ଯାହାକି ପୂର୍ଣ୍ଣ ଉତ୍ସାହ ସହିତ ନିଜର କର୍ମରେ ମଜ୍ଜି ରହିଥିବା ଜଣେ ଶିକ୍ଷକ ଅଥବା ଅଧିକବୟସ୍କ ଛାତ୍ରର ସର୍ଜନାତ୍ମକ ପ୍ରେରଣା ସତ୍ତ୍ୱେ ତଥାପି ଆଦୌ ଟଳୁ ନଥିବ ଏବଂ ଯେଉଁଭଳି ସେହିଭଳି ହୋଇ ରହିଥିବ । ଗୋଟିଏ ପିଲା ସବୁକିଛି ପ୍ରତି ବିରାଗ ପ୍ରଦର୍ଶନ କରୁଥିବାର ଦେଖିଲେ, ଆଦୌ କୌଣସିଥିରେ ତା'ର ଆଗ୍ରହ ନଥିବାର ଆଭାସ ପାଇଲେ, ସେହି କଷ୍ଟସାଧ ପିଲାଟି ପାଖକୁ ଆମ ଭିତରୁ କେଉଁ ଶିକ୍ଷକ ଅଥବା ଅଧିକ ବୟସର ଛାତ୍ରଟି ଯିବ ବୋଲି ଆମେ ଆଲୋଚନା କରିବାକୁ ଆରମ୍ଭ କରୁ । ଠିକ୍ ସେହି କ୍ଷେତ୍ରରେ ହିଁ ଗୋଟିଏ ପିଲା ପ୍ରତି ଏକ ବ୍ୟକ୍ତିମାଧମର ପ୍ରୟୋଗ କରାଯାଇଥାଏ । ପ୍ରତ୍ୟେକ ଶିକ୍ଷକ, ବିଦ୍ୟାଳୟର ପ୍ରମୁଖ ବା ଶିକ୍ଷାସମ୍ବନ୍ଧୀ ନିର୍ଦ୍ଦେଶକଙ୍କ ପାଖରେ ସମସ୍ୟାମାନ ରହିଥିବା କତିପୟ ପିଲାଙ୍କର ତାଲିକାଟିଏ ରହିଥାଏ, ଯେଉଁମାନଙ୍କ ଘରେ ସମସ୍ୟାମାନ ରହିଥାଏ, ଓ ଯେଉଁଠାରେ ସେମାନେ ପିତାମାତାଙ୍କ ଠାରୁ ସେପରି କୌଣସି ସ୍ନେହଶ୍ରଦ୍ଧା ପାଇ ପାରିନଥାନ୍ତି । ସର୍ବପ୍ରଥମେ ଏହି ପିଲାମାନଙ୍କର ହୃଦୟ ମଧ୍ୟକୁ ଯେକୌଣସି ପ୍ରକାରେ ଏକ ବାଟର ସନ୍ଧାନ କରି ବାହାର କରିବାକୁ ପଡ଼େ, - ବାଟଟି ପ୍ରକୃତରେ ମିଳେ, କାରଣ ଏକତ୍ର କାର୍ଯ୍ୟ କରିବାର ମାଧମରେ ଆମେ ସେମାନଙ୍କର ସଙ୍ଗୀ ହିଁ ହୋଇଯାଉ ; ଆମର ଯୋଜନାମାନ ଗୋଟିଏ ହୋଇ ରହିଥାନ୍ତି, ଲକ୍ଷ୍ୟ ଏକା ରହିଥାଏ ଏବଂ ପ୍ରକଳ୍ପଗୁଡ଼ିକରେ ଆମେ ସମସ୍ତେ ହିଁ ସଂପୃକ୍ତ ହୋଇ ରହିଥାଉ । (୧୧,୩୫୪)

ପିଲାମାନେ ସର୍ବଦା ଅତ୍ୟନ୍ତ ଗଭୀର ତଥା ଶକ୍ତିଶାଳୀ ଭାବରେ ଏହି ସତ୍ୟଟି ଦ୍ୱାରା ପ୍ରଭାବିତ ହୋଇ ରହିଥାନ୍ତି ଯେ, କୌଣସି ପ୍ରକାର ବିଶେଷ କାର୍ଯ୍ୟ କରୁଥିବା ସମୟରେ ତାହା ସେମାନଙ୍କୁ ତଥା ସେମାନଙ୍କର ଶିକ୍ଷକମାନଙ୍କୁ ସମାନ ପରିମାଣରେ ତଲ୍ଲୀନ କରି ରଖିଥାଏ । ଏହିଭଳି କାର୍ଯ୍ୟଟିଏ କରୁଥିବା ସମୟରେ ସେମାନେ ଆପଣାର ହୃଦୟକୁ ଖୋଲି ଦେଇଥାନ୍ତି ଏବଂ ନିଜ ଶିକ୍ଷକମାନଙ୍କର ସଙ୍ଗୀ ଏବଂ ସାଥୀରେ ପରିଣତ ହୋଇ ଯାଆନ୍ତି । ସାନ ସାନ କାଚଘରେ ଆମ ପ୍ରାଥମିକ-ଶ୍ରେଣୀ ଶିକ୍ଷକମାନେ ପିଲାମାନଙ୍କ ସହିତ ଏକାଠି ମିଶି ଫୁଲଗଛ ଲଗାନ୍ତି ।

ଯେତେବେଳେ ଏହି ପିଲାମାନେ ବିଦ୍ୟାଳୟରେ ନିଜର ସର୍ବପ୍ରଥମ ଶରତକାଳଟିକୁ କଟାଉ ଥାଆନ୍ତି । ବସନ୍ତଋତୁରେ ଆମେ ଶିକ୍ଷକମାନେ ପିଲାମାନଙ୍କ ସହିତ ଏକାଠି ହୋଇ ବାହାରେ ମଧ୍ୟ ଫୁଲଗଛ ଗୁଡ଼ିକୁ ଲଗାଉ । ସେଗୁଡ଼ିକର ଲାଳନପାଳନ କରୁ, ଆହୁରି କେତେ କେତେ ଗଛମାନ ଲଗାଉ ଏବଂ ସେଗୁଡ଼ିକର ସୌନ୍ଦର୍ଯ୍ୟ ଦେଖି କେଡ଼େ ଖୁସୀ ହୋଇଥାଉ । ଶିକ୍ଷକମାନେ ସାଧାରଣ ଗଛମାନଙ୍କରେ ଫଳଗଛର କଲମା କରି ଜାଣିଛନ୍ତି, ଗଛଗୁଡ଼ିକୁ ଗୋଟିଏ ଜାଗାରୁ ନେଇ ଆହୁରି ଜାଗାଏ ରୋପଣ କରନ୍ତି ଏବଂ ଅତ୍ୟନ୍ତ ଆକର୍ଷକ ଫୁଲକିଆରୀମାନ ସମ୍ଭବ କରି ପାରନ୍ତି, ଏହିସବୁ ଘଟଣା ପିଲାମାନଙ୍କୁ ସର୍ବଦା ଅତ୍ୟନ୍ତ ଗଭୀର ଭାବରେ ପ୍ରଭାବିତ କରି ରଖିଥାଏ । ଏହି କୌଶଳଗୁଡ଼ିକୁ ଶିକ୍ଷକମାନଙ୍କ ଠାରୁ ଶିକ୍ଷା କରିବା ସମୟରେ ମଧ୍ୟ ଶିକ୍ଷକ ଓ ପିଲାମାନଙ୍କୁ ଏକତ୍ର ସକଳ କାର୍ଯ୍ୟଗୁଡ଼ିକୁ ବାଣ୍ଟି କରିବାକୁ ହୋଇଥାଏ । ଆମେ ଯେ କେବଳ ବାହାରେ ସେହି ବଗିଚାରେ ହିଁ ପିଲାଙ୍କ ସହିତ କାର୍ଯ୍ୟ କରୁ ତା' ନୁହେଁ, କର୍ମଶାଳା ଓ ଓ୍ୱାର୍କ୍‌ଶପ୍ ଗୁଡ଼ିକରେ ମଧ୍ୟ ନାନା କାର୍ଯ୍ୟ କରୁ; ମଡ଼େଲଗୁଡ଼ିକୁ ତିଆରି କରୁଥାଉ, ଯନ୍ତ୍ରକୌଶଳ-ପ୍ରୟୋଗର କ୍ଷେତ୍ରରେ ବି କେତେ କ'ଣ କରୁଥାଉ । ପିଲାମାନଙ୍କ ସହିତ ମିଶି କାର୍ଯ୍ୟ କରିବାର ସମୟଟି ହିଁ ଆମ ଶିକ୍ଷାଦାନଗତ ଅନୁଭବରେ ସବୁଠାରୁ ଅଧିକ ସୁଖମୟ କେତୋଟି ମୁହୂର୍ତ୍ତ ହୋଇ ରହିଥାଏ । (୧୧,୩୬୭)

ତୁଚ୍ଛା ଏକାଡ଼େମିକ ବିଷୟଗୁଡ଼ିକୁ ଯେତେ ଉତ୍ତମରୂପେ ସଂଗଠିତ କରି ରଖିଲେ ମଧ୍ୟ ସେଥିରେ ତଥାପି ସର୍ବଦା ନୀରସ ଲାଗିବାର ଗୋଟିଏ ଉପାଦାନ ରହିଥାଏ । ମାତ୍ର, ଯଦି ପିଲାମାନଙ୍କର ସମ୍ମୁଖରେ ଗୋଟିଏ ଦୀର୍ଘମିଆଦୀ ଲକ୍ଷ୍ୟ ରହିଥାଏ, ତେବେ ସାରସ ଲାଗିବାର ନକାରାତ୍ମକ ପରିଣାମଗୁଡ଼ିକୁ ଅବଶ୍ୟ କିଛିତ୍ ମାତ୍ରାରେ ଏଡ଼ି ଦିଆଯାଇ ପାରେ । .... ଏଥିନିମନ୍ତେ ନିର୍ଦ୍ଦିଷ୍ଟ ଭାବରେ ଶ୍ରମର କାର୍ଯ୍ୟକ୍ରମରେ ଏପରି କିଛି ବନ୍ଦୋବସ୍ତ କରି ରଖିବାକୁ ହୁଏ, ଯାହାକି ପିଲାମାନେ ଅତ୍ୟନ୍ତ ସ୍ପଷ୍ଟ ଭାବରେ ମଧ୍ୟ ଗ୍ରହଣ କରି ନେଇଥାନ୍ତି । ଅଧ୍ୟୟନଟା ହେଉଛି ଏକ ନୀରସ ଅବଶ୍ୟକର୍ମ ଏବଂ ସେହି ଅଧ୍ୟୟନରେ ଶେଷ ବୋଲି ଆଦୌ କିଛି ନଥାଏ, - ଏପରି ଗୋଟିଏ ଧାରଣା ଥିବାରୁ ହିଁ ତା'ପ୍ରତି ଉଦାସୀନତା ଏବଂ ପ୍ରତ୍ୟାଖ୍ୟାନର ଭାବଟି ନିଷ୍ପନ୍ନ ହୋଇଥାଏ । ମଧ୍ୟସ୍ତରର ତଥା ଉଚ୍ଚତର ଶ୍ରେଣୀମାନଙ୍କରେ ଏକାଡ଼େମିକ୍ ପାଠ ପ୍ରତି ସେପରି ଏକ ଦୃଷ୍ଟିକୋଣ ବିଶେଷ ଭାବରେ ନାନା ବିପଦକୁ ଡାକିନେଇ ଆସେ । ତେଣୁ, ଏହିସବୁ ଶ୍ରେଣୀର

ପିଲାମାନଙ୍କୁ ସେମାନଙ୍କର ବିଶେଷ ବିଷୟ-ଅଧ୍ୟୟନ ଗୁଡ଼ିକର କ୍ଷେତ୍ରରେ କୌଣସି ଗୋଟିଏ କର୍ମପ୍ରରାୟ ଲକ୍ଷ୍ୟ ଆଣି ଯୋଗାଇ ଦେବାକୁ ପଡ଼ିଥାଏ । ଏପରି ନିର୍ଦ୍ଦିଷ୍ଟ ଦିଗ୍‌ବଳୟମାନ ସମ୍ମୁଖରେ ଦେଖା ଯାଉନଥିଲେ ପିଲାମାନେ କେବଳ ଗୋଟିଏ ଗୋଟିଏ ଯନ୍ତ୍ରରେ ହିଁ ପରିଣତ ହୋଇଯିବାର ଆଶଙ୍କା ରହିଥାଏ । ସେମାନେ ସେତେବେଳେ କେବଳ " ଅମୁକ ପୃଷ୍ଠାରୁ ଅମୁକ ପୃଷ୍ଠାଯାଏ" ରହିଥିବା ଗୃହପାଠଗୁଡ଼ିକୁ ପ୍ରସ୍ତୁତ କରିବାରେ ଲାଗିଥାନ୍ତି । (୩,୧୪୫,୧୪୭)

ଯେଉଁସବୁ କର୍ମ କରିବାଦ୍ୱାରା ପିଲାମାନଙ୍କ ସକାଶେ ଅବିରାମ ଉନ୍ନତି ତଥା ଅଗ୍ରଗତିର ନାନାବିଧ ସୁଯୋଗ ଖୋଲିଯିବାରେ ଲାଗିଥାଏ, ସେମାନେ ସେହିସବୁ କାର୍ଯ୍ୟ କରିବାଲାଗି ଆଗ୍ରହ ପ୍ରକାଶ କରିଥାନ୍ତି । ଉତ୍ପାଦନର ପାଠ୍ୟକ୍ରମ ଭିତରେ ଏକାବେଳେକେ ପ୍ରଥମ ପର୍ଯ୍ୟାୟଟିରେ ହିଁ ସହଜ ନିୟମବଦ୍ଧ କର୍ମସମ୍ପାଦନ ଉପରେ ସମର୍ଥତା ଅର୍ଜନ କରାଇବାର ପ୍ରୟାସଗୁଡ଼ିକୁ ଆଣି ଭର୍ତ୍ତି କରାଗଲେ ପରବର୍ତ୍ତୀ ସମୟରେ ଆବଶ୍ୟକ ଧନ୍ଦା ଓ ଜୀବିକାଗୁଡ଼ିକ ପ୍ରତି ନିଜର ଦୃଷ୍ଟିକୋଣରେ ପିଲାମାନେ ସାଧାରଣତଃ ଉଦାସୀନ ହୋଇ ପଡ଼ିଥାନ୍ତି । (୩,୩୭୨)

କେବଳ ଯେଉଁ ଉତ୍ପାଦନକ୍ଷମ ଶ୍ରମରେ ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ଆଗ୍ରହ ଦୁଇଟିଯାକ ସଫଳ ଭାବରେ ଏକତ୍ର ହୋଇ ରହିଥାନ୍ତି, ତାହାହିଁ ଶିକ୍ଷାର କ୍ଷେତ୍ରରେ ଯଥାର୍ଥରେ ଫଳଦାୟକ ହୁଏ । ପିଲାମାନଙ୍କ ଠାରୁ ଯଥାସମ୍ଭବ ଅଧିକ ଶ୍ରମ ଆଦାୟ କରିବା ଯଦି ଶ୍ରମ-କାର୍ଯ୍ୟକ୍ରମର ଏକମାତ୍ର ଉଦ୍ଦେଶ୍ୟ ହୋଇ ରହେ (ଯେଉଁଥିରେ କି ଅଧିକାଂଶ ସମୟରେ କୌଣସି ଯଥାର୍ଥ କର୍ମଜ୍ଞାନ, କୌଶଳ ଅଥବା ଅଭିଜ୍ଞତା ବିଷୟରେ ଦାବୀ ମଧ କରା ଯାଏନାହିଁ), ତେବେ ସେଥିରୁ ଆଦୌ କୌଣସି ତାତ୍ପର୍ଯ୍ୟଯୁକ୍ତ ଶିକ୍ଷାଗତ ପ୍ରଭାବ ପଡ଼ିବା ମଧ ସମ୍ଭବ ହୁଏନାହିଁ । ଏହାଦ୍ୱାରା ଗୋଟିଏ ଶିଶୁର ସ୍ୱାଭାବିକ ପ୍ରବୃତ୍ତିଗୁଡ଼ିକର ବିକାଶ ବାଧାପ୍ରାପ୍ତ ହୁଏ, କରା ଯାଉଥିବା କାର୍ଯ୍ୟଟିରେ ତା'ର ଆଗ୍ରହକୁ ଊଣା କରିପକାଏ ଏବଂ କାର୍ଯ୍ୟଟିର ଗୁଣାତ୍ମକତାର କ୍ଷେତ୍ରରେ ମଧ୍ୟ ଏକ ଉଦାସୀନତା ଜନ୍ମିବାର କାରଣ ହୁଏ । (୩,୩୨୯)

ବେଳେ ବେଳେ ଏଭଳି ଉକ୍ତିମାନ ମଧ୍ୟ କରା ଯାଇଥାଏ "ତା' ଉପରେ କାର୍ଯ୍ୟର ବୋଝଟିକୁ ନେଇ ଲଦିଦିଅ, ଯେପରିକି ତା' ହାତରେ ଆଉ ମୋଟେ ସେତେଗୁଡ଼ାଏ ସମୟ ରହିବନାହିଁ ଓ ତେବେ ତା'ର କିଶୋର-ଅବସ୍ଥାରେ

ସେ କୌଣସି ସମସ୍ୟାରେ ମଧ୍ୟ ଆଣି ପକାଇଦେବ ନାହିଁ ।" ଏଇଟି ହେଉଛି ଗୋଟିଏ ସେହି ଆଦିମ ଧରଣର ଉକ୍ତି, ଏଥିରେ ପ୍ରସଙ୍ଗଗୁଡ଼ିକୁ ଅତିମାତ୍ରାରେ ସରଳ କରିଦିଆ ଯାଇଥାଏ ତଥା କର୍ମରତ ହୋଇ ରହିବା ଏବଂ ସାଧାରଣତଃ ଜଣେ ମନୁଷ୍ୟର ବୁଦ୍ଧିଗତ ଜୀବନ ବିଷୟରେ ଏକ ଅନିଷ୍ଟକାରୀ ମତକୁ ବ୍ୟକ୍ତ କରା ଯାଇଥାଏ । ପ୍ରଥମତଃ, ଗୋଟିଏ ଛାତ୍ର ଉପରେ ବୁଦ୍ଧିହୀନ ଭାବରେ ଶ୍ରମକୁ "ବୋଝ" ପରି ଲଦି ଦିଆଗଲେ ସେହି ବୋଝ ହୁଏତ ଏକ ଅତିରିକ୍ତ ବୋଝରେ ପରିଣତ ମଧ୍ୟ ହୋଇପାରେ ଏବଂ ତଦ୍ଦ୍ୱାରା ତାହା ସଂପୃକ୍ତ ପୁଅ ବା ଝିଅଟିର ବର୍ଦ୍ଧନଶୀଳ ଦେହଟି ନିମନ୍ତେ ଅତ୍ୟନ୍ତ କ୍ଷତିକାରକ ହୋଇପାରେ । ଦ୍ୱିତୀୟତଃ, ଶରୀରଶ୍ରମର କେବେହେଲେ ଜଣେ ମନୁଷ୍ୟର ବୌଦ୍ଧିକ ଏବଂ ସଂବେଗଗତ ଜୀବନରେ ଏକ ମୀମାଂସକ ଭୂମିକା ଆଦୌ ଗ୍ରହଣ କରେନାହିଁ, - ବିଶେଷ କରି ଗଠିତ ହୋଇ ଆସୁଥିବା ଏକ ବ୍ୟକ୍ତିତ୍ୱର କ୍ଷେତ୍ରରେ । ତେଣୁ, ଅପର ପକ୍ଷରେ ସେହି ଶ୍ରମଟି ବ୍ୟକ୍ତିର ଚରିତ୍ରବଳକୁ ଏକ ଆକାର ପ୍ରଦାନ କରିବାରେ ମଧ୍ୟ ଗୋଟିଏ ସାଧନ ହୋଇ ପାରୁଥିବା ଉଚିତ । ପୁନଶ୍ଚ, ଯଦି ଶରୀରଶ୍ରମ ହିଁ ଜଣେ ବ୍ୟକ୍ତିର ସବୁଯାକ ସମୟ ଓ ଶକ୍ତିକୁ ଗିଳି ପକାଉଥାଏ, ତେବେ ତା'ର ବୁଦ୍ଧିଗତ ଓ ସଂବେଗର ଜୀବନଟି ମଧ୍ୟ ବୃଦ୍ଧିପ୍ରାପ୍ତ ହେବାର ସକଳ ସମ୍ପଦ ତଥା ସମ୍ଭାବନାକୁ ହରାଇବସେ ଏବଂ ଭବିଷ୍ୟତର ବିକାଶଲାଗି ଆଉ କିଛିହେଲେ ବାକୀ ରହେନାହିଁ । ... ମନୁଷ୍ୟଜୀବନର ବ୍ୟାବହାରିକ କର୍ମକ୍ଷମତାକୁ ନିତାନ୍ତ ଏକପାଖିଆ ଭାବରେ ବୁଝିବାକୁ ବାହାରିଲେ ଅନେକ ସମୟରେ ଏଭଳି ଗୋଟିଏ ଅବସ୍ଥାରେ ଯାଇ ପହଞ୍ଚିବାକୁ ହୁଏ, ଯାହାଦ୍ୱାରା କି ୧୨-୧୬ ବୟସର ଛାତ୍ରଛାତ୍ରୀମାନେ ଶରୀରଶ୍ରମ ପ୍ରତି କ୍ରମେ ଘୃଣା ହିଁ ପ୍ରଦର୍ଶନ କରନ୍ତି । କିନ୍ତୁ, ଯଦି ସେଇଟିର ପଛରେ ଏକ ସମୃଦ୍ଧ ଆଦର୍ଶଗତ ମୂଳଦୁଆ ରହିଥିବ ଏବଂ ପିଲାମାନଙ୍କୁ ଗୋଟିଏ ସମ୍ପୂର୍ଣ୍ଣ ତଥା ଧନାଢ଼୍ୟ ଜୀବନର ବୋଧକୁ ଆଣି ଯୋଗାଇ ଦେଉଥିବ, ତେବେ କଞ୍ଚା ବୟସର ଏହି ପିଲାମାନେ ଏକ ସାଧାରଣ ଅବସ୍ଥା ଓ ପରିବେଶ ମଧ୍ୟରେ ଯେତିକି ପାରନ୍ତେ, ତାହାଠାରୁ ବହୁତ ଅଧିକ ପରିମାଣର ଶରୀରଶ୍ରମ କରିବାକୁ ନିଶ୍ଚୟ ସମର୍ଥ ହୁଅନ୍ତେ । (୬,୮୮)

ଶୃଙ୍ଖଳାବୋଧର ପ୍ରୋତ୍ସାହନ ନିମନ୍ତେ ଯେଉଁ ଶ୍ରମ କରାଯିବ, ତାହାକୁ ସର୍ବଥା ଶ୍ରମର ଶୃଙ୍ଖଳା ଉପରେ ହିଁ ଆଧାରିତ ହୋଇ ରହିବାକୁ ପଡ଼ିବ । .... ଜଣେ ବ୍ୟକ୍ତି ସମଷ୍ଟି ସହିତ ଥାଇ ଯାହାକିଛି କରିବ ଏବଂ ତାହାହିଁ ହେଉଛି ତା'

ଲାଗି ଏକ ସ୍ୱାଭାବିକ ସ୍ଥିତି ଏବଂ, କେବଳ ସେହି ସ୍ଥିତିଟି ହିଁ ଆଦୌ କୌଣସି ଶୃଙ୍ଖଳାର ବିକାଶ ଘଟାଏନାହିଁ କାରଣ ତାହା ଆଳସ୍ୟକୁ କେବେହେଲେ ଏତେ ଟିକିଏ ସ୍ଥାନ ବି ଛାଡ଼ି ଦିଏନାହିଁ । ... ମଝିରେ ମଝିରେ ନିୟମଭଙ୍ଗ ବି ହେଉଥିବ, କିଛି ବ୍ୟତିକ୍ରମ ମଧ୍ୟ ହେଉଥିବ; - ମାତ୍ର ସର୍ବପ୍ରଥମେ ଗୋଟିଏ ପିଲା ନିଜ ଅଧ୍ୟୟନ ସମ୍ବନ୍ଧରେ ନିଜର କର୍ତ୍ତବ୍ୟ କରିବାରେ ଅବହେଳା କରି ପକାଉଥିବ, ସାମୂହିକ ଜୀବନର ଉପଯୋଗୀ ଉତ୍ପାଦନକାରୀ କାର୍ଯ୍ୟଗୁଡ଼ିକ ପ୍ରତି ଖାମଖିଆଲି ଭାବ ହୁଏତ ପ୍ରଦର୍ଶନ କରୁଥିବ ଏବଂ ନିଜପାଇଁ କରିବାକୁ ରହିଥିବା କାର୍ଯ୍ୟଟିକୁ ଆଉ କାହା ଉପରେ ନେଇ ଲଦି ଦେଉଥିବ । ଶ୍ରମସହିତ ସଂଶ୍ଳିଷ୍ଟ ହୋଇ ରହିବାର କ୍ଷେତ୍ରରେ ଏକାଧିକ ବର୍ଷ କାଳ ଆଳସ୍ୟକୁ ବାଟ ଛାଡ଼ି ଦେଉଥିଲେ ଏହିସବୁ ଘଟଣା ଖୁବ୍ ଦେଖିବାକୁ ମିଳିବ । (୩,୧୨୬)

ପରିବେଶର ବାସ୍ତବ ସ୍ଥିତିଟି ଜଣେ ଛାତ୍ରଠାରୁ ପ୍ରତ୍ୟାଶିତ କାର୍ଯ୍ୟଗୁଡ଼ିକର ବିରୋଧାଚରଣ କରୁଥିଲେ ଛାତ୍ରମାନେ ଶ୍ରମ କରିବାକୁ ଭୟ କରିବା ମଧ୍ୟ ଆରମ୍ଭ କରିବେ । ଯେତେବେଳେ ଗୋଟାଏ କଥା କୁହା ଯାଉଥିବ ଓ ଆଉଗୋଟାଏ ଭିନ୍ନ କଥା କରା ଯାଉଥିବ; ଗୋଟିଏ ପକ୍ଷରେ ସର୍ଜନାତ୍ମକ ଦୈହିକ ତଥା ମାନସିକ ଶ୍ରମ ବିଷୟରେ କୁହା ଯାଉଥିବ ଏବଂ କାର୍ଯ୍ୟକ୍ଷେତ୍ରରେ ଅଲଗା କ'ଣସବୁ କରା ଯାଉଥିବ ଅର୍ଥାତ୍ ସ୍କୁଲକାନ୍ଥର ବାହାରେ କୃଷିକୌଶଳର ପ୍ରୟୋଗ ବିଷୟରେ ବଡ଼ ବଡ଼ କଥା କହି ଉତ୍ପାଦନର ପରିମାଣକୁ ବଢ଼ାଇବା ଲାଗି ଚେଷ୍ଟାମାନ ହେଉଥିବ, ସେତେବେଳେ ସାନ ପିଲାମାନେ ଏଇଟି ବିରୋଧରେ ଅବଶ୍ୟ ତା'ର ପ୍ରତିକ୍ରିୟାମାନ ବ୍ୟକ୍ତ କରିବେ । ତେଣୁ, କଥା ଏବଂ କାମରେ ବସ୍ତୁତଃ କୌଣସି ପାର୍ଥକ୍ୟ ରହିବନାହିଁ । ଶ୍ରମସଂକ୍ରାନ୍ତୀୟ ପରସ୍ପରବିରୋଧୀ ସଙ୍କେତମାନ ପରିଦୃଷ୍ଟ ହେଲେ ତାହା ବିଶେଷ ଭାବରେ ହିଁ ଅନିଷ୍ଟକାରକ ହେବ । ...(୩,୧୧୯)

ପିଲାମାନଙ୍କ ସକାଶେ ଯାବତୀୟ ଶ୍ରମନିର୍ଦ୍ଧାରଣର କ୍ଷେତ୍ରରେ ଦୁଇ ପ୍ରକାରର ଶ୍ରମର ସମ୍ମୁଖୀନ ହେବାକୁ ପଡ଼ିଥାଏ, - ଗୋଟିକରେ ପାରିଶ୍ରମିକ ଦିଆଯାଏ ଏବଂ ଆଉ ଗୋଟିକରେ କୌଣସି ପାରିଶ୍ରମିକ ଦିଆ ଯାଏନାହିଁ । ଏହି ଦୁଇଭଳି ଶ୍ରମ ମଧ୍ୟରେ ରହିଥିବା ସମ୍ବନ୍ଧଟିକୁ ନିର୍ଣ୍ଣୟ କଲାବେଳେ ଆମେ ସଂପ୍ରତି ଆମ ଦେଶରେ ଶ୍ରମର କ୍ଷେତ୍ରରେ ଘଟୁଥିବା ଗଭୀର ପରିବର୍ତ୍ତନ ଉପରେ ଲକ୍ଷ୍ୟ ରଖି ହିଁ ଆମେ ପ୍ରସଙ୍ଗଟିର ବିଚାର କରିଥିଲୁ । ଏବେ ଶ୍ରମିକମାନେ ଅଧିକରୁ ଅଧିକ

ପରିମାଣରେ ସାମାଜିକ ପଣ୍ୟଭୋଗର ପାଣ୍ଠିଗୁଡ଼ିକରୁ ନିଜର ନିର୍ଦ୍ଦିଷ୍ଟ ଶ୍ରମଟି ଯାହା ହୋଇଥାଉ ପଛକେ, ଅଧିକ କେତେ କେତେ ସୁଯୋଗ ପାଇଲେଣି, - ଭୌତିକ ଏବଂ ଅନ୍ୟାନ୍ୟ ଉଭୟ ସୁଯୋଗ ପାଇଲେଣି । ବୟସ୍କମାନଙ୍କର ତୁଳନାରେ ପିଲାମାନେ ହିଁ ଏହି କ୍ଷେତ୍ରରେ ଅନେକ ଅଧିକ ପରିମାଣରେ ଉପକୃତ ହେଉଛନ୍ତି । ଏହାଦ୍ବାରା ଆମ ଶିକ୍ଷକମାନଙ୍କର ଦାୟିତ୍ବ ମଧ୍ୟ ଖୁବ୍ ବଢ଼ିଯାଉଛି । ଅନ୍ୟମାନଙ୍କର ଯେଉଁ ଶ୍ରମ ଫଳରେ ପିଲାମାନେ ସମାଜଠାରୁ ଏତେ ଏତେ ସୁବିଧା ପାଇ ପାରୁଛନ୍ତି, ସେମାନଙ୍କୁ ତାହାର ମର୍ଯ୍ୟାଦାଟିକୁ ଅବଶ୍ୟ ହୃଦୟଙ୍ଗମ କରିବାକୁ ପଡ଼ିବ । ଏହି କାରଣରୁ ହିଁ ଆମେ ସେମାନଙ୍କ ଦ୍ୱାରା ସମାଜ ପାଇଁ ଏଭଳି ଶ୍ରମଗୁଡ଼ିକୁ କରାଉ, ଯାହାପାଇଁ ସେମାନେ କୌଣସି ପାରିଶ୍ରମିକ ପାଆନ୍ତିନାହିଁ । ନିଜର ଆଦୌ କୌଣସି ଶ୍ରମ ନଦେଇ ଏହି ପିଲାମାନେ ସମାଜଠାରୁ ଯେତିକି ଅଧିକ ସୁଯୋଗ ଲାଭ କରିବେ, ସେମାନେ ବିନା ପାରିଶ୍ରମିକରେ କରୁଥିବା ଶ୍ରମଟି ମଧ୍ୟ ସେତିକି ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇ ରହିଥିବ ।(୧୧,୩୨୨)

ସାମାଜିକ ବିକାଶର ଏହି ବର୍ତ୍ତମାନ ସ୍ଥିତିରେ ପିଲାମାନଙ୍କୁ ପ୍ରାପ୍ତ ହେଉଥିବା ଭୌତିକ ସୁଖ ତଥା ସୁବିଧାମାନ ଯେତିକି ଅଧିକ ଉଚ୍ଚ ସ୍ତରର ହେଉଥିବ, ସମାଜ ନିମନ୍ତେ ବିନା ପାରିଶ୍ରମିକରେ ସେମାନେ କରୁଥିବା ଶ୍ରମର ମୂଲ୍ୟ ମଧ୍ୟ ସେତିକି ଅଧିକ ମହତ୍ତ୍ୱପୂର୍ଣ୍ଣ ହେବାରେ ଲାଗିଥିବ । ... ପିଲାମାନେ ନିଜ ଭିତରେ ସାମୂହିକ ଅର୍ଥପାଣ୍ଠିମାନ ମଧ୍ୟ ଆରମ୍ଭ କରିଦିଅନ୍ତି ; ସେହି ଅର୍ଥରେ ସେମାନେ କେବଳ ନିଜର ସାଂସ୍କୃତିକ ଅଭାବପୂରଣ ତଥା ଅବସରବିନୋଦନ ଲାଗି ହିଁ ସାମଗ୍ରୀ କ୍ରୟ କରନ୍ତିନାହିଁ ; ସେମାନେ ସେଥିରୁ ମେସିନ୍ କିଣନ୍ତି, ବିଦ୍ୟୁତ୍-ସରଞ୍ଜାମ ଓ ମଡ଼େଲ୍‌ମାନ କିଣନ୍ତି, ବ୍ୟାଟେରୀ, ମୋଟରସାଇକେଲ ଓ ସିଲେଇ ମେସିନ୍ ମଧ୍ୟ କିଣିଥାନ୍ତି । (୮,୧୩୫)

ଏକ ସାମ୍ୟବାଦୀ ସମାଜରେ କରା ଯାଉଥିବା ଶ୍ରମକୁ, - ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତି ନିଜର ସାମର୍ଥ୍ୟ ଅନୁସାରେ ଶ୍ରମ କରିବ, - ଆମେ ତାହାକୁ କଦାପି ବ୍ୟକ୍ତିଗତ ମାନଦଣ୍ଡରେ ମାପି ତାହାର ମୂଲ୍ୟମୀମାଂସା କରି ପାରିବାନାହିଁ । ଆମେ ଏହି ବର୍ତ୍ତମାନ ଅବସ୍ଥାଟିରୁ ମଧ୍ୟ ଆମର ପିଲାମାନଙ୍କୁ ଶ୍ରମ ନିମନ୍ତେ ପ୍ରସ୍ତୁତ ଓ ପ୍ରଶିକ୍ଷିତ କରି ଆଣିବା, ଯାହାର କି ପୂର୍ବରୁ ନିର୍ଦ୍ଧାରିତ କୌଣସି ମାପକାଠି ଅନୁସାରେ ବିଚାର କରାଯାଇ ପାରିବନାହିଁ । ପ୍ରତ୍ୟେକ ଶିଶୁ ସମାଜ ନିମନ୍ତେ ନିଜର ଯଥାଶକ୍ତି

ଅଧିକରୁ ଅଧିକ ଦେବାଲାଗି ଶିକ୍ଷା କରିବ ଏବଂ ତାହାରି ଦ୍ୱାରା ହିଁ ଆମେ ଆମ ସାମୂହିକ ବସତିଗୁଡ଼ିକରେ ନୂତନ ଓ ଏକ ସମ-ସମାଜ ସହିତ ସମଞ୍ଜସତା ରକ୍ଷା କରି ସମ୍ବନ୍ଧଗୁଡ଼ିକୁ ପ୍ରତିଷ୍ଠା କରିବାରେ ଲାଗିଛୁ । (୭,୨୪)

## ଯନ୍ତ୍ରକୌଶଳ ଶିକ୍ଷାର ଅ,ଆ,କ,ଖ, ରୁ ଉଚ୍ଚତର କର୍ମଗତ ପାରଙ୍ଗମତା ପର୍ଯ୍ୟନ୍ତ

ଏଠି ପ୍ରତ୍ୟେକ ମଣିଷ ଏମିତି ସବୁ ଅତ୍ୟନ୍ତ ଆଗ୍ରହପରିପୂର୍ଣ୍ଣ କାର୍ଯ୍ୟରେ ନିମଗ୍ନ ହୋଇ ଯେ ରହିଛନ୍ତି, ଏଠାରେ ପିଲାଟିଏ ପ୍ରଥମ ଶ୍ରେଣୀରେ ଆସି ଭର୍ତ୍ତି ହେବା ପରେ ହିଁ ସବାଆଗ ଦେଖିବାକୁ ପାଏ । ନିଜକୁ ଭଲ ଲାଗୁଥିବା ଗୋଟିଏ କାର୍ଯ୍ୟ ନିମନ୍ତେ ପ୍ରତ୍ୟେକ ପିଲାକୁ ମୁଠାଏ ଜାଗା ଛାଡ଼ି ଦିଆଯାଇଛି । ସେଇଟିକୁ ସିଏ ନିଜ ପସନ୍ଦ ମୁତାବକ ଗୋଟିଏ କାର୍ଯ୍ୟପରି ଗ୍ରହଣ କରିଛି । ଏବଂ, ତା'ସହିତ ଜଣେ ବଡ଼ ପିଲା ମଧ୍ୟ ରହିଛି, ଯାହାର ଯାବତୀୟ କାର୍ଯ୍ୟକୁ ଦେଖି ସିଏ ବି ସେହିପରି କରିବାକୁ ଚେଷ୍ଟା କରୁଛି ଓ ଶିଖିଯାଉଛି । ଏହି ବିଦ୍ୟାଳୟରେ ଅଧିକାଂଶ ଛାତ୍ରଛାତ୍ରୀ ଯେ ଅବଶ୍ୟ କିଛି ନା କିଛି ଶିକ୍ଷା କରୁଛନ୍ତି ତା' ନୁହେଁ, - ସେମାନେ ତାହାରି ମାଧ୍ୟମରେ କ୍ରମଶଃ ସେହି କମିଟିରେ ପ୍ରବୀଣତା ଅର୍ଜନ କରୁଛନ୍ତି, - ସେମାନେ ଆପଣାର ନୂଆ ହୋଇ ଆବିଷ୍କୃତ ସାମର୍ଥ୍ୟ ତଥା ଜ୍ଞାନ-କୌଶଳଗୁଡ଼ିକୁ ନିଜର ଗୋଷ୍ଠୀରେ ଥିବା ଅନ୍ୟ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟ ପ୍ରଦାନ କରୁଛନ୍ତି । ଯେତେବେଳେ ଜଣେ ବ୍ୟକ୍ତି ନିଜର ଜ୍ଞାନ, ଅଭିଜ୍ଞତା ଏବଂ କୌଶଳଗୁଡ଼ିକୁ ଆଉଜଣେ ବ୍ୟକ୍ତିକୁ ପ୍ରଦାନ କରେ, କେବଳ ସେତିକିବେଳେ ହିଁ ସିଏ ନିଜର ଚରିତ୍ରକୁ ଗଠନ କରିବାରେ ମଧ୍ୟ ସମର୍ଥ ହୁଏ । (୧୧,୩୪୭)

ଯନ୍ତ୍ରମାନେ ଓ ଯାନ୍ତ୍ରିକ କୌଶଳର ପ୍ରକ୍ରିୟାଗୁଡ଼ିକ ଯେତିକି ଜଟିଳ ହେବାରେ ଲାଗିଥାନ୍ତୁ ପଛକେ, ହାତରେ କରା ଯାଉଥିବା ଶ୍ରମ ତଥାପି ଉତ୍ପାଦନର କ୍ଷେତ୍ରରେ ସର୍ବଦା ହିଁ ଏକ ମହତ୍ତ୍ୱପୂର୍ଣ୍ଣ ଉପାଦାନ ହୋଇ ରହିଥିବ । ହଁ, "ହାତରେ କରା ଯାଉଥିବା ଶ୍ରମ" କହିଲେ ତାହାକୁ ସମ୍ପୂର୍ଣ୍ଣ ସମବାଚୀ କରିଦେଇ " ଶାରୀରଶ୍ରମ" ବୋଲି ବୁଝିବାକୁ ଆଦୌ ମନ କରିବାନାହିଁ । ଉଚ୍ଚ କିସମର ହାତଦ୍ୱାରା କରାଯାଉଥିବା କାର୍ଯ୍ୟରେ ସର୍ଜନାତ୍ମକ ଭାବନାଶକ୍ତିର ମଧ୍ୟ ପ୍ରୟୋଜନ ହୋଇଥାଏ । ଯନ୍ତ୍ରକୌଶଳ ତଥା ସେହି ଧରଣର କାର୍ଯ୍ୟଟି ଅଧିକ ଜଟିଳ ହେବା

ସଙ୍ଗେ ସଙ୍ଗେ ଯାନ୍ତ୍ରିକ ପ୍ରକ୍ରିୟାଗୁଡ଼ିକ ଉପରେ ସମ୍ପୂର୍ଣ୍ଣ ଦକ୍ଷତା ଅର୍ଜନ କରିବା ନିମନ୍ତେ ଅପେକ୍ଷାକୃତ ଅଧିକ ପ୍ରାଥମିକ କୌଶଳ ତଥା ଅଭିଜ୍ଞତା ଆବଶ୍ୟକ ହେଉଥିବା ହାତଦ୍ୱାରା କରା ଯାଉଥିବା ନାନାବିଧ କର୍ମର ଅବଶ୍ୟ ପ୍ରୟୋଜନ ରହିବ ହିଁ ରହିବ । ଉତ୍ପାଦନରେ ଅଧିକରୁ ଅଧିକ ସ୍ୱୟଂଚାଳିତ ପଦ୍ଧତିମାନ ପ୍ରବେଶ କରିବା ପରେ ସେଗୁଡ଼ିକ ନିୟମନ, ଅନୁକୂଳନ, ଏକତ୍ରୀକରଣ ତଥା ତତ୍ତ୍ୱାବଧାନାଦି ସକାଶେ ନାନାବିଧ କୌଣସି ଓ ଅଭିଜ୍ଞତା ନିଶ୍ଚୟ ଦରକାର ହେଉଥିବ ।

ହାତଦ୍ୱାରା କରା ଯାଉଥିବା ଶ୍ରମକୁ ଆମେ ଅବଶ୍ୟ ଧନ୍ୟବାଦ ଦେବା ଯେ, ଜଟିଳ ଯନ୍ତ୍ର ତଥା ତତ୍ତୁଲ୍ୟ ଉଦ୍‌ଭାବନଗୁଡ଼ିକୁ ଚଳାଇବା ନିମନ୍ତେ ଅତ୍ୟନ୍ତ ସୂକ୍ଷ୍ମ ନାନା କୌଶଳ ହାସଲ କରିଥିବା ପ୍ରୟୋଜନ ହେଲାଣି ଏବଂ ତେଣୁ ସେଥିପାଇଁ ପୂର୍ବ ତୁଳନାରେ ଅଧିକ ଅଭିଜ୍ଞତା ରହିଥିବାର ଅପେକ୍ଷା ମଧ୍ୟ କରାଯାଉଛି । ଯେଉଁ ପୁରୁଷ ଓ ମହିଳା ମାନଙ୍କର ହାତଦ୍ୱାରା କରା ଯାଉଥିବା ଶ୍ରମର କ୍ଷେତ୍ରରେ ଦୀର୍ଘ ଅଭିଜ୍ଞତା ଅଛି, ସେମାନେ ଯନ୍ତ୍ରଗୁଡ଼ିକୁ ଏପରି ଭାବରେ ଚଳାଇ ପାରୁଛନ୍ତି ଯେ, ସେମାନଙ୍କର ଗୋଷ୍ଠୀଗୁଡ଼ିକ ଖୁବ୍ ସହଜ ଓ ସମସ୍ୟା ରହିତ ଭାବରେ ପରସ୍ପରର ପରାମର୍ଶ ନେବା ସମ୍ଭବ କରି ପାରୁଛନ୍ତି ଓ ଆଦୌ କୌଣସି ବାକ୍ୟଦ୍ୱନ୍ଦ୍ୱ ଦରକାର ହେଉନାହିଁ । (୧୧,୩୬୦)

ଯନ୍ତ୍ରବିଜ୍ଞାନର କ୍ଷେତ୍ରରେ ଯେତେ ବେଶୀ ବିକାଶ ହେଉ ଅଥବା ପ୍ରଯୁକ୍ତିକ୍ଷେତ୍ରର ଉଦ୍‌ଭାବନଗୁଡ଼ିକ ଯେତେ ଉଚ୍ଚ ଉଚ୍ଚ ସ୍ତରର ହୁଅନ୍ତୁ ପଛକେ, ବୈଜ୍ଞାନିକ ଅବିଷ୍କାରର ଶିଖରଗୁଡ଼ିକରେ ଯାଇ ପହଞ୍ଚିବା ଏବଂ ଅଧିକରୁ ଅଧିକ ବିଶେଷ ଦକ୍ଷତା ହାସଲ କରିବା - ଏଗୁଡ଼ିକୁ ସବୁଗୁଡ଼ିକୁ ସେହି ପ୍ରାଥମିକ ନିମ୍ନତମ ଜ୍ଞାନଗୁଡ଼ିକରୁ ହିଁ ଆରମ୍ଭ କରିବାକୁ ପଡ଼ିବ ଏବଂ ସର୍ବଦା ସେହି ମୂଳ ଯନ୍ତ୍ରଗୁଡ଼ିକୁ ହିଁ ବ୍ୟବହାର କରିବାକୁ ହେବ । ସର୍ବପ୍ରଥମେ ଅକ୍ଷରଗୁଡ଼ିକୁ ଶିକ୍ଷା କରିବାରେ କୁଶଳତା ହାସଲ ନକରି ବିଜ୍ଞାନାୟତନର ଦୂରନ୍ତ ସୀମାଗୁଡ଼ିକରେ ପହଞ୍ଚିବା ଯେପରି ଆଦୌ ସମ୍ଭବ ନୁହେଁ, ଠିକ୍ ସେହିପରି ଆରମ୍ଭ ପର୍ଯ୍ୟାୟର ମୂଳ ହତିଆର ତଥା ଯନ୍ତ୍ରପାତିଗୁଡ଼ିକୁ ବ୍ୟବହାର କରି ନଜାଣି ଆହୁରି ଆଗକୁ ରହିଥିବା ଜଟିଳ ଯନ୍ତ୍ରପ୍ରଯୁକ୍ତିର କ୍ଷେତ୍ରରେ ପାରଦର୍ଶିତା ଅର୍ଜନ କରିବା ଓ ପୂର୍ଣ୍ଣକୁଶଳତାଯୁକ୍ତ ସମର୍ଥ କର୍ମସ୍ତର ଗୁଡ଼ିକରେ ମଧ୍ୟ ଯାଇ ଉପନୀତ ହେବା ଏକାନ୍ତ ଅସମ୍ଭବ । (୧୧,୩୨୫)

ପ୍ରାଥମିକ ସୋପାନଗୁଡ଼ିକରେ ଆମ ପିଲାମାନେ କେତୋଟି ହାତହତିଆର ଚଳାଇବାକୁ ଶିକ୍ଷା କରିଥାନ୍ତି । ହାତରେ କରା ଯାଉଥିବା କର୍ମଗୁଡ଼ିକରେ ବ୍ୟବହୃତ ପିଲାଙ୍କର ହତିଆରଗୁଡ଼ିକ ଉପରେ ଆମେ ବହୁତ ମହତ୍ତ୍ୱ ଦେଇଥାଉ । ମଝି ଶ୍ରେଣୀଗୁଡ଼ିକର ପିଲମାନେ କମାରଶାଳରେ କାମ କରୁଥିବା ଘଣ୍ଟା ଗୁଡ଼ିକରେ ଛୁରୀ ତିଆରି କରନ୍ତି, କାଠ ଖୋଳିବାର ନିହାଣ, କାଗଜ ଏବଂ କାଗଜପଟା କାଟିବାର କେତେ ସାମଗ୍ରୀ ମଧ୍ୟ ବନାଇ ଥାଆନ୍ତି । ଗୋଟିଏ କ୍ଷୁଦ୍ର ଯନ୍ତ୍ରୋପାୟ ରହିଛି ଯାହାର ସାହାଯ୍ୟରେ ଏହି ଶିଶୁମାନେ କାଦୁଅ ଦେଇ କୁନି କୁନି ଇଟା ବି କରନ୍ତି ଏବଂ ସେଥିରୁ ମିଛିମିଛିକା କୋଠାଘରମାନ ଗଢ଼ନ୍ତି । ଶ୍ରମର ନିର୍ଘଣ୍ଟ ସମୟରେ ସାନ ସାନ ପିଲାମାନେ ହାତୁଡ଼ି, ନିହାଣ ଓ କୁରାଢ଼ି ଆଦି ହତିଆର ମଧ୍ୟ ବ୍ୟବହାର କରନ୍ତି । ନାନାବିଧ ସାମଗ୍ରୀ ସାହାଯ୍ୟରେ କାର୍ଯ୍ୟ କରିବାଲାଗି ଶିକ୍ଷା କରିବା ସମୟରେ ପିଲାମାନେ କ୍ରମଶଃ ଆହୁରି ଆଗକୁ ଯାଇ ଅନ୍ୟ କେତେ ପ୍ରକାରର ବସ୍ତୁ ମଧ୍ୟ ତିଆରି କରିବାରେ ଲାଗନ୍ତି । ଅଂଶଗୁଡ଼ିକୁ ଗଢୁ ଗଢୁ ସମ୍ପୂର୍ଣ୍ଣ ଦ୍ରବ୍ୟଟିର ଅବବୋଧ କରନ୍ତି ଓ ସମ୍ପୂର୍ଣ୍ଣଟିର ଆକଳନ କରୁ କରୁ ଅଂଶଗୁଡ଼ିକର ଧାରଣା ମଧ୍ୟ କରିନିଅନ୍ତି । ନିର୍ଭୁଲ ଭାବରେ ଗଣନା କରିବା, ଦ୍ରବ୍ୟଗୁଡ଼ିକୁ ସେଗୁଡ଼ିକର ଅଂଶ ଦେଇ ଠୁଳ ଭାବରେ ଗଢ଼ିଆଣି ପାରିବା, ଏହି ସବୁକିଛି ସେହି ପ୍ରାଥମିକ ବିଦ୍ୟାଳୟରେ ହିଁ ବିକଶିତ ହେଉଥାଏ ଓ କ୍ରମଶଃ ଆୟତ୍ତ ହେବାରେ ଲାଗିଥାଏ । ପରବର୍ତ୍ତୀ ସୋପାନଗୁଡ଼ିକର ଶ୍ରମଅଭ୍ୟାସ ନିମନ୍ତେ ଏଗୁଡ଼ିକର ବହୁତ ମହତ୍ତ୍ୱ ରହିଛି ବୋଲି ଅବଶ୍ୟ ପ୍ରତିପାଦିତ ହୁଏ । (୧୧,୩୨୩)

ପିଲାମାନେ କରୁଥିବା ଶ୍ରମରୁ ଯଦି କିଛି ଅର୍ଥଲାଭ ସମ୍ଭବ ହୋଇଯାଏ, ତେବେ ଗୋଟିଏ ବିଦ୍ୟାଳୟର ଭୌତିକ ଭୂମିରେ ମଧ୍ୟ ପ୍ରକୃତରେ ବହୁତ ଉନ୍ନତି ମଧ୍ୟ ହୁଏ । ବିଦ୍ୟାଳୟର ଉଦ୍ୟାନ, ଫଳବଗିଚା, ଅଙ୍ଗୁରଭାଡ଼ି ଏବଂ ଫଳଗଛର ସାନ ସାନ ଚାରାଗଛ, - ଏହି ପ୍ରତ୍ୟେକଟି ଭିତରେ ଉଲ୍ଲେଖଯୋଗ୍ୟ ଅର୍ଥାଗମର ସମ୍ଭାବନା ନିହିତ ହୋଇ ରହିଥାଏ । ଆମ ଅମଳର କିଛିତ୍ ଅଂଶକୁ ଆମେ ସ୍ଥାନୀୟ କୋଠଚାଷର ସଂସ୍ଥାକୁ ପଠାଇ ଦେଇଥାଉ, ଅଭିଭାବକମାନଙ୍କୁ ଦେଉ, - ଏବଂ ସେଥିଲାଗି କୌଣସି ମୂଲ୍ୟ ଗ୍ରହଣ କରୁନାହିଁ । ମାତ୍ର, କିଛି ବିକ୍ରୀ ମଧ୍ୟ ହୁଏ । ସେଥିରୁ ଯାହା ପଇସା ଆସେ, ତାହା ସାଂସ୍କୃତିକ ଅନୁଷ୍ଠାନ ତଥା ପିଲାମାନଙ୍କ ନିମନ୍ତେ ଉପଲବ୍ଧ ହେଉଥିବା କେତେ ସବିଧା ( ପରିଭ୍ରମଣ, ବାଦ୍ୟଯନ୍ତ୍ର ଖରିଦ କରିବା, ବହି କିଣିବା) ରେ ଖରଚ ହୁଏ । ବିଦ୍ୟାଳୟର ଭୌତିକ ମୂଳଦୁଆଟିକୁ ଅଧିକ

ସଂପ୍ରସାରିତ କରିବାରେ ମଧ୍ୟ ତାହା କାମରେ ଲାଗେ । ଏହିଭଳି ଲବ୍ଧ ହୋଇଥିବା ଅର୍ଥରେ ବିଦ୍ୟାଳୟ ପାଇଁ ବିଦ୍ୟୁତ୍‌ଶକ୍ତି ଦ୍ୱାରା ଚାଳିତ ମୋଟର, ରେଡ଼ିଓ କ୍ଲବ୍ ଲାଗି କେତେକ ସରଞ୍ଜାମ ଏବଂ ବ୍ୟବହାର୍ଯ୍ୟ ଇଞ୍ଜିନ୍‌ମାନ ମଧ୍ୟ କ୍ରୟ କରାଯାଇଛି । କେବଳ କର୍ମ କରି ଶିଖିବା ସକାଶେ ପିଲାମାନେ କାମ କରନ୍ତିନାହିଁ; କିନ୍ତୁ, ଅଧିକ ବହୁମୁଖୀ ତଥା ବୁଦ୍ଧିଚାଳନାର କ୍ଷେତ୍ରରେ ଅଧିକ ଦାବୀ କରୁଥିବା କର୍ମଗୁଡ଼ିକ ନିମନ୍ତେ ମଧ୍ୟ ଭୌତିକ ଭୂମିଗୁଡ଼ିକୁ ସମ୍ଭବ କରି ଆଣିବାଲାଗି ସେମାନେ କାମ କରନ୍ତି । ଏହି ସୂତ୍ରରୁ ମିଳିଥିବା ଅର୍ଥରେ ଗୋଟିଏ ଏପରି ପାଣ୍ଠି ବି ଆରମ୍ଭ ହୋଇଛି, ଯେଉଁଥିରୁ କି ଭୌତିକ ଦୃଷ୍ଟିରୁ ଅଭାବ ମଧ୍ୟରେ ରହିଥିବା ପରିବାରଗୁଡ଼ିକୁ ସହାୟତା ଦିଆଯାଇଛି, କମ୍‌ସୋମଲ୍ (ଯୁବପ୍ରତିଷ୍ଠାନ)ର ସଦସ୍ୟବୃନ୍ଦ ଏବଂ ବିଦ୍ୟାଳୟର ପାୟୋନିୟର୍ ସଂଗଠନକୁ ଏକତ୍ର ନେଇ ତିଆରି ହୋଇଥିବା ଗୋଟିଏ କମିଟିଦ୍ୱାରା ହିଁ ସେହି ସହାୟତାର ବିତରଣ କରାଯାଇଛି । (୧୧,୩୧୭)

ସମାଜ ନିମନ୍ତେ ଅତ୍ୟନ୍ତ ଆବଶ୍ୟକ ଯାବତୀୟ ପ୍ରକାରର କର୍ମକୁ ବିବେକର ସହିତ ସମ୍ପାଦନ କରିବା ସକାଶେ ସର୍ବଦା ପ୍ରସ୍ତୁତ ଓ ସମ୍ମତ ହୋଇ ରହିବାକୁ ପ୍ରୋତ୍ସାହନ ଦେବା ହେଉଛି ଏହି କ୍ଷେତ୍ରରେ ଅସଲ ତଥା ମହତ୍ତ୍ୱପୂର୍ଣ୍ଣ । ତଥାପି, ଶିକ୍ଷାଦ୍ୱାରା ହିଁ ଏହି ନୈତିକ ମହାନ୍ ଗୁଣଟିକୁ ଅର୍ଜନ କରା ଯାଇଥାଏ, ନିତାନ୍ତ ସାଧାରଣ କାର୍ଯ୍ୟଗୁଡ଼ିକୁ କରି ପାରିବାର ଆବଶ୍ୟକତାକୁ ଉତ୍ତମରୂପେ ବୁଝିବାପରେ ଯାଇ ସିନା ପିଲାମାନେ ଯେକୌଣସି ଆବଶ୍ୟକ କର୍ମର ସମ୍ପାଦନ କରିବାଲାଗି ବିବେକର ସହିତ ଜଣେ ଜଣେ କର୍ମୀ ରୂପେ ପ୍ରସ୍ତୁତ ହୋଇ ପାରିବେ ଏବଂ, ଏକ ଦୀର୍ଘ ଅବଧି ଲାଗି ସମ୍ମୁଖରେ ଏକ ଉଦ୍ଦେଶ୍ୟ ରହିଥିବା ଶିକ୍ଷାଧର୍ମୀ କାର୍ଯ୍ୟ କରିବା ପରେ ଯାଇ ସେମାନେ ସେହିଭଳି ପ୍ରସ୍ତୁତ ତଥା ସମ୍ମତ ହୋଇ ବାହାରି ପାରିବେ । (୩,୩୨୯)

ପିଲାମାନେ, ଖରପବନକୁ ରୋକିବା ନିମନ୍ତେ ବାହାରେ ଗଛମାନ ଲଗାନ୍ତି, ଓକ୍ ବୃକ୍ଷଗୁଡ଼ିକର ଗୋଟିଏ ତୋଟା ହୁଏତ ପ୍ରସ୍ତୁତ କରି ଆଣୁଥାନ୍ତି, - ସେମାନେ ଏକାଧିକ ବର୍ଷ କାଳ ସେହି ଗଛଗୁଡ଼ିକର ତତ୍ତ୍ୱ ବି ନିଅନ୍ତି କିମ୍ବା, ପ୍ରତ୍ୟେକ ଦିନର ଗୋଟିଏ ନୟମିତ କାର୍ଯ୍ୟରୂପେ ଶ୍ରେଣୀରେ ପଡ଼ିଥିବା ଡ଼େସ୍କଗୁଡ଼କରୁ ଧୂଳି ଛାଡ଼ିବା କାର୍ଯ୍ୟଟିକୁ ମଧ୍ୟ କରୁଥାନ୍ତି, - ଏହି କର୍ମଗୁଡ଼ିକୁ କରିବା ସମୟରେ ସେମାନେ ସମାଜପାଇଁ ଏକ ଉପଯୋଗୀ କାର୍ଯ୍ୟ ହିଁ ସମ୍ପାଦନ କରନ୍ତି ଏବଂ ସେମାନଙ୍କର

ଚରିତ୍ରନିର୍ମାଣରେ ମଧ୍ୟ ସେହି କାର୍ଯ୍ୟର ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ମଧ୍ୟ ରହିଥାଏ । କିନ୍ତୁ, ପ୍ରଥମ କାର୍ଯ୍ୟଟିକୁ କରିବାବେଳେ ସାମାଜିକ ଜୀବନର ଭୌତିକ ବାସ୍ତବ ଭୂମିଟିଏ ସୃଷ୍ଟି କରି ଆଣିବାରେ ଛାତ୍ରଟି ପ୍ରତ୍ୟକ୍ଷ ଭାବରେ ଏକ ଅଂଶ ଗ୍ରହଣ କରେ ଏବଂ ଦ୍ୱିତୀୟଟିର କ୍ଷେତ୍ରରେ ସିଏ କେବଳ "ନିଜପାଇଁ" କିଛି କରିବା ମଧ୍ୟରେ ସୀମିତ ହୋଇ ରହିଥାଏ । ପ୍ରଥମ କାର୍ଯ୍ୟଟି ତା' ଭିତରେ ଯେଉଁସବୁ ଭାବ ଏବଂ ପ୍ରତ୍ୟୟଟିର ଅଙ୍କୁରୋଦ୍‌ଗମ କରି ଆଣିବ, ଦ୍ୱିତୀୟଟି କଦାପି ତାହା କରିବନାହିଁ । ଅବଶ୍ୟ ଏହି ନିଜପାଇଁ କାମଟିଏ କରିବାର ମଧ୍ୟ ନିଜସ୍ୱ ବିଶେଷ ସୁବିଧାଗୁଡ଼ିକ ରହିଛି : ତାହା ପରିଷ୍କାରପରିଚ୍ଛନ୍ନତା ଜ୍ଞାନରେ ବୃଦ୍ଧି ଘଟାଏ, ଏହି ସାନ କାର୍ଯ୍ୟଟିକୁ ମଧ୍ୟ ସମ୍ମାନ ସହିତ ଦେଖି ଶିଖାଏ ଏବଂ, ଯେଉଁ ଲୋକମାନେ ଅତି ସାଧାରଣ ଓ ମାମୁଲି କାର୍ଯ୍ୟମାନଙ୍କରେ ନିୟୋଜିତ ହୋଇ ରହିଛନ୍ତି, ସେମାନଙ୍କ ସକାଶେ ମଧ୍ୟ ସମ୍ମାନକୁ ଉଦ୍ରେକ କରି ଆଣିଥାଏ । (୧୧,୩୧୮)

ପିଲାମାନେ ସୃଜି ଆଣିଥିବା ଦ୍ରବ୍ୟଗୁଡ଼ିକୁ କାମରେ ଲଗାଇ ପାରିବା ନିମନ୍ତେ ଯେତିକି ଅଧିକ ସୁଯୋଗ ମିଳିପାରେ, ସେମାନଙ୍କ ଉପରେ ତାହାର ସେତିକି ଅଧିକ ନୈତିକ ପ୍ରଭାବ ପଡ଼େ ଓ ସେମାନେ ସଂପୃକ୍ତ କାର୍ଯ୍ୟଟି ଆଡ଼କୁ ସେତିକି ବେଶୀ ଆକର୍ଷିତ ବି ହୋଇ ଆସନ୍ତି । ପିଲାମାନେ ଗୋଟିଏ ମଡ଼େଲ୍ ତିଆରି କରିଛନ୍ତି ଓ ସେଇଟିକୁ ବ୍ୟବହାର କରାଯାଇ ପାରିବ; ସେଇଟି ସମ୍ପୂର୍ଣ୍ଣ ଭାବରେ ତିଆରି ହୋଇଗଲେ ସେମାନେ ଅଧିକ ଆଗ୍ରହ ଓ ଉତ୍ସାହର ସହିତ ତାହାକୁ ଆପଣାର ପ୍ରାକ୍ଟିକାଲ୍ ଶ୍ରେଣୀଗୁଡ଼ିକରେ ଆଣି କାମରେ ଲଗାନ୍ତି । ତୁଚ୍ଛା ସଜାଇ ରଖିବା ଭଳି ଅନ୍ୟଭଳି କୌଣସି ପ୍ରଦାର୍ଥର ମଡ଼େଲ୍ ହୋଇଥିଲେ ହୁଏତ ସେପରି ଘଟିନଥାଏ । ... ସେହି କାରଣରୁ ହିଁ ପ୍ରକୃତରେ ସବୁ ପିଲା ବେତାରଯନ୍ତ୍ର ଗୁଡ଼ିକର ମଡ଼େଲ୍ ତିଆରି କରିବାରେ ଏତେ ଅଧିକ ଆଗ୍ରହ ପ୍ରକାଶ କରିଥାନ୍ତି । ..(୩,୨୯୦)

ଗୋଟିଏ ମଡ଼େଲ୍ ଶେଷଯାଏ ତିଆରି ହେବ, - ବିଦ୍ୟାଳୟର ପିଲାମାନେ ତାହାକୁ ହିଁ ସେହି କାର୍ଯ୍ୟଟିର ଚରମ ଲକ୍ଷ୍ୟଭଳି ଦେଖନ୍ତିନାହିଁ । ସେଇଟି ଯେତେବେଳେ ବାସ୍ତବ କ୍ଷେତ୍ରରେ ପରୀକ୍ଷିତ ହେବାକୁ ଆସେ, ସେତେବେଳେ ଯାଇ ସେମାନେ ସଂପୂର୍ଣ୍ଣତା ମିଳିଲା ବୋଲି ଅନୁଭବ କରନ୍ତି । ପୁରା ଗୋଟାଏ ବରଷ ଶେଷ ହେବାଯାଏ ସେମାନେ ପ୍ରତ୍ୟହ ସେହି କୋଡ଼ିଏ ବା ତିରିଶି ମିନିଟ୍‌ର

ରୋମାଞ୍ଚକର କାର୍ଯ୍ୟଟିରେ ଆପଣାକୁ ତତ୍ପର ରଖିଥାନ୍ତି ଏବଂ ଯାବତୀୟ ପ୍ରକାରର ଅସୁବିଧାକୁ ଅତିକ୍ରମ କରିଯାଆନ୍ତି । ଗୋଟିଏ ପରୀକ୍ଷାମୂଳକ ମଡ଼େଲ୍‌କୁ କାର୍ଯ୍ୟକାରୀ କରିବାଦ୍ୱାରା ହିଁ ସେମାନେ ଚରମ ସନ୍ତୋଷ ଲାଭ କରିଥାନ୍ତି । (୩,୨୯୫)

ବହୁବର୍ଷ ତଳେ, ପିଲାମାନେ ବାହାରେ ଗଛ ଲଗାଇଥିବା ଓ ସେଗୁଡ଼ିକର ପରିଚର୍ଯ୍ୟା କରୁଥିବାର କାର୍ଯ୍ୟଟି ସମ୍ପର୍କରେ ବିଚାର କରିବା ବେଳେ ଆମେ ଏହି ସିଦ୍ଧାନ୍ତରେ ଆସି ପହଞ୍ଚିଥିଲୁ ଯେ, ସେହି କାର୍ଯ୍ୟଟିରେ କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହି ନଥିବାରୁ ସେମାନେ ଭାବିଲେ ଯେ ସେମାନଙ୍କୁ କର୍ମରତ କରି ରଖିବାର ଗୋଟିଏ ଉପାୟରୂପେ ଅଥବା କେବଳ ଗୋଟିଏ ବୃଥା ପ୍ରୟାସରେ ହିଁ ସେମାନଙ୍କୁ ନିୟୋଜିତ କରା ଯାଇଥିଲା । ପିଲାଏ ଗାତ ଖୋଳିଥିଲେ, ଗଛଚାରା ଲଗାଇଥିଲେ, ସେଗୁଡ଼ିକରେ ଜଳ ଦେଉଥିଲେ, କାଟମାନଙ୍କୁ ମଧ୍ୟ ନଷ୍ଟ କରି ଦେଉଥିଲେ ଏବଂ ବାହାରୁ ଏସବୁକୁ ଦେଖୁଥିବା ଜଣେ ପର୍ଯ୍ୟବେକ୍ଷକକୁ ସେମାନେ ଏକ ଅତ୍ୟନ୍ତ ଉପଯୋଗୀ କାର୍ଯ୍ୟ କରୁଛନ୍ତି ବୋଲି ସମ୍ଭବତଃ ବୋଧ ହୋଇଥିବ । ମାତ୍ର, ଏହି ଯାବତୀୟ କାର୍ଯ୍ୟ ଶେଷ ହେବା ପରେ ସେମାନେ ସେହି ସମୀପରେ ଶାନ୍ତଭାବରେ ଛିଡ଼ା ହୋଇ ରହୁଥିଲେ, - ଅଥଚ ଗୋଟିଏ ଫଳଗଛ ଜଳ ନପାଇବାରୁ ଝାଉଁଳି ଯାଇଥିଲା କିମ୍ବା ନିଜେ ରୋପଣ କରିଥିବା ଗଛଗୁଡ଼ିକୁ ମଧ୍ୟ ସେମାନେ ସ୍ୱୟଂ ନଷ୍ଟ କରି ଦେଉଥିଲେ ।

ବୃକ୍ଷଗୁଡ଼ିକୁ ରୋପଣ କରିବାରେ ଯେତିକି ପ୍ରୟାସ ଖଟା ଯାଇଛି, ସେଥିରେ ଆଦୌ କୌଣସି ବ୍ୟତିକ୍ରମ କରା ଯାଇନାହିଁ । (ଗଛ ଲଗାଇବା ଠାରୁ ଫଳ ତୋଳିବା ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ସମୟଟିକୁ ଗଣନାଦ୍ୱାରା ହିସାବ କରି ଦିନକୁ ମୋଟେ ଗୋଟିଏ ମିନିଟ୍‌ରୁ କମ୍ ସମୟ ଏଥିରେ ଦିଆଯାଇଛି ବୋଲି ତୁମେ ଜାଣିପାରିବ ) ମାତ୍ର, ଗଛରେ ଯଥାର୍ଥ ଆଗ୍ରହଟିଏ ରଖିବା ଏବଂ ଉଦ୍ୟାନ ତଥା ବନରକ୍ଷକମାନଙ୍କ ପ୍ରତି ଏକ ସମ୍ମାନର ମନୋଭାବକୁ ତୁମେ କେବଳ ସେତିକିବେଳେ ସଫଳତା ସହିତ ଉତ୍ସାହିତ କରିଆଣି ପାରିବ, ଯେତେବେଳେ କି ତୁମେ ଏକଦା ସ୍ୱୟଂ ନିଜ ହାତରେ ହିଁ ଗୋଟିଏ ଫଳଗଛର ଯତ୍ନ ନେଇଥିବ ଓ ତାହାର ସକଳ ପରିଚର୍ଯ୍ୟା କରିଥିବ । (୩,୨୫୬)

ଏହି କଥାଟି ବହୁତ ମହତ୍ତ୍ୱପୂର୍ଣ୍ଣ ଯେ, ଆପଣାର କିଶୋରବୟସ ସମୟରେ ଆମ ଛାତ୍ରମାନେ ଯେ ଶ୍ରମର ଏକ ଅଭ୍ୟାସ ମଧ୍ୟରେ ରହିଥିଲେ, ପରବର୍ତ୍ତୀ କାଳରେ ତାହା ସେମାନଙ୍କ ଲାଗି ନାନାବିଧ ନୂତନ କୌଶଳ ତଥା ଶ୍ରମ-ଅଭିଜ୍ଞତା ଅର୍ଜନ କରିବାର କାର୍ଯ୍ୟଟିକୁ ଅଧିକ ସହଜ କରିଦେଇ ପାରିଲା ପନ୍ଦର ଷୋଳବର୍ଷର ପିଲାଙ୍କୁ ଆମେ କେବେହେଲେ ଧାତୁରେ ରନ୍ଧ୍ର କରିବା, ଗହମ ବୁଣାହେବା ପୂର୍ବରୁ ମାଟିକୁ ଚଷି ପ୍ରସ୍ତୁତ କରିବା ବା ଫଳଗଛ ଗୁଡ଼ିକୁ କଲମୀ କରିବା ବିଷୟରେ ତାଲିମ ଦେଉନାହିଁ କାରଣ, ଏହିସବୁ କୌଶଳକୁ ସେମାନେ ପାଞ୍ଚବର୍ଷ ପୂର୍ବରୁ ହିଁ ଉତ୍ତମରୂପେ ଶିଖୁଥିବେ ବୋଲି ଧରି ନିଆଯାଏ ଏବଂ, ସେତେବେଳେ ସେଗୁଡ଼ିକରେ ସେମାନେ ଯେତିକି ପ୍ରବୀଣତା ହାସଲ କରିଥାନ୍ତି, ପରବର୍ତ୍ତୀ ବୟସମାନଙ୍କରେ ସେମାନଙ୍କର ସର୍ବାଙ୍ଗୀନ ବିକାଶ ମଧ୍ୟ ସେତିକି ଅଧିକ ଭଲ ହୋଇଥାଏ । (୧୧.୩୧୩)

ବିଶେଷ ବିଶେଷ ରୁଚିର ଗୋଷ୍ଠୀଗୁଡ଼ିକୁ ଯେଉଁ ଅନେକ କିସମର ଶ୍ରମଶିକ୍ଷା ଦିଆଯାଇ ଅଭ୍ୟସ୍ତ କରା ଯାଇଥାଏ, ଆମର ପିଲାମାନେ ସେହି ସୁଯୋଗଟି ପାଉଥିବା ହେତୁ ଅଷ୍ଟମ ଶ୍ରେଣୀରେ ଆସି ପହଞ୍ଚିବା ବେଳକୁ ବେଶ୍ କତିପୟ ଧନ୍ଦାରେ ଉତ୍ତମ ତାଲିମ ଲାଭ କରି ସାରିଥାନ୍ତି ଏବଂ ଆପଣାର ପ୍ରତିଭା ତଥା ଆଗ୍ରହକ୍ଷେତ୍ର ଗୁଡ଼ିକୁ ମଧ୍ୟ ଆବିଷ୍କାର କରି ସାରିଥାନ୍ତି । .... ଅଷ୍ଟମ ଶ୍ରେଣୀରୁ ଆହୁରି ଉପରକୁ ଉଠି ପିଲାମାନେ ଉପଯୁକ୍ତ ଧାତୁନିର୍ମିତ ଉପକରଣମାନ ବ୍ୟବହାର କରି ଧାତୁକାମ ଗୁଡ଼ିକୁ କରିପାରନ୍ତି, - ଧାତୁକୁ ନେଇ କାର୍ଯ୍ୟ କରୁଥିବା ମେସିନ୍‌ମାନଙ୍କୁ ବ୍ୟବହାର କରିପାରନ୍ତି, ଲେଦ୍ ମେସିନ୍ ସାହାଯ୍ୟରେ କେତେକଟି କାଠକାମ କରନ୍ତି ଓ କାଠରୁ କେତେ କେତେ ଦ୍ରବ୍ୟ (ଚିତ୍ର ବନ୍ଧାଇ ରଖିବାର ଫ୍ରେମ୍ କାଠର ଟୁଲ୍, ରୁଲ୍‌ବାଡ଼ୀ, କମ୍ପାସ୍) ତିଆରି କରନ୍ତି, ମେସିନ୍‌ର ଅଂଶମାନଙ୍କୁ ଏକତ୍ର ଯୋଡ଼ି ପାରନ୍ତି, ବିଦ୍ୟୁତ୍‌ଶକ୍ତି ବ୍ୟବହାର କରିବାର ବହୁତ ସରଞ୍ଜାମ ତଥା ବେତାରଯନ୍ତ୍ରଗୁଡ଼ିକୁ ମଧ୍ୟ ନିର୍ମାଣ କରିପାରନ୍ତି । ସେମାନେ ବିହନ ବୁଣାହେବା ନିମନ୍ତେ ଜମି ପ୍ରସ୍ତୁତ କରିପାରନ୍ତି, ପଶୁଧନକୁ ଚରାଇ ନିଅନ୍ତି, ବିହନ ବୁଣନ୍ତି ଓ ଫସଲ ଅମଳ କରନ୍ତି, ଗାଡ଼ୀ ଓ ଟ୍ରାକ୍ଟର୍‌ମାନ ଚଳାନ୍ତି, ଫଳଗଛ ମାନଙ୍କରେ କଲମୀ କରନ୍ତି, ଅଙ୍ଗୁର ଚାଷ ଏବଂ ଫଳଚାଷ କରନ୍ତି । ଏହିସବୁ କୌଶଳକୁ ଶିକ୍ଷା କରିବାଦ୍ୱାରା ସେମାନଙ୍କର ପ୍ରଭୂତ ଉପକାର ସାଧିତ ହୋଇଥାଏ, କାରଣ ଏହାଦ୍ୱାରା ବଡ଼ ପିଲାମାନେ ପରେ ଅତ୍ୟଳ୍ପ ସମୟରେ ହିଁ ବହୁ ଜଟିଳ କୌଶଳ ବିଷୟରେ ଦକ୍ଷତା ହାସଲ କରିପାରନ୍ତି । (୧୧.୩୩୬)

ସଂପ୍ରତି ଆମେ କୌଣସି ଗାଆଁରେ ଲଙ୍ଗଳ ଚଳାଉଥିବା ଅଥବା ବିହନ ବୁଣୁଥିବା ଲୋକମାନଙ୍କୁ ଆଉ ଦେଖିବାକୁ ହିଁ ପାଉନାହିଁ । ସେମାନେ ତ ଶତାବ୍ଦୀ ଶତାବ୍ଦୀ ଧରି ଅତ୍ୟନ୍ତ ପରିଚିତ ଗୋଟିଏ ଗୋଟିଏ ଦୃଶ୍ୟ ହୋଇ ରହି ଆସିଥିଲେ । କୋଠଚାଷର କ୍ଷେତ୍ରଗୁଡ଼ିକରେ ଯେଉଁ ଶ୍ରମିକମାନେ ବୃକ୍ଷପାଳନ ଓ ପଶୁଧନର କ୍ଷେତ୍ରରେ ବିଶେଷ ତାଲିମ ପାଇଛନ୍ତି, ସେମାନେ ଅତ୍ୟନ୍ତ ନୈପୁଣ୍ୟ ସହିତ ବିଭିନ୍ନ କୃଷିଯନ୍ତ୍ର ଗୁଡ଼ିକୁ ମଧ୍ୟ ଚଲାଇ ପାରୁଛନ୍ତି । ପୂର୍ବରୁ ସେହି କୋଡ଼ି ଓ କୋଦାଳ ବଦଳରେ ଯେଉଁମାନେ ବର୍ତ୍ତମାନର ଉଦ୍‌ଭାବିତ ଯନ୍ତ୍ରଗୁଡ଼ିକୁ ବ୍ୟବହାର କରିବା ସକାଶେ ଆଗ୍ରହ ନକରିବେ ବା ସମର୍ଥ ନହେବେ, ସେମାନେ କୃଷିକାର୍ଯ୍ୟରେ କଦାପି ଯଥାନୁରୂପ ଭାବରେ ଆଗ୍ରହୀ ହୋଇ ପାରିବେନାହିଁ । କୋଠଗାଆଁ କୃଷିର କର୍ମୀମାନଙ୍କୁ ତେଣୁ କୁଶଳ ମେସିନ୍‌ଚାଳକ ମଧ୍ୟ ହେବାକୁ ପଡ଼ିବ । ଏବଂ, ପ୍ରଧାନତଃ ଏହାରି ଫଳରେ ହିଁ ସହର ଏବଂ ଗ୍ରାମ ମଧ୍ୟରେ ରହିଥିବା ପାର୍ଥକ୍ୟ ଗୁଡ଼ିକ ଦୂର ହୋଇଯିବ । କୋଠଗାଆଁ ମାନଙ୍କରେ ପ୍ରତ୍ୟେକ ଏକହଜାର ହେକ୍ଟାୟାର୍ କୃଷିକ୍ଷେତ୍ର ନିମନ୍ତେ କୃଷିଯନ୍ତ୍ରଗୁଡ଼ିକୁ ଚଲାଇ ପାରୁଥିବା ଅନ୍ତତଃ ଦଶଜଣ ଲୋକ ରହିଥିବା ଆବଶ୍ୟକ ହେବ । ତେବେଯାଇ ଆଶାନୁରୂପ ଭାବରେ ପ୍ରଚୁର କୃଷି-ଉତ୍ପାଦନ ସମ୍ଭବ ହେବ । ମାତ୍ର, ସାତ ଆଠ ବର୍ଷ ବୟସରେ ସଂପୃକ୍ତ ପ୍ରତ୍ୟେକେ ଯନ୍ତ୍ରର ଜଗତଟି ସହିତ ପରିଚିତ ହୋଇ ପାରିଥିଲେ ଯାଇ ତାହା ସମ୍ଭବ ହେବ । କାରଣ, ସେହି ସମୟରେ ହିଁ ବାସ୍ତବ ପ୍ରାତ୍ୟହିକ ଜୀବନରେ ବିଜ୍ଞାନର ଏହି ବହୁ ବହୁ ସାମର୍ଥ୍ୟର ପ୍ରବେଶ ଘଟାଇ ପାରିବାର କାର୍ଯ୍ୟଟି ଦେଶର ବୁଦ୍ଧିଗତ ବିକାଶର କ୍ଷେତ୍ରରେ ଏକ ଖାସ୍ କାର୍ଯ୍ୟକ୍ରମରେ ପରିଣତ ହୋଇ ସାରିଥିବ । (୧୧,୩୪୩)

ଏକଥାଟି ଏକାନ୍ତ ଅନୁଚିତ ଯେ, ଆମ ଛାତ୍ରମାନଙ୍କର ଆଦୌ କୌଣସି ନିଜସ୍ୱ ସ୍ୱତନ୍ତ୍ରତା ରହିବନାହିଁ, ସେମାନେ ଆଦୌ କିଛି କାର୍ଯ୍ୟ କରିବାଲାଗି ଉଦାସୀନତା ଦେଖାଇବେ କିମ୍ବା ନିଜକୁ ଗତିଶୀଳ ତଥା କର୍ମସଚଳ କରିବା ନିମନ୍ତେ ସେମାନେ କିଛିହେଲେ ଠାବ କରି ପାରିନଥିବେ । ଏକଥା ଆଦୌ ଠିକ୍ ନୁହେଁ ଯେ, ପ୍ରତ୍ୟେକ ମଣିଷ ହିଁ ଜ୍ଞାନୀ ହୋଇ ବାହାରିବେ, ଲେଖକ ଅଥବା ଅଭିନେତା ହେବେ । ସବୁ ମଣିଷ କେବେହେଲେ ବାରୁଦ ଆବିଷ୍କାର ବି କରିବେନାହିଁ; ତଥାପି, ନିଜ ନିଜର କାର୍ଯ୍ୟରେ ଜଣେ ଜଣେ କବି ବା କଳାକାର ହୋଇ ପାରିବାର ସାମର୍ଥ୍ୟଟି ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ନିଶ୍ଚୟ ରହିଥାଏ । ଏବଂ, ଜଣେ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶର କ୍ଷେତ୍ରରେ ଏଇଟିକୁ ଗୋଟିଏ ଅସଲ ମର୍ମସତ୍ୟ ବୋଲି

ଅବଶ୍ୟ କୁହାଯିବ । ଲୋକମାନେ କେବଳ ସେହି ଏକା ଗାରଟି ଭିତରେ ପଡ଼ିରହି କାର୍ଯ୍ୟ କରୁଛନ୍ତି ବୋଲି ଆମର ଧାରଣାଟିକୁ ଆମେ ସମ୍ପୂର୍ଣ୍ଣ ଭାବରେ ହିଁ ପରିତ୍ୟାଗ କରିଆସିବା ।

ଜଣେ ବ୍ୟକ୍ତି ହିସାବରେ ଯେଉଁ ମନୁଷ୍ୟଟିର କୌଣସି ପ୍ରିୟ କର୍ମର କ୍ଷେତ୍ର ନଥାଏ, ସିଏ କଦାପି ସଂସ୍କୃତି-କ୍ଷେତ୍ରର କୌଣସି ସମ୍ପଦ ବା ଉଚ୍ଚମୂଲ୍ୟ ଗୁଡ଼ିକରୁ କୌଣସି ଆନନ୍ଦ ଆହରଣ କରି ପାରିବନାହିଁ । (୯,୧୧୭)

ଆମର ସବୁ ପିଲା ନିଜ ନିଜର ପ୍ରିୟ ରୁଚିଟିର କ୍ଷେତ୍ରରେ ଯଥେଷ୍ଟ ନୈପୁଣ୍ୟ ଲାଭ କରନ୍ତୁ, ଆମେ ସେହି ବିଷୟରେ ନିଶ୍ଚିତ ହୋଇ ରହିବାର ହିଁ ଉଦ୍ୟମ କରୁଥାଉ । ଚରମ ସଫଳତାରେ ପହଞ୍ଚାଇ ଦେଉଥିବା ଏହି ପଥଟିରେ ସାଧାରଣତଃ ଦୀର୍ଘକାଳ ନିମନ୍ତେ ଏକ ସନ୍ଧାନରେ ବାହାରିବାକୁ ହିଁ ହୋଇଥାଏ । ପିଲାମାନେ ନାନାବିଧ କର୍ମରେ ନିଜର ହାତଗୁଡ଼ିକୁ ପରୀକ୍ଷା କରି ଦେଖୁଥାନ୍ତି, ବହୁତ ବହୁତ କୌଶଳରେ ନିପୁଣତା ଲାଭ କରନ୍ତି; ମାତ୍ର, ଯଦି ଜଣେ ପିଲା ନିଜ ବୟସର ଅନୁପାତରେ ସାଧାରଣ ତୁଳନାରେ ଆହୁରି ଉପରକୁ କୌଣସି ଗୋଟିଏ କ୍ଷେତ୍ରରେ ମଧ୍ୟ ସଫଳ ହେଉନଥାଏ, ସେଥିରୁ ସୂଚିତ ହୋଇଯାଏ ସିଏ ଏବେ ମଧ୍ୟ ତା'ର ସ୍ୱତନ୍ତ୍ର କ୍ଷେତ୍ରଟିକୁ ପାଇ ପାରିନାହିଁ । ଶ୍ରେଣୀ ବା ଗୋଷ୍ଠୀରେ ସମସ୍ତେ କରି ପାରୁଥିବା କୌଣସି କାର୍ଯ୍ୟରେ କେବଳ ସନ୍ତୋଷଜନକ ଭାବରେ, ଉତ୍ତମ ଭାବରେ ଓ ଏପରିକି ଅତ୍ୟୁତ୍ତମ ଧରଣର ସଫଳତାଟିଏ ଦେଖାଇ ଦେଇ ପାରିଲେ ତାହାକୁ ଆମେ କଦାପି ଯଥାର୍ଥ ବୋଲି କହିବାନାହିଁ । ପ୍ରତ୍ୟେକ ପିଲା ଖୁବ୍ ଭଲ ବୁଲ୍‌ବାଡ଼ୀଟିଏ ନିଶ୍ଚୟ ତିଆରି କରିଦେଇ ପାରିବ ବା ଗୋଟିଏ ଜେନେରେଟର୍‌ର ଅଂଶଗୁଡ଼ିକୁ ଏକତ୍ର ଖଞ୍ଜି ବି ଦେଇପାରିବ । ଚେଷ୍ଟା କଲେ ନିଶ୍ଚୟ ପାରିବ । ଅବଶ୍ୟ ସେଥିପାଇଁ କେତେ ପିଲା ଅନ୍ୟମାନଙ୍କ ତୁଳନାରେ କିଛି ଅଧିକ ଅଭ୍ୟାସ ଆବଶ୍ୟକ କରିବେ । କିନ୍ତୁ, ଗୋଟିଏ ପିଲା ଯଦି କୌଣସି କାର୍ଯ୍ୟରେ ପ୍ରକୃତରେ ନିମଜ୍ଜିତ ତଥା ପୂର୍ଣ୍ଣସକ୍ରିୟ ହୋଇ ରହିବାକୁ ଇଚ୍ଛା କରୁଥାଏ, ତେବେ ଏହା ଏକାନ୍ତଭାବେ ଆବଶ୍ୟକ ଯେ, ତା' ବୟସର ଅନ୍ୟମାନଙ୍କ ଠାରୁ ଏଥିଲାଗି ସର୍ବୋଚ୍ଚ ମାତ୍ରାଯାଏ ଯେତିକି ଦାବୀ କରା ଯାଉଥିବ, ଏହି ପିଲାଟି ତା'ଠାରୁ ଅଧିକ ସଫଳତାର ହିଁ ପ୍ରମାଣ ଦେବ । ସେହି ସଫଳତାକୁ ଆମେ ଯଥେଷ୍ଟ ଏବଂ ପ୍ରଭୂତ ବୋଲି କହିପାରିବା । ଆମ ବିଦ୍ୟାଳୟର ଷଷ୍ଠ ଓ ସପ୍ତମ ଶ୍ରେଣୀରେ ପଢୁଥିବା

ସବୁଯାକ ପିଲା ବହୁ ଉନ୍ନତ କିସମର ଫଳଗଛମାନଙ୍କୁ ଏକ ଜଙ୍ଗଲୀ ଗଛ ଉପରେ କଲମୀ କରିବାରେ ଉତ୍ତମ ପାରଙ୍ଗମତା ଅର୍ଜନ କରିଛନ୍ତି ଏବଂ ଏଭଳି ଏକ କାର୍ଯ୍ୟକୁ ମଧ୍ୟ ଆମେ ଆମ ସ୍କୁଲରେ ଆଦୌ ସେତେଗୁଡ଼ାଏ ସଫଳତା ବୋଲି ବିଚାର କରୁନାହିଁ । ତଥାପି, ଯଦି ତୃତୀୟ କିମ୍ବା ଚତୁର୍ଥ କକ୍ଷାର ପିଲାଟିଏ ସେହି କୌଶଳଟିକୁ ପ୍ରକୃତରେ ଆୟତ୍ତ କରିପାରୁଛି, ଦ୍ୱିତୀୟ ଶ୍ରେଣୀର ପିଲାଟେ ହୋଇଥିଲେ ତ ତାହା ଆହୁରି ଅଧିକ ପ୍ରଶଂସାର କଥା ହେବ, ତେବେ ତାହା ଏକ ବୃହତ୍ ସଫଳତା ବୋଲି ଅବଶ୍ୟ ଗଣ୍ୟ ହୋଇ ପାରିବ । (୧୧,୩୫୪)

ବୃହତ୍ ସଫଳତାର ଅର୍ଥ ହେଉଛି ଯେ ଜଣେ ପିଲା ତା' ଶ୍ରେଣୀର ଅନ୍ୟ ପିଲାଙ୍କୁ ଅତିକ୍ରମ କରି ଅଧିକ ଆଗକୁ ଚାଲି ଯାଇଥିବ । ଅବଶ୍ୟ ଏହି କଥାଟିର ଅର୍ଥ ନୁହେଁ ଯେ, ଗୋଟିଏ ଶ୍ରେଣୀରେ ଗୋଷ୍ଠୀର ଗୋଟିଏ ଦୁଇଟି ସଦସ୍ୟ ଅନ୍ୟମାନଙ୍କୁ ପଛରେ ପକାଇଦେଇ ଆଗକୁ ଚାଲି ଯାଉଥିବେ । ପ୍ରତ୍ୟେକ ପିଲାର ପରବର୍ତ୍ତୀ କାଳରେ ଏକ ବିଶେଷ ଭାବରେ ଭଲ ଲାଗୁଥିବା କ୍ଷେତ୍ରଟିଏ ଅବଶ୍ୟ ରହିବ, ଯେଉଁଥିରେ କି ସିଏ ପ୍ରଭୂତ ନହେଲେ ମଧ୍ୟ ଅନ୍ୟମାନଙ୍କର ଦୃଷ୍ଟି ପଡ଼ିଲାଭଳି ଏକ ସଫଳତା ଅବଶ୍ୟ ଅର୍ଜନ କରିଥିବ । (୧୧,୩୫୪)

ଶିକ୍ଷାର ତତ୍ତ୍ୱ ଏବଂ ବ୍ୟାବହାରିକ ପ୍ରୟୋଗର କ୍ଷେତ୍ରରେ କୌଣସି ଉତ୍ପାଦନକାରୀ ଶ୍ରମକୁ ଯେଉଁଭଳି ଏକ ରୀତିରେ ସଂଗଠିତ କରା ଯାଇଥାଏ, ତାହାର ଉପରେ ହିଁ ବହୁତ ଅଧିକ ମହତ୍ତ୍ୱ ପ୍ରବୃତ୍ତିମାନ ଆରୋପ କରା ଯାଉଥିବାର ମଧ୍ୟ ପରିଲକ୍ଷିତ ହୋଇଥାଏ । ଏଥିରେ ବହୁତ ସମୟରେ ଏହିସବୁ ବିଷୟର ଆଲୋଚନା କରା ଯାଇଥାଏ ପିଲାମାନଙ୍କୁ ଗ୍ରୀଷ୍ମମାସ ଗୁଡ଼ିକରେ ଯଥାସମ୍ଭବ ଅଧିକ ଫଳଦାୟକ ଭାବରେ ଶ୍ରେଣୀଗୁଡ଼ିକ ଅନୁସାରେ ବିଭାଜିତ କରି ରଖାଯିବ ଅଥବା ସମଗ୍ର ବିଦ୍ୟାଳୟର ଗୋଷ୍ଠୀଟିକୁ ଏକକରୂପେ ଗ୍ରହଣ କରି ସବୁ ଆରମ୍ଭ କରାଯିବ; ଏବଂ, ଯଦି ଶ୍ରେଣୀଗୁଡ଼ିକୁ ଗୋଟିଏ ଏକକରେ ଗୁନ୍ଥି ରଖା ଯାଇନାହିଁ, ତେବେ ପ୍ରତ୍ୟେକ ଶ୍ରେଣୀର ଗୋଷ୍ଠୀମାନଙ୍କ ଭିତରେ କିଭଳି ସମ୍ବନ୍ଧମାନ ରହିଥିବ, - ଇତ୍ୟାଦି, ଇତ୍ୟାଦି । ଏହିସବୁ ଆଲୋଚନାରେ, ଉକ୍ତ ପ୍ରଶ୍ନଗୁଡ଼ିକର ଯେଉଁ ପ୍ରକାରର ଉତ୍ତରସବୁ ଦିଆଯାଏ, ସଂପୃକ୍ତ ଉତ୍ପାଦନକାରୀ ଶ୍ରମଟିରେ ଶିକ୍ଷାଗତ ଭୂମିକାଟି ସିଧା ସେହିଗୁଡ଼ିକ ଉପରେ ହିଁ ନିର୍ଭର କରିବ । ଉତ୍ପାଦନକାରୀ ଶ୍ରମର କ୍ଷେତ୍ରରେ ନିତାନ୍ତ କୃତ୍ରିମ ଭାବରେ ଶ୍ରେଣୀ ଶ୍ରେଣୀ ହିସାବରେ ସମଷ୍ଟିଗୁଡ଼ିକୁ

ବାଣ୍ଟି ରଖିବାର ପ୍ରୟାସଟି ଦ୍ୱାରା ବିଦ୍ୟାଳୟକୁ ବାସ୍ତବ ଜୀବନଠାରୁ ବିଚ୍ଛିନ୍ନ କରି ରଖିବାଟା ହିଁ ପରିଣାମ ହୋଇଥାଏ । ସ୍କୁଲର ପିଲାମାନେ ସେମାନଙ୍କର ଶ୍ରେଣୀପିଲାଙ୍କ ସହିତ ଏକତ୍ର ହୋଇ କଦାପି ସର୍ବଦା କାର୍ଯ୍ୟ କରିବାକୁ ଇଚ୍ଛା କରିବେନାହିଁ ! ସେମାନେ କାରଖାନା ମାନଙ୍କରେ, କୋଠ ଚାଷ ଅଥବା ସରକାରୀ କୃଷିଫାର୍ମ ଗୁଡ଼ିକରେ ରହିଥିବା ଶ୍ରମକାରୀ ଗୋଷ୍ଠୀଗୁଡ଼ିକ ସହିତ ଯୋଗ ଦେବାକୁ ମଧ୍ୟ ଇଚ୍ଛା କରିବେ ଏବଂ ସେମାନଙ୍କୁ ଏହି ଦୃଷ୍ଟିକୋଣରୁ ହିଁ ପ୍ରସ୍ତୁତ କରାଇବା ଉଚିତ ହେବ । (୩,୩୩୦)

ମୁଁ ଭାବୁଛି, ଶ୍ରମର ଅବଧିଟି ସମାପ୍ତ ହୋଇଗଲେ ଯଦି ପିଲାମାନଙ୍କୁ ସେମାନଙ୍କର ନିଜ ନିଜ ଘରକୁ ଯିବାଲାଗି ବ୍ୟବସ୍ଥା କରି ଦିଆଯାଏ, ତେବେ ଶ୍ରମର ମାଧମରେ ଆମର ଅଭିପ୍ରେତ ଶିକ୍ଷାକ୍ରମଟି ସଫଳତାଯୁକ୍ତ ହୋଇପାରିବ । (୧୩,୨)

ପିଲାମାନଙ୍କର ସାମର୍ଥ୍ୟଗୁଡ଼ିକର ହିଁ ବିକାଶ ହେଉଥିବ, - ଏଇଟି ହେଉଛି ଗୋଟିଏ ମହତ୍ତ୍ୱପୂର୍ଣ୍ଣ, ଗତିଶୀଳ ପ୍ରକ୍ରିୟା । ଅଧିକାଂଶତର କ୍ଷେତ୍ରରେ, ସ୍କୁଲରେ ପାଠ ପଢୁଥିବା ସମୟରେ ଗୋଟିଏ ପିଲା ଯାହା କରିବ ବୋଲି ସ୍ୱପ୍ନ ଦେଖିଥିଲା ସିଏ ବାସ୍ତବ ଜୀବନରେ ତାହା ପ୍ରକୃତରେ ହୋଇ ପାରେନାହିଁ । ତଥାପି, ଯଦି ସିଏ ବିଶେଷ ଉଦ୍ୟମ କରୁଥାଏ, ତେବେ ସିଏ ନିଜର ଏକ କ୍ଷୁଦ୍ର "ଶିଖର" ଉପରେ ବିଜୟ ଲାଭ କରିବ, ଯାହାଦ୍ୱାରା କି ତାକୁ ପ୍ରଭୁତ ସଫଳତା ଅବଶ୍ୟ ପ୍ରାପ୍ତ ହୋଇ ପାରିବ । ଥରେ ସେଇ ପର୍ଯ୍ୟନ୍ତ ଆରୋହଣ କରି ଯାଇପାରିଲେ ସିଏ ବସ୍ତୁତଃ କେତେ ଅଧିକ ତଥା ଯୁଗପତ୍ ଭାବରେ କେତେ ଅଳପ ହାସଲ କରି ପାରିଛି, ସିଏ ସେକଥାଟିକୁ ଉପଲବ୍ଧି କରିପାରିବ; କାରଣ, ସିଏ ବର୍ତ୍ତମାନ ଛିଡ଼ା ହୋଇଥିବା କ୍ଷୁଦ୍ର ଶିଖରଟିରୁ ହିଁ ତଥାପି ଆରୋହଣ କରିବାକୁ ବାକୀ ରହିଥିବା ଉଚ୍ଚତାଗୁଡ଼ିକୁ ପୂର୍ବାପେକ୍ଷା ବହୁତ ଅଧିକ ସ୍ପଷ୍ଟ ଭାବରେ ସେ ନିଶ୍ଚୟ ଦେଖି ମଧ୍ୟ ପାରୁଥିବ ।(୧୧,୩୫୫)

# ଚତୁର୍ଥ ଅଧ୍ୟାୟ

# ସୌନ୍ଦର୍ଯ୍ୟ

## ମାନବତ୍ୱର କ୍ଷେତ୍ରକୁ, ସୌନ୍ଦର୍ଯ୍ୟ-ଅନୁଶୀଳନର ମାର୍ଗରେ

ଆମେ ପିଲାମାନଙ୍କୁ ଶିକ୍ଷା ଦେଉ ଯେ ମନୁଷ୍ୟ ଆପଣାକୁ ଇତରପ୍ରାଣୀ ମାନଙ୍କର ଜଗତଟି ଠାରୁ ଅଲଗା କରିନେଲା ଓ ଏପରି ଏକ ସତ୍ତାରେ ପରିଣତ ହୋଇପାରିଲା ଯାହାରକି କେବଳ ହାତରେ କାମ କରିବାର ଉପକରଣଗୁଡ଼ିକୁ ସର୍ବପ୍ରଥମେ ତିଆରି କରିବାର ପ୍ରତିଭାଟିଏ ରହିଥିଲା, ମାତ୍ର, ମନୁଷ୍ୟଟିଏ ହୋଇ ନୀଳ ଆକାଶର ଗଭୀରତାଟିକୁ ମଧ୍ୟ ଦେଖିପାରିଲା, ତାରାମାନଙ୍କର ଚକଚକ କରୁଥିବା ଆଲୋକର ପ୍ରତ୍ୟକ୍ଷ କରିପାରିଲା, ପ୍ରତ୍ୟୁଷ ଏବଂ ସନ୍ଧ୍ୟାରେ ଆକାଶର ଗୋଲାପୀ ଆଭାଗୁଡ଼ିକୁ ଦେଖି ମୁଗ୍ଧ ହେଲା, ଖର ଭାବରେ ବହୁଥିବା ବାୟୁସୌତ ଦ୍ୱାରା ଚଞ୍ଚଳ ଦିନଶେଷରେ ରକ୍ତବର୍ଣ୍ଣ ଆକାଶକୁ ଦେଖି ପାରିଲା । ବିସ୍ତୃତ ତୃଣଭୂମିର ସୀମାହୀନ ଦୃଶ୍ୟପଟ ଗୁଡ଼ିକୁ ଦେଖି ବିସ୍ମିତ ହେଲା । ପୁନଶ୍ଚ, ନୀଳ ଆକାଶର ମାର୍ଗ ଦେଇ କେଉଁଠାରେ ଏକ ଯୂଥ ବଗ ହୁଏତ ଉଡ଼ି ଯାଉଥିଲେ, କୌଣସି ଉଜ୍ଜ୍ୱଳ ପ୍ରଭାତସମୟରେ କାକରବିନ୍ଦୁ ଗୁଡ଼ିକ ଉପରେ ସୂର୍ଯ୍ୟରଶ୍ମି ପ୍ରତିଫଳିତ ହୋଇ ରହିଥିଲା, କେବେ କେବେ ଶରତକାଳର କୌଣସି ମେଘୁଆ ଦିନରେ ସୂର ଧୂସର ସୂତାଗୁଡ଼ିକର ଭ୍ରମ ଦେଇ କେତେ ଅସରା ବରଷା ମଧ୍ୟ ବରଷି ଯାଉଥିଲା, ତଥା ଥୋପା ଥୋପା ହୋଇ ତୁଷାର ମଧ୍ୟ ବର୍ଷି ଯାଉଥିଲା । ମନୁଷ୍ୟ ଏଗୁଡ଼ିକୁ ଦେଖି ବିସ୍ମିତ ହେଉଥିଲା ଏବଂ ସ୍ୱୟଂ ସୁନ୍ଦର କରି କିଛି ସୃଜି ଦେବା ସକାଶେ ବି ମନ ବଳାଇଲା । ନିଜ ବାଟଟିକୁ ଚାଲୁ ଚାଲୁ ଆମେ ମଧ୍ୟ ଦଣ୍ଡେ ଅଟକି ଯାଇ ସୌନ୍ଦର୍ଯ୍ୟଗୁଡ଼ିକୁ ଅନୁଭବ କରିପାରିବା, ସୌନ୍ଦର୍ଯ୍ୟର ପ୍ରଶଂସା କରିବା ଏବଂ ତା'ପରେ ସୌନ୍ଦର୍ଯ୍ୟ ମଧ୍ୟ ଆମ ହୃଦୟଗୁଡ଼ିକରେ ପ୍ରସ୍ଫୁଟିତ ହୋଇ ଉଠିବାକୁ ଆରମ୍ଭ କରିବ ।

ମନୁଷ୍ୟ ଆପଣାକୁ ସତକୁ ସତ ଚିହ୍ନିଲା, ଯେତେବେଳେ ସେ ପବନ ମଧ୍ୟରେ ପତ୍ରଗୁଡ଼ିକର ମର୍ମରକୁ ଶୁଣି ପାରିଲା, ଝିଙ୍କାରୀର ଝିଁ ଝିଁ ଶବ୍ଦ ଆସି ତା' କାନରେ ବାଜିଲା, - ବହି ଯାଉଥିବା କୌଣସି ଏକ ଝରଣା ତରଙ୍ଗଗୁଡ଼ିକୁ ସୃଷ୍ଟି କରୁଥିଲା ଏବଂ ଗ୍ରୀଷ୍ମକାଳୀନ ଆକାଶର ଅତଳ ସେହି ଗର୍ଭଟି ମଧ୍ୟକୁ ଉଡ଼ି ଚାଲି ଯାଉଥିବା ଚାତକପକ୍ଷୀଟି ମଧ୍ୟ ଗୀତ ଗାଇବାରେ ଲାଗିଥିଲା । ବରଫଖଣ୍ଡମାନେ ଫଡ଼ଫଡ଼ ଶବ୍ଦ କରୁଥିଲେ ଓ ଝରକା ସେପଟେ ବାହାରେ ବତାସଟିଏ ବାହୁନିବାରେ ଲାଗିଥିଲା । ପରସ୍ପର ସହିତ ପିଟିହୋଇ ଯାଉଥିବାରୁ ଢେଉମାନେ ମଧ୍ୟ ଶବ୍ଦ କରୁଥିଲେ ଏବଂ ରାତି ମଧ୍ୟ ଏକ ଶାନ୍ତ ଗାମ୍ଭାର୍ଯ୍ୟରେ କାୟା ବିସ୍ତାରି ରହିଥିଲା । ମନୁଷ୍ୟ ଏହି ସବୁକିଛିକୁ ଶୁଣିବାକୁ ସମର୍ଥ ହେଲା ଏବଂ, ସେଗୁଡ଼ିକୁ ସ୍ତବ୍ଧ ହୋଇ ଶୁଣୁ ଶୁଣୁ ଏହିପରି ହଜାର ହଜାର ବର୍ଷ ଅତିବାହିତ ହୋଇଗଲା । ପିଲାମାନେ, ତୁମେମାନେ ମଧ୍ୟ ସେହି ସଂଗୀତକୁ ଶୁଣିବାଲାଗି ନିଶ୍ଚୟ ସମର୍ଥ ହେବ ଏବଂ ସୌନ୍ଦର୍ଯ୍ୟର ଏହି କ୍ଷେତ୍ରଗୁଡ଼ିକରେ ପ୍ରବେଶ କରି ଅପାର ଆନନ୍ଦ ଲାଭ କରିବ । (୧୧,୩୭୩)

ପିଲାମାନଙ୍କର ଚିତ୍ତରେ ଯେପରି ସୁନ୍ଦରର ଅବଧାରଣାମାନ ସମ୍ଭବ ହୋଇ ପାରିବ, ଆମେ ସେଥିଲାଗି ବହୁତ ଓ ପର୍ଯ୍ୟାପ୍ତ ସମୟ ଯୋଗାଇ ଦେଉ । ବସ୍ତୁତଃ, ସେମାନଙ୍କ ନିମନ୍ତେ ସୌନ୍ଦର୍ଯ୍ୟକୁ ଅନୁଭବ କରିବାର ଗୋଟିଏ ଅନୁରୂପ ପରିବେଶ ଯୋଗାଇ ଦେବାର ପ୍ରୟାସରେ ଏହିଠାରୁ ହିଁ ଆମର କାର୍ଯ୍ୟ ଆରମ୍ଭ ହୋଇଥାଏ । ଆମ ସ୍କୁଲଟି ମଧ୍ୟରେ ଆସି ପ୍ରବେଶ କଲା ପରେ ଗୋଟିଏ ପିଲା ଏଠାରେ ଯେତେ ଯାହା ଦେଖେ, ସେଥିରେ ସିଏ ସୁନ୍ଦରର ପ୍ରତ୍ୟକ୍ଷ ହିଁ କରିଥାଏ । ବିଦ୍ୟାଳୟର ସାଧାରଣ ଚେହେରାଟି ବଡ଼ ସୁନ୍ଦର, - କାରଣ ଏକ ସୁବିସ୍ତୃତ ସବୁଜିମାର କ୍ରୋଡ଼ରେ ହିଁ ତାହାକୁ ତିଆରି କରାଯାଇଛି । ସବୁଜ ରଙ୍ଗର ଦ୍ରାକ୍ଷାଲତା ଗୁଡ଼ିକ କେତେ ଆଡ଼େ ମାଡ଼ିକରି ରହିଛନ୍ତି ଓ ସେଗୁଡ଼ିକରୁ ହଳଦିଆ ରଙ୍ଗର ଦ୍ରାକ୍ଷାଫଳମାନେ ତଳକୁ ଝୁଲିଛନ୍ତି । ଗୋଟିଏ ଅଟ୍ଟାଳିକାରୁ ଆଉଗୋଟିଏ ଯିବାର ବାଟରେ ଗୋଲାପର ଲତାମାନେ କେଡ଼େ ସୁନ୍ଦର ହୋଇ ମାଡ଼ିଛନ୍ତି । ଏହି ବିଦ୍ୟାଳୟର ବଗିଚାଟିରେ ଯେକୌଣସି ଋତୁରେ ମଧ୍ୟ ବୃକ୍ଷମାନେ ବହୁତ ସୁନ୍ଦର ଦେଖା ଯାଆନ୍ତି । ସ୍କୁଲର ମୁଖ୍ୟ ଫାଟକଟି ଉପରେ ମଧ୍ୟ ବଣଅଙ୍ଗୁରର ଲତାମାନ ମାଡ଼ିଛି ଓ ଭାରି ସୁନ୍ଦର ମଧ୍ୟ ଦେଖାଯାଉଛି । (୧୧,୩୮୯)

ଆମ ସ୍କୁଲରେ ଚାରୋଟି ଅଟ୍ଟାଳିକା ଶ୍ରେଣୀକାର୍ଯ୍ୟ ସକାଶେ ବ୍ୟବହାର ହୁଏ । ପ୍ରତ୍ୟେକ ଅଟ୍ଟାଳିକା ନିକଟରେ ଗୋଟିଏ ଘାସ ଲନ୍ ତିଆରି କରାହୋଇଛି । ଏପରି କୌଣସି ଅରାଏ ବୋଲି ସ୍ଥାନ ନାହିଁ, ଯେଉଁଠାରେ କି ସବୁଜିମାକୁ ବାଦ୍ ଦିଆଯାଇଛି । ଏପରି ରହିବାଦ୍ୱାରା ଯେ କେବଳ ପରିଷ୍କାର-ପରିଚ୍ଛନ୍ନତା ରକ୍ଷା କରିବା ଦିଗରେ ଏକ ମହତ୍ତ୍ୱପୂର୍ଣ୍ଣ ଦିଗକୁ ଧ୍ୟାନ ଦିଆଯାଇଛି ତା' ନୁହେଁ, ଏହାଦ୍ୱାରା ସୌନ୍ଦର୍ଯ୍ୟବୋଧର ନିୟମଟିର ମଧ୍ୟ ରକ୍ଷା ହୋଇ ପାରିଛି । (୯,୧୭୪)

ଏହି ପରିବେଶଟିର ସୌନ୍ଦର୍ଯ୍ୟବୋଧଗତ ଦିଗଟିକୁ ରକ୍ଷା କରାଯାଇ ଯେ ପାରିଛି, କାରଣ ଏଠି ପ୍ରାକୃତିକ ତଥା ମନୁଷ୍ୟକୃତ ଉଭୟଟି ମଧ୍ୟରେ ଏକ ସୌଷମ୍ୟ ସମ୍ଭବ ହୋଇଛି ; ଏବଂ ତାହା ସର୍ବୋପରି ଗୋଟିଏ ଆନନ୍ଦମୟ ଅନୁଭବକୁ ଜାଗ୍ରତ କରି ଆଣୁଛି । ଆମେ ଏହି କଥାଟି ଉପରେ ସୁନିଶ୍ଚିତ ଭାବରେ ଦୃଷ୍ଟି ଦେଇଥାଉ ଯେ, ବିଦ୍ୟାଳୟର ଉଦ୍ୟାନରେ ଆମ ପିଲାମାନେ ସର୍ବଦା ପ୍ରକୃତିର ସୌନ୍ଦର୍ଯ୍ୟ ଉପସ୍ଥିତ ରହିଥିବା ପରି ଅନୁଭବ କରି ପାରିବେ, - ଏହି ବାତାବରଣଟିର ଆହୁରି ଅଧିକ ପ୍ରଭାବ ମଧ୍ୟ ଅବଶ୍ୟ ପଡ଼ିବ, କାରଣ ପିଲାମାନେ ଆପଣାର ଶ୍ରମଦ୍ୱାରା ହିଁ ନିଜର ପରିପାଶ୍ୱଟିକୁ ଏପରି ସୌନ୍ଦର୍ଯ୍ୟପୂର୍ଣ୍ଣ କରି ତିଆରି କରି ପାରିଛନ୍ତି । (୧୧,୩୮୯)

ନିଜ ପରିପାର୍ଶ୍ୱଟିର ସୌନ୍ଦର୍ଯ୍ୟ ଦ୍ୱାରା ମୁଗ୍ଧ ୭ ରୁ ୧୧ ବର୍ଷ ବୟସର ଗୋଟିଏ ପିଲାକୁ ଭାରି ସହଜରେ ପ୍ରତ୍ୟକ୍ଷ ଶ୍ରମର କାର୍ଯ୍ୟକ୍ରମ ମଧ୍ୟକୁ ସାମିଲ କରି ଅଣାଯାଇ ପାରିବ ।.... ଶ୍ରମ କରି ପିଲାମାନେ ପ୍ରକୃତରେ ଆନନ୍ଦ ହିଁ ପାଆନ୍ତି, - କାରଣ ସେହି ଶ୍ରମଦ୍ୱାରା ସେମାନେ ସୁନ୍ଦର ବା ଅସାଧାରଣ କରି କିଛି ସମ୍ଭବ କରିବାରେ ସମ୍ମିଳିତ ହୋଇ ରହିଥାନ୍ତି । ଯେକୌଣସି ପ୍ରକାରେ ହେଉ ପଛକେ, ଗୋଟିଏ ପିଲାର ସେହି ସ୍ୱାଭାବିକ ପ୍ରବୃତ୍ତିଟିକୁ ଅବଶ୍ୟ ବିକଶିତ କରାଇ ଆଣିବାକୁ ପଡ଼ିବ । ଆମ ଶିକ୍ଷାଦାନର କାର୍ଯ୍ୟକ୍ରମଗୁଡ଼ିକୁ ଆମେ ଏପରି ଭାବରେ ସଂଗଠିତ କରୁ ଯେ, ସବୁଠାରୁ କମ୍ ବୟସର ପିଲାମାନଙ୍କର କାର୍ଯ୍ୟଗୁଡ଼ିକ ମୂଳତଃ ଏକ ସୌନ୍ଦର୍ଯ୍ୟବୋଧ ଉଦ୍ରେକ କରାଇ ଆଣିବାର ଏକ କାର୍ଯ୍ୟକ୍ରମ ହିଁ ହୋଇ ରହିଥାଏ । (କାଠକାମ, ଖୋଦେଇ କାମ, ସିଲେଇ କାମ, ଫୁଲଗଛର ପଟାଳି ତିଆରି କରିବା, ସାନ ଓ ବଡ଼ ବୃକ୍ଷମାନଙ୍କର ଯତ୍ନ ନେବା ଇତ୍ୟାଦି) ଯେଉଁସବୁ ଶ୍ରମଦ୍ୱାରା ସୌନ୍ଦର୍ଯ୍ୟର ଅନୁଭବଟିଏ ଉନ୍ମେଷିତ ହୋଇ ଆସିଥାଏ, ତାହା ପିଲାଟି ଭିତରେ

ଶ୍ରମଦ୍ୱାରା ସମ୍ଭବ ହୋଇ ପାରୁଥିବା ଏକ ସୌନ୍ଦର୍ଯ୍ୟବୋଧଗତ ସଜ୍ଞାନତାକୁ ମଧ୍ୟ କ୍ରମଶଃ ଜାଗ୍ରତ କରି ଆଣେ ତଥା କେବଳ ଅତିବେଶୀ ଲାଭଦାୟକ କାର୍ଯ୍ୟମାନ ହାତକୁ ନେବା ନିମନ୍ତେ ନୁହେଁ, ଅତି ସୁନ୍ଦର ପ୍ରଣାଳୀମାନ ପ୍ରୟୋଗ କରି କରା ଯାଉଥିବା କାର୍ଯ୍ୟଗୁଡ଼ିକ ନିମନ୍ତେ ମଧ୍ୟ ଆସ୍ପୃହା ଜାତ କରାଏ । (୬,୬୧)

ସ୍କୁଲର ବଗିଚାଟି ଯେତେବେଳେ ଫୁଟା ଫୁଲରେ ଭରିଯାଏ, ସେତେବେଳେ ତାହାକୁ ଆମ ପିଲାମାନଙ୍କ ନିମନ୍ତେ ଗୋଟିଏ ବିଶେଷ ସମୟ ବୋଲି କୁହାଯିବ । ବଡ଼ି ଭୋରରୁ ଉଠି ଆମେ ସେହି ବଗିଚା ଭିତରକୁ ଯାଉ ଏବଂ ଧଳା, ନାଲି ଓ କମଳା ରଙ୍ଗର କେତେ ଜାତି ଫୁଲ ଫୁଟି ବଗିଚାଟି ହସୁଥିବାର ଦେଖି ମୁଗ୍ଧ ହେବାରେ ଲାଗିଥାଉ । ମହୁମାଛି ମାନଙ୍କର ଗୁଣୁଗୁଣୁ ଶୁଣିବାରେ ଲାଗୁ । ଆମେ ପିଲାମାନଙ୍କୁ ବୁଝାଇଦେଉ ଯେ, ଏତେ ଏତେ ଫୁଲ ଫୁଟୁଥିବାର ବର୍ଷର ଏହି ସମୟଟିରେ ଡ଼େରି ଯାଏ ବିଛଣାରେ ପଡ଼ି ରହିବାଟା ପ୍ରକୃତରେ ଅତ୍ୟନ୍ତ ଦୁର୍ଭାଗ୍ୟର କଥା; - କାରଣ, ଏଣେ ସବୁ ସୌନ୍ଦର୍ଯ୍ୟ ଭିତରେ ଚହଟି ଉଠୁଥିବ ଓ ତେଣେ ସେମାନେ ସେତେବେଳେ ନିଦରେ ହିଁ ଶୋଇ ପଡ଼ିଥିବେ । ପିଲାମାନେ ତ ବହୁତ ଦିନ ସୂର୍ଯ୍ୟୋଦୟ ଆଗରୁ ହିଁ ଉଠିପଡ଼ନ୍ତି; - ସୂର୍ଯ୍ୟକିରଣ ଆସି ସେହି ଫୁଲଗୁଡ଼ିକ ଉପରେ ପ୍ରଥମ କରି କାକର ବିନ୍ଦୁମାନ ପଡ଼ିଥିବାର ସେହି ମୁହୂର୍ତ୍ତଗୁଡ଼ିକୁ ସେମାନେ ଆଦୌ ହରାଇ ଦେବାକୁ ଚାହାନ୍ତିନାହିଁ । ଏକ ନିସ୍ତବ୍ଧ ବିସ୍ମୟ ମଧ୍ୟରେ ପିଲାମାନେ ସମ୍ମୁଖର ସେହି ସୌନ୍ଦର୍ଯ୍ୟ ଆଡ଼କୁ ଅବଲୋକନ କରିବାରେ ଲାଗିଥାନ୍ତି । ଏହି ଅବସରଟିକୁ ଦେଖାଇ ଦିଆଯାଉ ନଥିଲେ ଓ ସେହି ବିଷୟରେ ସେମାନଙ୍କୁ କିଛି କୁହା ଯାଉନଥିଲେ ସେମାନେ ହୁଏତ ସେହି ସୌନ୍ଦର୍ଯ୍ୟଟିକୁ ଦୃଷ୍ଟି ଦେଇ ପାରୁନଥାନ୍ତେ । (୧୧,୩୭୬)

ଭୋର ବେଳେ ଗୋଟିଏ ସାନ ପିଲାକୁ ତୁମେ ନିଦରୁ ଉଠାଇବ, ବାହାରକୁ ନେବ ଏବଂ କ୍ଷେତମାନଙ୍କରେ ଯାଇ ପହଞ୍ଚିବ, - ଏଇଟି ବେଶ୍ ଏକ କଷ୍ଟକର କଥା । ତା'ର ନିଦ ତାକୁ ପ୍ରକୃତରେ ଖୁବ୍ ମିଠା ଲାଗୁଥିବ । କିନ୍ତୁ, ଯଦି ପ୍ରଥମ ଥରଟା ଏପରି କରିବା ନିମନ୍ତେ ତୁମେ ତାକୁ ସାହାଯ୍ୟ କରିପାରିବ ଏବଂ ପ୍ରତ୍ୟୁଷ ହୋଇ ଆସୁଥିବାର ସୌନ୍ଦର୍ଯ୍ୟଟି ଆଡ଼କୁ ତା'ର ଚକ୍ଷୁରୁନ୍ମୀଳନ ଘଟାଇ ପାରିବ, ଯଦି ସେହି ନୂଆ ଦିନଟିର ସଙ୍ଗୀତକୁ ସିଏ ଥରେମାତ୍ର ଶ୍ରବଣ କରିବ, ତେବେ ସିଏ ଏତେ ଶୀଘ୍ର ବିଛଣାରୁ ଉଠିବା ବିଷୟରେ ଆଉ କଦାପି କୌଣସି ଆଳସ୍ୟ

ଦେଖାଇବ ନାହିଁ । ସିଏ ନିଶ୍ଚୟ ଉଠିବ, ବାହାରକୁ ଯିବାପାଇଁ ତିଆରି ହୋଇଯିବ, - ପ୍ରକୃତିର ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେବ ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ଆଦୌ ଦୁଃଖ କରିବନାହିଁ ଯେ ସିଏ ଏଥିପାଇଁ ଆଉ ଅଧିକ ସମୟ ଶୋଇ ପାରୁନଥିଲା ଏବଂ ସେହିସବୁ ସୌନ୍ଦର୍ଯ୍ୟକୁ ଦେଖି ପାରୁଥିଲା । ...(୯,୧୭୩)

. ସାନ ପିଲା ଓ କିଶୋରମାନଙ୍କ ପାଇଁ ଏହା ବିଶେଷ ଭାବରେ ମହତ୍ତ୍ୱପୂର୍ଣ୍ଣ ଯେ, ସେମାନେ ଆପଣା ଭିତରେ ଚରିତ୍ରରୂପୀ ସୌନ୍ଦର୍ଯ୍ୟଟିକୁ ମଧ୍ୟ ଆବିଷ୍କାର ତଥା ଆଘ୍ରାଣ କରି ପାରିବେ, ନିଜ ଭିତରେ ରହିଥିବା ମାନବୋଚିତ ସୁନ୍ଦର ଉପାଦାନ ଗୁଡ଼ିକରେ ପୁଲକ ଅନୁଭବ କରୁଥିବେ ( ସୌନ୍ଦର୍ଯ୍ୟର ମାର୍ଗ ଦେଇ ମାନବୋଚିତ ଗୁଣଗୁଡ଼ିକୁ ଯେଉଁ ବାଟଟି ପଡ଼ିଥାଏ, ତାହାକୁ ଚରିତ୍ରଗଠନର ଏକ ଅନ୍ୟତମ ମୂଳଭୂତ ପ୍ରଣାଳୀ ବୋଲି କୁହାଯାଇ ପାରିବ । (୧୪,୨)

ଯୁବାବୟସ ନିମନ୍ତେ ଏହି ନିୟମଟିକୁ ଆମେ ବିଶେଷ ଭାବରେ ଉପଯୁକ୍ତ ବୋଲି ଗ୍ରହଣ କରିବା: ପ୍ରକୃତିର ସୌନ୍ଦର୍ଯ୍ୟ ବିଷୟରେ ତଥା କଳା ବିଷୟରେ ଜଣେ ମନୁଷ୍ୟ ଯେତିକି ସଚେତନ ହୋଇ ପାରିବ, ତା' ନିଜ ଭିତରେ ରହିଥିବା ସୁନ୍ଦର ଦିଗଟି ମଧ୍ୟ ତା'ପାଇଁ ସେତିକି ଉଦ୍‌ଘାଟିତ ହୋଇଯିବାରେ ଲାଗିଥିବ । (୬,୨୦୭)

## ସୌନ୍ଦର୍ଯ୍ୟ ବ୍ୟତୀତ ପରୀ-ଗଳ୍ପ କଦାପି ସମ୍ଭବ ନୁହେଁ

ଶିକ୍ଷାବିତ୍‌ମାନଙ୍କ ପାଇଁ ସୃଜନଶୀଳତାର ବିଷୟଟି ଏବେ ମଧ୍ୟ ଗୋଟିଏ ଅନାବିଷ୍କୃତ ରାଜ୍ୟପରି ହୋଇ ରହିଛି ଏବଂ, ଏଇଟି ବିଷୟରେ ପୂର୍ଣ୍ଣ ଜ୍ଞାନ ଅର୍ଜନ କରିବାକୁ ହେଲେ ତାହାର ଶିକ୍ଷା-ସମ୍ବନ୍ଧୀୟ ତାତ୍ପର୍ଯ୍ୟଟି ବିଷୟରେ ବିଶଦ ଅନୁସନ୍ଧାନ କରାଯିବା ଅତ୍ୟାବଶ୍ୟକ । (୧୨,୩୧୫)

କିଶୋର ବୟସର ଜଣେ ପିଲା କ'ଣ ପାଇଁ ନିଜ ଅଧ୍ୟୟନର କ୍ଷେତ୍ରରେ ଏକ ଉଦାସୀନତାର ଭାବ ଦେଖାଇଥାଏ, - ଅଥବା, ଆହୁରି ସିଧା କରି କହିଲେ, ଅଧ୍ୟୟନ ପ୍ରତି ସେ କାହିଁକି ଅନିଚ୍ଛା ପ୍ରକଟ କରେ ? ଏହାର ଗୋଟିଏ ପ୍ରଧାନ କାରଣ ହେଉଛି ଯେ, ସେହିସବୁ ପିଲାଙ୍କର ଆବେଗଗତ ତଥା ବୌଦ୍ଧିକ ଜୀବନରେ ସୃଜନାତ୍ମକ ଉପାଦାନର ଏକ ଅଭାବ ରହିଥାଏ ଅଥବା ତାହା ଯଥେଷ୍ଟ ପରିମାଣରେ ବିଦ୍ୟମାନ ନଥାଏ । ସେମାନେ ପୂରା ପିଲା ଥିବାବେଳେ ଯେଉଁସବୁ ପ୍ରେରଣା ଯଥେଷ୍ଟ ହେଉଥିଲା, ବର୍ତ୍ତମାନର କିଶୋରଟି ନିମନ୍ତେ ତାହା ଆଦୌ ଯଥେଷ୍ଟ

ହୁଏନାହିଁ । ଆଗ ଭଳି ସିଏ ସମ୍ମାନ କରୁଥିବା ଓ ଭଲ ପାଉଥିବା ବଡ଼ମାନଙ୍କର ଇଚ୍ଛା ଅନୁସାରେ କାର୍ଯ୍ୟ କରିବ ଅଥବା ସେମାନଙ୍କର ବୋଲକୁ ମାନିବ, ତାକୁ ସେଥିଲାଗି ଉତ୍ସାହ ଦିଆଯିବ ଓ ପ୍ରଶଂସା କରାଯିବ, ଏତିକି ମୋଟେ ଯଥେଷ୍ଟ ହୁଏନାହିଁ । ବର୍ତ୍ତମାନ ତ ସେ ଆପଣାକୁ ବ୍ୟକ୍ତ କରିବାକୁ ଚାହେ; କେବଳ ତା' ଅଧ୍ୟୟନର ଫଳଗୁଡ଼ିକର ମାଧ୍ୟମରେ ନୁହେଁ, ତା' ନିଜ ଅନ୍ତର୍ଗତ ପୃଥିବୀଟି ମଧ୍ୟରେ ମଧ୍ୟ ନିଜକୁ ବ୍ୟକ୍ତ କରିବାକୁ ଇଚ୍ଛା କରେ । ଏଣିକି ସିଏ କେବଳ ସଂସ୍କୃତି ଭିତରେ ରହିଥିବା ସମ୍ପଦ ଓ ମୂଲ୍ୟଗୁଡ଼ିକର ଏକତରଫା ଭାବରେ ଉପଭୋକ୍ତା ହୋଇ ରହିବାରେ ଆନନ୍ଦ ପାଏନାହିଁ । ନିଜେ କିଛି ସୃଷ୍ଟି କରିବାର ପ୍ରୟୋଜନଟିଏ ଅନୁଭବ କରେ । ସାଂସ୍କୃତିକ ମୂଲ୍ୟଗୁଡ଼ିକୁ ଉତ୍ପନ୍ନ କରି ଆଣୁଥିବା ଏକ କର୍ମର ମାଧମରେ ଆପଣାକୁ ସୃଜନାତ୍ମକ ଭାବରେ ବ୍ୟକ୍ତ କରି ଆଣିବା, - ବୁଦ୍ଧି ତଥା ଆବେଗର ଜୀବନଟିରେ ପରିପୂର୍ଣ୍ଣତା ସମ୍ଭବ କରିପାରିବା ନିମନ୍ତେ କର୍ମ ମାଧମରେ ଏକ ସୃଜନାତ୍ମକ ପ୍ରେରଣା ହିଁ ତାହା କରିବାକୁ ସମର୍ଥ ହୁଏ । (୧୨,୩୧୬)

କିଶୋର ବୟସର ପିଲାମାନଙ୍କୁ ଶିକ୍ଷା ଦେବାର କ୍ଷେତ୍ରରେ ଯେଉଁଟିକୁ ନଜାଣିଥିଲେ ସମସ୍ୟାଗୁଡ଼ିକ ଅତୀବ ଜଟିଳ ହୋଇ ଯାଇଥାନ୍ତି, ମୋ' ନିଜର ଶିକ୍ଷକ-ଜୀବନରେ ମୁଁ ସେହି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ କଥାଟି ବିଦ୍ୟମାନ ରହିଛି ବୋଲି କ୍ରମଶଃ ବିଶ୍ୱାସ କରିବାକୁ ଆରମ୍ଭ କରିଛି । ପଞ୍ଚମ ଓ ଷଷ୍ଠ ଶ୍ରେଣୀର ପିଲାମାନେ ସେମାନଙ୍କୁ ପର୍ବତ ସମାନ ନିୟମିତ ପାଠର ଧରାଇ ଦିଆ ଯାଉଥିଲେ ସତେଅବା କେଡ଼େ ଉଲ୍ଲସିତ ହୁଅନ୍ତି । ପ୍ରାଥମିକ ଶ୍ରେଣୀ ବେଳର ପାଠ ତୁଳନାରେ ଦଶଗୁଣ ଅଧିକ ହୋଇଥିଲେ ମଧ୍ୟ ଆଦୌ ଅପ୍ରସନ୍ନ ହୁଅନ୍ତିନାହିଁ । ଜ୍ଞାନର ପରିସରଟି ଯେତିକି ଅଧିକ ପ୍ରଶସ୍ତ ହେଉଥାଏ, ତାକୁ ସେଥିଲାଗି ସେତିକି ବୌଦ୍ଧିକ ପ୍ରୟାସ କରିବାକୁ ମଧ୍ୟ ପଡ଼ିଥାଏ । ଏହି ସ୍ତରଟିରେ ଜଣେ ବ୍ୟକ୍ତି ହିସାବରେ ପ୍ରଦତ୍ତ ହେଉଥିବା ନିର୍ଦ୍ଦିଷ୍ଟ କାର୍ଯ୍ୟଗୁଡ଼ିକୁ ହିଁ ଅଧିକ ମହତ୍ତ୍ୱ ଦେବାକୁ ହୁଏ । ତେବେ ଯାଇ ତାହା ଆବେଗଗୁଡ଼ିକର ଉଚିତ ଶୁଶ୍ରୂଷା କରିପାରେ । ତା' ନହେଲେ ଏକ ଉତ୍ସାହହୀନତା ଆସି କାମୁଡ଼ି ଧରୁଥିବା ପରି ମନେ ହୁଏ । ଏହି କ୍ଷେତ୍ରରେ ପୁସ୍ତକ-ପଠନ, ନାଟକ-ଅଭିନୟ, ପରାଗଳ୍ପଗୁଡ଼ିକୁ କହିବା ଏବଂ ଶୁଣିବା ତଥା ହୃଦୟ ଭିତରକୁ ଗ୍ରହଣ କରିନେବା, - ଏହି ସବୁକିଛି ଅନ୍ତର୍ଗତ ରହିଥିବା ଉଚିତ । ଗୋଟିଏ ପିଲା ୫ମ ବା ୬ଷ୍ଠ ଶ୍ରେଣୀରେ ଆସି ପହଞ୍ଚଗଲା ବୋଲି ସେଗୁଡ଼ିକୁ ଆଦୌ ମନ୍ଦ କରିଦେବା ଉଚିତ ହେବନାହିଁ । (୧୪,୬)

## ସଙ୍ଗୀତ ହୃଦୟକୁ ସିଧା ରଖିଥାଏ

କୌଣସି ବିଦ୍ୟାଳୟର ଶିକ୍ଷା-କାର୍ଯ୍ୟକ୍ରମ ଗୁଣାତ୍ମକତାର ମାନରେ କେତେ ଅଧିକ ଅଥବା ଅଳ୍ପ, ସେହି ବିଦ୍ୟାଳୟକୁ ଅନୁସିକ୍ତ କରି ରଖିଥିବା ସଂଗୀତ-କାର୍ଯ୍ୟକ୍ରମର ମାତ୍ରାଟି ଦ୍ୱାରା ହିଁ ବହୁତ ପରିମାଣରେ ନିର୍ଦ୍ଧାରିତ ହୋଇଥାଏ । ଶାରୀରିକ ବ୍ୟାୟାମ ଯେପରି କୌଣସି ପିଲାର ଶରୀରକୁ ଚେଙ୍ଗା କରି ରଖେ, ସେହିପରି ସଂଗୀତ ମଧ୍ୟ ଗୋଟିଏ ଶିଶୁର ହୃଦୟକୁ ଜୀବନମୟ କରି ରଖେ । (୧୪,୬)

## ବିଦ୍ୟାଳୟ କହିଲେ ସବାଆଗ ବହିମାନଙ୍କୁ ବୁଝାଏ

ଶିକ୍ଷା ଦେଇ ପାରିବାର ଅମାପ ଶକ୍ତି ଏହି ବହିଗୁଡ଼ିକ ମଧ୍ୟରେ ରହିଛି ବୋଲି ନିଜର ଶିକ୍ଷକ ଜୀବନରେ ମୁଁ ଏକ ମୌଳିକ ସତ୍ୟରୂପେ ଉପଲବ୍ଧି କରିପାରିଛି । ଶିକ୍ଷା କହିଲେ ସର୍ବୋପରି ଶବ୍ଦ, ପୁସ୍ତକ ତଥା ବହୁ ଅର୍ଥତାତ୍ପର୍ଯ୍ୟପୂର୍ଣ୍ଣ ମାନବିକ ସମ୍ବନ୍ଧଗୁଡ଼ିକୁ ହିଁ ବୁଝାଇଥାଏ । ... ପୁସ୍ତକନାମକ ସେହି ଶକ୍ତିଶାଳୀ ସାଧନଟି ବ୍ୟତୀତ ଜଣେ ଶିକ୍ଷକ ହିସାବରେ ମୁଁ ପ୍ରକୃତରେ ମୂକ ହୋଇ ରହି ଯାଇଥାନ୍ତି । କାରଣ, ଜଣେ ଶିକ୍ଷକ ପିଲା ଆଗରେ ଯାହାସବୁ କହନ୍ତା ଓ ବର୍ତ୍ତମାନ ସେମାନଙ୍କୁ ଯାହାସବୁ କହି ପାରୁଛି, ବହି ବ୍ୟତିରେକେ ମୁଁ ସେମାନଙ୍କୁ ତାହାର ଏକଶତାଂଶ ମଧ୍ୟ କଦାପି କହି ପାରୁନଥାନ୍ତି । ଏକ ବହୁ ବୁଦ୍ଧି ପ୍ରୟୋଗ କରାଯାଇ ଲେଖା ଯାଇଥିବା ପ୍ରକୃତରେ ପ୍ରେରଣାଦାୟକ ବହି ଅନେକ କ୍ଷେତ୍ରରେ ଜଣେ ବ୍ୟକ୍ତିର ଭବିଷ୍ୟତ ସକାଶେ ଅତ୍ୟନ୍ତ ମୀମାଂସକ ଭାବରେ ପନ୍ଥାଟିଏ ଦେଖାଇ ମଧ୍ୟ ଦେଇ ପାରିବ । (୨୯)

ବହିମାନଙ୍କର ଜଗତରେ ଜୀବନଯାପନ କରିବା, - ଅତ୍ୟନ୍ତ ଶୃଙ୍ଖଳାବଦ୍ଧ ତଥା କର୍ମଠ ଭାବରେ ଘରପାଠଗୁଡ଼ିକୁ ପ୍ରସ୍ତୁତ କରି ଆଣିବାଠାରୁ ତାହା ହେଉଛି ସମ୍ପୂର୍ଣ୍ଣ ଭାବରେ ଆଉଗୋଟିଏ କଥା । ଗୋଟିଏ ପିଲା ପରୀକ୍ଷାରେ ହୁଏତ କେଡ଼େ ବଢ଼ିଆ ଫଳମାନ ଦେଖାଇ ଚମତ୍କାର ପ୍ରମାଣପତ୍ର ସହିତ ସ୍କୁଲପାଠ ସମାପ୍ତ କରିପାରେ, ମାତ୍ର ତଥାପି ଏକ ବୁଦ୍ଧିଗତ ଅନୁଶୀଳନର ଜୀବନ ଭିତରେ ହୁଏତ ତା'ର ପ୍ରବେଶ ହିଁ ଘଟି ନଥାଏ । ପଠନ ଏବଂ ମନନରୁ ସିଏ ହୁଏତ ଆଦୌ କୌଣସି ଗଭୀର ଆନନ୍ଦ ଲାଭ କରି ନଥାଇପାରେ । ପୁସ୍ତକମାନଙ୍କର ଜଗତଟିରେ

ଲିପିବଦ୍ଧ ହୋଇ ରହିଥିବା ଜୀବନଟି ଆମକୁ ବହୁ ଚମତ୍କାର ଭାବନା ସହିତ ଆଣି ପରିଚିତ କରାଇଦିଏ, ଆମ ସାଂସ୍କୃତିକ ଉତ୍ତରାଧିକାର ମଧ୍ୟରେ ରହିଥିବା ସଂପଦଗୁଡ଼ିକରୁ ଆନନ୍ଦ ଲାଭ କରିବାକୁ ଶିକ୍ଷା ଦିଏ, - ଆମ ଚରିତ୍ରର ମାନଟିକୁ ଉତ୍ତୋଳିତ କରି ନେଇଥାଏ । (୧୪,୮)

କୌଣସି ଯଥାର୍ଥ ଗ୍ରନ୍ଥପାଠର ଅଭାବରୁ ହିଁ ମନୋଗତ ଦାରିଦ୍ର୍ୟ ଆସି ଆମକୁ କବଳିତ କରିନିଏ । ଗ୍ରନ୍ଥପାଠ ହିଁ ମନ ତଥା ହୃଦୟକୁ ସମ୍ମୋହିତ କରି ରଖିଥାଏ ଏବଂ ବହିର୍ଜଗତ ସମ୍ପର୍କରେ ନାନା ଭାବନାକୁ ଉତ୍‌ପ୍ରେରିତ କରେ । ଆମର ଅନ୍ତର୍ଜଗତରେ ତଜ୍ଜନିତ ଉଦ୍‌ବେଳନଟିଏ ମଧ୍ୟ ସମ୍ଭବ କରେ । (୩୨)

ଜଣେ କିଶୋର ବୟସର ପିଲା ଅତି ସହଜରେ ଯାହା ବୁଝି ପାରୁଛି, ତାହାକୁ ଆହୁରି ଅଧିକ ଗୁଡ଼ାଏ କହି ବୁଝାଇ କହିବାର ଆଦୌ ଆବଶ୍ୟକତା ନଥାଏ । ପିଲାଟି ନିଜେ ହିଁ କଳ୍ପନା କରୁ ଏବଂ ନିଜର ସେହି କଳ୍ପନାର ଜଗତଟି ସହିତ ନିଜକୁ ଗଅଁଠାଇ ବି ରଖିଥାଉ । (୧୨,୨୦୪)

## ପଞ୍ଚମ ଅଧ୍ୟାୟ

# ସାମୂହିକ ଜୀବନ

ଶିକ୍ଷାବିତ୍ ଆନ୍ତୋନ୍ ମାକାରେଙ୍କୋଙ୍କର କାର୍ଯ୍ୟ ପରି ପ୍ରାୟୋଗିକ ଶିକ୍ଷାର କ୍ଷେତ୍ରରେ ଏତେ ଅଧିକ ସମ୍ମାନ ତଥା ଶ୍ରଦ୍ଧା ସହିତ ଆଉ କୌଣସି ଦୃଷ୍ଟାନ୍ତକୁ କେବେ ଗ୍ରହଣ କରିନାହିଁ । ମୁଁ ଦୀର୍ଘ ବତିଶି ବର୍ଷ କାଳ ବିଦ୍ୟାଳୟ ମାନଙ୍କରେ କାର୍ଯ୍ୟ କରିଛି ଏବଂ ସେହି ବତିଶିବର୍ଷ କାଳ ସିଏ ଜଣେ ଶିକ୍ଷକ ଓ ଶିକ୍ଷାନାୟକ ହିସାବରେ କରିଥିବା ତାତ୍ତ୍ୱିକ ସିଦ୍ଧାନ୍ତଗୁଡ଼ିକର ବିଶ୍ଳେଷଣ କରି ଆସୁଛି । ଏହି କ୍ଷେତ୍ରରେ ସେ ଯାବତୀୟ ଅନୁଭବହୀନ କଥା ତଥା ଶାବ୍ଦିକ ଅତିରଞ୍ଜନକୁ ଯେ ସମ୍ପୂର୍ଣ୍ଣ ଭାବରେ ବର୍ଜନ କରୁଥିଲେ, ମୋତେ ତାହାହିଁ ସର୍ବଦା ଚମତ୍କୃତ କରିଛି । ତାଙ୍କର ଶିକ୍ଷାତତ୍ତ୍ୱରେ ରହିଥିବା ସାହସ ମୋତେ ବିସ୍ମିତ କରି ରଖିଛି । ମାନବିକତାର କ୍ଷେତ୍ରରେ ମାକାରେଙ୍କୋ ଆଦୌ କୌଣସି ସାଲିଶ୍ କରିନାହାନ୍ତି । ଆପଣାର ସହମନୁଷ୍ୟ ମାନଙ୍କ ଉପରେ ସେ ପ୍ରଗାଢ଼ ବିଶ୍ୱାସ ହିଁ ରଖିଛନ୍ତି । ନୂଆ ଋଷିଆର ବିଦ୍ୟାଳୟଗୁଡ଼ିକ ଗଠିତ ହେଉଥିବାର ସେହି ଅତି ସମସ୍ୟାବହୁଳ କାଳଟିରେ ସିଏ ଶହ ଶହ ଶିଶୁଙ୍କୁ ଯେପରି ରକ୍ଷା କରିଛନ୍ତି, ତାହା ମୋତେ ବସ୍ତୁତଃ ଅଭିଭୂତ କରିଛି । ମାକାରେଙ୍କୋ ଯେ ଆଦୌ କୌଣସି ସମ୍ପୂର୍ଣ୍ଣ ଅସାଧ ପ୍ରୟୋଗର ଦୃଷ୍ଟାନ୍ତଗୁଡ଼ିକୁ ଆଣି ଆମକୁ ଦର୍ଶାଉଥିଲେ, ସେକଥା ଆଦୌ ନୁହେଁ । ସିଏ ଜଣେ ବନ୍ଧୁ ହୋଇ ରହିଥିଲେ, ମନୁଷ୍ୟର ଅଧିକାରଗୁଡ଼ିକ ଅତୁଟ କରି ଧରି ରଖିବାକୁ ହେଉଥିବା ସଂଗ୍ରାମରେ ସହାୟତା ହିଁ କରିଥିଲେ । ସେହି ସଂଘର୍ଷ ତ ବିଗତ ପଚାଶ ବର୍ଷ ହେଲା ଅବିଚ୍ଛିନ୍ନ ଭାବରେ ଚାଲିଛି । (୨୮)

ଏକାବେଳେକେ ସାନ କ୍ଲାସ୍‌ଗୁଡ଼ିକର ପିଲାମାନଙ୍କ ଲାଗି ସାଧାରଣ ଦୀର୍ଘମିଆଦୀ ଲକ୍ଷ୍ୟଗୁଡ଼ିକୁ ଆଦୌ ନିର୍ଦ୍ଧାରିତ କରି ରଖିଦିଆ ଯିବନାହିଁ; - ସେମାନେ ବରଷଟି ପରେ ପରୀକ୍ଷାରେ ଅବଶ୍ୟ ସଫଳ ହେବେ, ଆଉ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବେ, ଇତ୍ୟାଦି ଇତ୍ୟାଦି । କାରଣ ସେପରି ହେଲେ ସେମାନେ କଦାପି ସମୂହଟିର ଜଣେ ଜଣେ ସକ୍ରିୟ ସଦସ୍ୟ ଭାବରେ ସୁନିଶ୍ଚିତ ଭାବରେ ଆଦୌ ତିଆରି

ହୋଇ ପାରିବେନାହିଁ । ଯଦି ସେପରି କୌଣସି ଦୀର୍ଘମିଆଦୀ ଲକ୍ଷ୍ୟକୁ ଅନ୍ତର୍ଭୁକ୍ତ କରି ରଖିବାର ନିହାତି ପ୍ରୟୋଜନ ଥାଏ, ତେବେ ତାହାକୁ ଅତ୍ୟନ୍ତ ବର୍ଣ୍ଣାଢ଼୍ୟ, ଉତ୍ସାହଦାୟକ ତଥା ଆନନ୍ଦମୟ ଘଟଣା ସହିତ ମଧ୍ୟ ଅବଶ୍ୟ ଯୋଡ଼ି କରି ରଖାଯାଇ ପାରୁଥିବ । ...(୧,୨୫)

ପିଲାମାନେ ଏହି କଥାଟିକୁ ଅବଶ୍ୟ ଉପଲବ୍ଧି କରୁଥିବେ ଯେ, ଗୋଟିଏ ଲକ୍ଷ୍ୟରେ ପହଞ୍ଚି ସାରିବାପରେ ବା କୌଣସି ଏକ କାର୍ଯ୍ୟକୁ ସମ୍ପନ୍ନ କରିଦେବା ପରେ ସେମାନେ ପ୍ରକୃତରେ ଜଣେ ଜଣେ ମନୁଷ୍ୟ ହିସାବରେ ଅଧିକ ଯୋଗ୍ୟ ହୋଇଥାନ୍ତି ଏବଂ ସେମାନଙ୍କର ଜୀବନଗୁଡ଼ିକ ମଧ୍ୟ ବସ୍ତୁତଃ ଅଧିକ ଆଗ୍ରହୋଦ୍ଦୀପକ ହୁଏ । ସେମାନେ ଯାହା ସମ୍ପାଦିତ କଲେ, ତାହାର ସର୍ବପ୍ରଧାନ ଫଳସ୍ୱରୂପ ସେମାନଙ୍କର ସମୂହଟି ହିଁ ଏକ ନୈତିକ ସନ୍ତୋଷ ତଥା ଗୌରବ ଲାଭ କଲା ବୋଲି ସେମାନେ ଅବଶ୍ୟ ଅନୁଭବ କରୁଥିବେ । (୧,୪୬)

ଗୋଟିଏ ସମୂହର ପ୍ରତ୍ୟେକ ବ୍ୟକ୍ତିର ଦକ୍ଷତା ତଥା ସାମର୍ଥ୍ୟରେ କେତେ ପରିମାଣରେ ବିକାଶ ଘଟିଲା, ସେଇଥିରୁ ହିଁ ଏକ କ୍ରିୟାଶୀଳ ସମୂହର ଅନ୍ତର୍ନିହିତ ଶକ୍ତିଟିକୁ ହିଁ ମପାଯାଇ ପାରିବ । (୨,୩୧)

ଜଣେ ଶିକ୍ଷକ କୌଣସି ଛାତ୍ର ପ୍ରତି ରହିଥିବା ଯେତିକି ଦୃଷ୍ଟି ଓ ଯତ୍ନର ପରିଚୟ ଦେଇଥାଏ, ତାହା ହିଁ ଛାତ୍ର ଉପରେ ଏକ ସ୍ଥାୟୀ ପ୍ରଭାବଚିହ୍ନ ଆଙ୍କି ଦେଇଥାଏ । ତା'ର ସମୂହ ମଧ୍ୟ ତା' ଉପରେ କେତେ ଦୃଷ୍ଟି ରଖୁଛି ଓ ତା' କଥା କେତେ ଚିନ୍ତା କରୁଛି, ସେହି କ୍ଷେତ୍ରରେ ଉକ୍ତ କଥାଟି ଆହୁରି ଅଧିକ ପରିମାଣରେ ପ୍ରଯୁଜ୍ୟ ହୋଇ ପାରିବ । ଜଣେ ଶିକ୍ଷକ ଏହି କଥାଟିକୁ ନିଶ୍ଚୟ ଦୃଷ୍ଟି ଦେଉଥିବ ଯେ, ପ୍ରତ୍ୟେକ ଶିଶୁ ସେଥିଲାଗି ତା' ସମୂହ ପାଖରେ କୃତଜ୍ଞ ରହିଥିବ ଏବଂ କୌଣସି କଷ୍ଟକର ମୁହୂର୍ତ୍ତରେ ସମୂହଠାରୁ ମିଳିଥିବା ସହାୟତାକୁ ମଧ୍ୟ ସିଏ କଦାପି ପାସୋରି ଦେବନାହିଁ । (୫,୫୪)

ଜଣେ ଉଦାରହୃଦୟ ମନୁଷ୍ୟର ସନ୍ତକ ପ୍ରକୃତରେ କ'ଣ ହୋଇପାରେ ? ସର୍ବୋପରି ନିଜ ସହମନୁଷ୍ୟ ମାନଙ୍କ ପ୍ରତି ରହିଥିବା ତାଙ୍କର ଶ୍ରଦ୍ଧାରେ ହିଁ ସିଏ ଅନ୍ୟମାନଙ୍କ ଠାରୁ ବାରିହୋଇ ପଡୁଥିବେ । ଶ୍ରଦ୍ଧା ଅର୍ଥାତ୍ ସାମୂହିକ ଆଦର୍ଶଟି ପ୍ରତି ତାଙ୍କର ନିଷ୍ଠା ଏବଂ ଆନୁଗତ୍ୟ । .... ଏହି ବିଦ୍ୟାଳୟରେ ଆମେ କ୍ଲାସ୍‌ରୂପୀ

ସମୂହଟି ମଧ୍ୟରେ ପାରସ୍ପରିକ ସମ୍ବନ୍ଧଗୁଡ଼ିକୁ ଏପରି ଗଢ଼ଣମାନ ଦେବାକୁ ଚେଷ୍ଟା କରୁଥାଉ, ଯେପରିକି ପ୍ରତ୍ୟେକ ପିଲାର ଯାବତୀୟ ପ୍ରୟାସ ସମଗ୍ରତଃ ଅନ୍ୟମାନଙ୍କର - ବନ୍ଧୁ । ପିତାମାତା ଓ ଅନ୍ୟ ଯେତେ ଯେଉଁମାନେ ସାହାଯ୍ୟ ତଥା ଅବଲମ୍ବନଟିଏ ପାଇଁ ଅପେକ୍ଷା ରଖିଛନ୍ତି - ଚିନ୍ତା କରିବା ଦିଗରେ ଉଦ୍ଦିଷ୍ଟ ହୋଇ ରହିଥିବ । ଏହିସବୁ ସମ୍ପର୍କର ପରିପ୍ରେକ୍ଷୀରେ ଯେଉଁ ନୈତିକ ଅନୁଭବଟି ସମ୍ଭବ ହୋଇ ଆସିବାର ଲାଗିଥାଏ, ତାହାହିଁ ନୈତିକ ମର୍ଯ୍ୟାଦାବୋଧ, ସ୍ୱାର୍ଥରହିତ ଦୟାଳୁତା, ସହାନୁଭବ ତଥା ଅନୁରୂପ ସକଳ ଅନୁସ୍ପନ୍ଦନ ଲାଗି ଏକ ଅକ୍ଷୟ ଉତ୍ସ ହୋଇ କାର୍ଯ୍ୟ କରୁଥାଏ । (୫,୫୫)

ଜଣେ ଛାତ୍ର ଓ ଛାତ୍ରୀ ଯଦି ଅନ୍ୟ ମନୁଷ୍ୟମାନଙ୍କ ନିମନ୍ତେ ଆଦୌ କିଛି ହେଲେ କରି ନଥିବ, ତାହା କେବଳ ଗୋଟିଏ ମାସ ପାଇଁ ହୋଇଥିଲେ ମଧ୍ୟ, ତାହାର ତେବେ ଅର୍ଥ ହେବ ଯେ, ତା' ଶିକ୍ଷାଗ୍ରହଣରେ ନିଶ୍ଚୟ କ'ଣ କିଛି ଗୋଳମାଳ ହୋଇଯାଇଛି । (୫,୫୬)

ନିଜ ଶ୍ରେଣୀରେ ଥିବା ଅନ୍ୟମାନଙ୍କୁ ସେମାନେ ନିଶ୍ଚୟ ସାହାଯ୍ୟ କରିବେ ବୋଲି ପିଲାମାନଙ୍କୁ ଶିକ୍ଷା ଦେଇସାରିବା ପରେ ଶିକ୍ଷକ କ୍ରମଶଃ ସେହି ପରିଧିଟିରେ ଏପରି ଅନ୍ୟ ମନୁଷ୍ୟମାନଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରିବ, ଯେଉଁମାନେ କି ବିଦ୍ୟାଳୟ ସହିତ ସିଧା ସମ୍ପୃକ୍ତ ରହିନଥିବେ, - ବୁଢ଼ା ଲୋକମାନେ, ଅକର୍ମନ୍ୟ ଏବଂ ଅନ୍ୟମାନେ । ଏହିଭଳି ସାହାଯ୍ୟ ଦେବାର କାର୍ଯ୍ୟକ୍ରମଗୁଡ଼ିକୁ ଉତ୍ସାହିତ କରିବା ବ୍ୟତୀତ ନୈତିକତା ସହିତ ଆଉ ଶିକ୍ଷାର ପ୍ରକୃତରେ କୌଣସି ସମ୍ପର୍କ ରହିଛି ବୋଲି କଳ୍ପନା ମଧ୍ୟ କରି ହେବନାହିଁ । (୧,୨୪୬)

କେତେକ କ୍ଷେତ୍ରରେ ଅନ୍ୟ ମନୁଷ୍ୟମାନଙ୍କୁ ସାହାଯ୍ୟ କରିବା ଦ୍ୱାରା ଜଣେ ଛାତ୍ର ନିଜର ଶ୍ରେଣୀରୂପୀ ସମୂହଟି ମଧ୍ୟ ଡ଼ୋର ଲଗାଇ ରହିବା ନିମନ୍ତେ ବହୁତ ବଳ ପାଇଥାଏ । ସର୍ବପ୍ରଥମେ ସାନ ବାପାମାଆଛେଉଣ୍ଡ ପିଲାମାନଙ୍କର କ୍ଷେତ୍ରରେ ପ୍ରକୃତରେ ପ୍ରଯୁଜ୍ୟ ହୋଇଥାଏ । ...ଏହିଭଳି ପିଲାମାନଙ୍କୁ ଯଦି ଏତେଟିକିଏ ବି ଉଦାସୀନତା ପ୍ରଦର୍ଶନ କରା ଯାଉଥାଏ, ସେପରି ହେଉଛି ବୋଲି ବାପାମାଆ ଥିବା ପିଲାମାନେ ଆଦୌ ଅନୁଭବ କରୁନଥିଲେ ମଧ୍ୟ ପିତୃମାତୃହୀନ ପିଲାମାନେ ତାହାକୁ ଏକାନ୍ତ ଅନ୍ୟାୟ ବୋଲି ଅନୁଭବ କରନ୍ତି ଏବଂ ସମୂହଟିରୁ ପଳାୟନ

କରନ୍ତି । ସେମାନେ ସେହି ସମୂହକୁ ଅବିଶ୍ୱାସ ଏବଂ ସନ୍ଦେହ କରିବାକୁ ଆରମ୍ଭ କରିଥାନ୍ତି । (୧,୨୪୬)

ସମୂହ ପ୍ରତି ମୋର ଦାୟିତ୍ୱ ଯେ ରହିଛି, କେବଳ କଥା କହି ନୁହେଁ, ପ୍ରକୃତ କର୍ମଦ୍ୱାରା ତାହାର ପ୍ରମାଣ ଦେବାକୁ ପଡ଼େ । ସମୂହ ଜଣେ ଛାତ୍ର ପ୍ରତି ଯେତିକି ଅଧିକ ଦୃଷ୍ଟି ଦିଏ, ପ୍ରାପ୍ତ ସାହାଯ୍ୟ ନିମନ୍ତେ ଛାତ୍ରଟି ମଧ୍ୟ ସମୂହ ପାଖରେ ସେତିକି ଅଧିକ କୃତଜ୍ଞ ହୋଇ ରହିଥାଏ । ଏବଂ, ନିଜର ସାଥୀମାନଙ୍କ ସହିତ ଲାଗି ରହିଥିବା ସୂତ୍ରଗୁଡ଼ିକୁ ସିଏ ସେତିକି ଅନ୍ତରଙ୍ଗ ଭାବରେ ଅନୁଭବ କରିଥାଏ । ସେମାନଙ୍କ ପ୍ରତି ନିଜର ଦାୟିତ୍ୱଗୁଡ଼ିକ ବିଷୟରେ ସେତିକି ଅଧିକ ସଚେତନ ରହିପାରେ ।

ନାନା ଭଳି ଟୀକା ଅଥବା ନିନ୍ଦା ଆଦି କରି ଯେଉଁ ଶିକ୍ଷକ ପିଲାମାନଙ୍କର ସମୂହ ପ୍ରତି କର୍ତ୍ତବ୍ୟବୋଧରେ ବୃଦ୍ଧି ଘଟାଇବାକୁ ଚେଷ୍ଟା କରୁଥାଏ, ସିଏ ତା'ର କାର୍ଯ୍ୟରେ କଦାପି ସଫଳ ହୋଇ ପାରେନାହିଁ । ଶିକ୍ଷକମାନଙ୍କର ଅଥବା ସାଙ୍ଗମାନଙ୍କ ତରଫରୁ କରା ଯାଉଥିବା ଯେଉଁସବୁ ଟୀକା ଏବଂ ନିନ୍ଦାତ୍ମକ ମନ୍ତବ୍ୟ ସହିତ କୌଣସି ସହାନୁଭୂତି ଓ ସାହାଯ୍ୟ କରିବାର ଇଚ୍ଛା ନଥାଏ, ତଦ୍ୱାରା ସଂପୃକ୍ତ ଛାତ୍ରଟିର ମନକୁ କେବଳ ଅଧିକ ତିକ୍ତ କରି ପକାଇବା ହିଁ ସାର ହୁଏ । ୧,୨୪୩)

## ସମୂହର ଜୀବନ: ଆବେଗଗତ ତଥା ସାଂସ୍କୃତିକ ପାରସ୍ପରିକ କ୍ରିୟାର ଗୋଟିଏ ଅମାପ ପରିମାଣର ବହୁମୁଖୀ କ୍ଷେତ୍ର

ସାମୂହିକ ଜୀବନର ଶିକ୍ଷାଗତ ଭୂମିକାଟି ବିଷୟରେ କରା ଯାଉଥିବା ଯାବତୀୟ ଚିନ୍ତା, - ତାହା ବସ୍ତୁତଃ ସେହି ସମୂହ ମଧ୍ୟରେ ରହିଥିବା ପ୍ରତ୍ୟେକ ସଦସ୍ୟର ଆତ୍ମିକ ସମୃଦ୍ଧି ତଥା ଅଗ୍ରଗତିକୁ ହିଁ ବୁଝାଇବ । ସେହି ସମୂହ ଭିତରେ ରହିଥିବା ଯାବତୀୟ ସମ୍ବନ୍ଧର ବିସ୍ତୃତ ପରିସରଟିକୁ ବୁଝାଇବ । (୧୨, ୨୧୬)

ଗୋଟିଏ ସମୂହକୁ ଗଢୁଥିବା ସମୟରେ ସେଥିରେ ରହିଥିବା ପ୍ରତ୍ୟେକ ଶିଶୁକୁ ହିଁ ଦୃଷ୍ଟିସମକ୍ଷରେ ରଖି ପାରୁଥିବା ଉଚିତ, - ତା'ର ଅନନ୍ୟ ଅନ୍ତର୍ଗତ ଜଗତଟି ଉପରେ ନଜର ରହିବା ଆବଶ୍ୟକ । ଏବଂ, ସେହି ପ୍ରତ୍ୟେକଙ୍କର ହିଁ ଯତ୍ନ ନିଆଯାଇ ପାରୁଥିବା ଆବଶ୍ୟକ । ବ୍ୟକ୍ତିର ବିକାଶନାମକ ପ୍ରକ୍ରିୟା ସହିତ

ସାମୂହିକ ବିକାଶର ପ୍ରକ୍ରିୟା ସହିତ ଘନିଷ୍ଠ ଭାବରେ ମିଶି କରି ରହିଥାଏ ସତ, କିନ୍ତୁ ଏକ ବିଶେଷ ଅର୍ଥରେ ବିଚାର କରି ଦେଖିଲେ ଏହାକୁ ଆମେ ଶିକ୍ଷାଦାନ କରୁଥିବା ବ୍ୟକ୍ତିଟିର ହିଁ ଗୋଟିଏ ସ୍ୱତନ୍ତ୍ର କ୍ଷେତ୍ର ବୋଲି ଅବଶ୍ୟ କୁହାଯାଇ ପାରିବ । (୫,୫)

ଉଚ୍ଚ ତଥା ଉଦାର ବିଚାରଗୁଡ଼ିକୁ ଶିକ୍ଷାର ଦୃଷ୍ଟିରୁ ପ୍ରକୃତରେ ବହୁମୂଲ୍ୟବାନ୍ ବୋଲି କୁହାଯିବ, କାରଣ ସେହିଗୁଡ଼ିକ ହିଁ ସମୂହକ /ସାମୂହିକ ଓ ବ୍ୟକ୍ତିକୁ ଏବଂ ସାମୂହିକ ତଥା ବ୍ୟକ୍ତିଗତକୁ ଏକାଠି ଗୋଟିଏ ଭୂମିକୁ ଆଣନ୍ତି ଓ ଗୋଟିକୁ ଆରଟି ସହିତ ସଂଗତିଯୁକ୍ତ କରିଥାନ୍ତି F– ସାଧାରଣ ଭାବରେ ବିଚାର କଲେ ଯାବତୀୟ ନୈତିକ ଶିକ୍ଷା ସକାଶେ ଏହି ଏକତାଟି ହିଁ ଅସଲ ସୂତ୍ର ବା ସର୍ତ୍ତହୋଇ ରହିଥାଏ । (୬,୨୨)

ଯେଉଁ ସମୂହ ଭିତରେ ଗୋଟିଏ ପିଲା ତା' ନିଜର ମାନସଜଗତ ଓ ଆବେଗଗୁଡ଼ିକ ନିମନ୍ତେ କୌଣସି ଉତ୍ପ୍ରେରଣା ପାଏନାହିଁ ଏବଂ ଯେଉଁ ସମୂହ ତାକୁ ଉଚ୍ଚ ଆଦର୍ଶଚୟ ଆଡ଼କୁ ବାଟ ଦେଖାଇନେଇ ପାରେନାହିଁ, ସେହି ସମୂହକୁ ସଂପୃକ୍ତ ପିଲାଟି କଦାପି ନିଜପାଇଁ ଏକ ଉପଯୁକ୍ତ କର୍ତ୍ତା ବୋଲି ମାନି ନେଇ ପାରିବନାହିଁ । (୬,୯୭)

ସମୂହଟିଏ କହିଲେ କେବେହେଲେ ଏକ ପରିଚିତିହୀନ ପିଣ୍ଡକୁ ବୁଝାଇବା ଉଚିତ ନୁହେଁ । ଏକାଧିକ ବ୍ୟକ୍ତିତ୍ୱର ଏକ ସମ୍ମିଳିତ ସମ୍ପଦଭଣ୍ଡାର ରୂପେ ହିଁ ତାହାର ଯାହାକିଛି ଅସ୍ତିତ୍ୱ ରହିଥାଏ । ... ଏଥିରେ ଥିବା ପ୍ରତ୍ୟେକ ବ୍ୟକ୍ତିଠାରେ କ'ଣସବୁ ରହିଛି, ପ୍ରତ୍ୟେକ ବ୍ୟକ୍ତିର ଆତ୍ମିକ ସମ୍ପଦ, ସମୂହଟିର ଜୀବନ ନିମନ୍ତେ ନିଜର ଅବଦାନ ରୂପେ ସିଏ କ'ଣସବୁ ଆଣିପାରୁଛି ଏବଂ ଅନ୍ୟମାନେ ମଧ୍ୟ ତା'ଠାରୁ କ'ଣସବୁ ନେଇ ପାରୁଛନ୍ତି, - ସମୂହଟିର ସମ୍ଭାବନା ତାହାରି ଉପରେ ଆଧାରିତ ହୋଇ ରହିଥାଏ । ତଥାପି, ପ୍ରତ୍ୟେକ ବ୍ୟକ୍ତି କେତେ ସମ୍ପନ୍ନ ଭାବରେ କ'ଣସବୁ ପ୍ରକୃତରେ ଦେଇ ପାରୁଛି, ସମୂହର ସ୍ତରରେ ଏକ ପରିପୂର୍ଣ୍ଣ ତଥା ଆଗ୍ରହ ଉଦ୍ଦୀପିତ ଜୀବନ ଲାଗି ତାହା କେବଳ ଭୂମିରୂପେ ହିଁ କାର୍ଯ୍ୟ କରିଥାଏ । ଏକ ସମ୍ମିଳିତ କ୍ରିୟାସଚଳତା ଉପରେ, ଯେଉଁଥିରେ କି ଏକ ଉଚ୍ଚ ନୈତିକ ଉଦ୍ଦେଶ୍ୟସାଧନ ଲାଗି ସମୁଚିତ ଉଚ୍ଚ ପ୍ରେରଣାଟି ଉନ୍ମୋଚିତ ହୋଇ ଆସିବାରେ

ଲାଗିଥାଏ, ତାହାରି ଉପରେ ହିଁ ତାହାର ଏକ ଶିକ୍ଷାଦାନକାରୀ ସାଧନ ରୂପେ କାର୍ଯ୍ୟ କରି ଇପ୍ସିତ ସମ୍ମିଳିତ କର୍ମଶକ୍ତିକୁ ଜାଗୃତ କରି ଆଣିବା ନିର୍ଭର କରୁଥାଏ । (୧୨,୨୧୫)

କିଶୋର-ବୟସର ପ୍ରଥମ ପର୍ଯ୍ୟାୟରେ ପିଲାମାନଙ୍କୁ ଶିକ୍ଷା ଦେବାର ଯଥାର୍ଥ ଧାରାଟିକୁ ଏପରି ସଂଗଠିତ କରି ଅଣାଯିବ, ଯେପରିକି ସେମାନେ ଆପଣାକୁ ଏପରି ଏକ ସ୍ଥିତିରେ ଆବିଷ୍କାର କରି ପାରିବେ, ଯାହାଦ୍ୱାରା କି ପ୍ରତ୍ୟେକ ପିଲା ତା'ର ସ୍ୱକୀୟ ପ୍ରତିଭା ଏବଂ ସାମର୍ଥ୍ୟ ଅନୁରୂପ ଗୋଟିଏ କ୍ରିୟାଶୀଳତାର କ୍ଷେତ୍ରରେ ଆସି ପହଞ୍ଚି ପାରିବ । ... ଏହି ବୟସର ପିଲାମାନଙ୍କ ସକାଶେ ସବୁଠାରୁ ଅଧିକ ଦୁର୍ଭାଗ୍ୟର ବିଷୟ ହେବ, ଯଦି ସମସ୍ତଙ୍କୁ ସେହି ଗୋଟିଏ କାର୍ଯ୍ୟ ଭିତରେ ହିଁ ରହିବାଲାଗି ବାଧ କରାଯିବ । ହଁ, କୌଣସି ଗୋଟିଏ ପ୍ରକାରର ସାମୂହିକ କାର୍ଯ୍ୟ ଯେତେ ଅଧିକ ଆକର୍ଷକ ହୋଇଥାଉ ପଛକେ, ସେଇଟି କେବେହେଲେ ସମସ୍ତଙ୍କ ନିମନ୍ତେ ଆକର୍ଷକ ହେବନାହିଁ, ସବୁବେଳେ ମଧ୍ୟ କେବେହେଲେ ଆକର୍ଷକ ଲାଗି ପାରିବନାହିଁ । .... ସମୂହଟିରେ ସଂବଦ୍ଧତା ରହୁନାହିଁ ବୋଲି ଅଭିଯୋଗ କରୁଥିବା ଅନେକ ଶିକ୍ଷକ ବିଶେଷ ଭାବରେ ହିଁ ବିଫଳ ହୋଇଥାନ୍ତି, କାରଣ ସେମାନେ ପିଲାମାନଙ୍କର ନାନାବିଧ ଆଗ୍ରହ ଏବଂ ଆବଶ୍ୟକତାକୁ ଗୋଟିଏ ଲଗାମ ଭିତରେ ବାନ୍ଧି ରଖିବାକୁ ମତଲବ ରଖିଥାଆନ୍ତି ; ସେମାନେ ସବୁକିଛିକୁ ଯାବତୀୟ ପ୍ରକଳ୍ପର ପୁନରାବୃତ୍ତି ଭିତରେ ହିଁ ଭାରି ନୀରସ କରି ରଖିଥାନ୍ତି । (୬,୮୯)

## ପିଲାମାନଙ୍କ ସାମୂହିକ ଜୀବନରୁ କ'ଣସବୁ ପ୍ରତ୍ୟାଶା କରାଯିବ ?

ଏଭଳି ଜଣେ ମନୁଷ୍ୟକୁ ଖୋଜି ବାହାର କର ତ, ଯିଏକି ଜୀବନରେ ଥରେ ହେଲେ ମଧ୍ୟ ଭୁଲ କରିନାହିଁ ! ଏହି ଭୁଲ୍‌ଗୁଡ଼ିକ ବିଶେଷ ଭାବରେ ପିଲାବେଳେ ହିଁ ହେବାର ସମ୍ଭାବନା ଥାଏ, ଯେତେବେଳେ କି ନୈତିକତାର ଉନ୍ମେଷଣା-ପ୍ରକ୍ରିୟାଟି ପୂର୍ଣ୍ଣ ହୋଇ ନଥାଏ । ତଥାପି, ଜଣେ ପିଲା କରୁଥିବା କୌଣସି କାର୍ଯ୍ୟକୁ କଦାପି ଜଣେ ବୟସ୍କ ବ୍ୟକ୍ତି କରୁଥିବା ସେହିପରି କାର୍ଯ୍ୟଟିଏ ସହିତ ତୁଳନା କରାଯାଇ ପାରିବନାହିଁ । ତେଣୁ, ଯଦି ଗୋଟିଏ ପିଲା କରିଥିବା ମନ୍ଦ କାର୍ଯ୍ୟକୁ ଆମେ ଜଣେ ବୟସ୍କ କରିଥିବା ଏକ ମନ୍ଦ କାର୍ଯ୍ୟ ପରି ସମାନ ଭାବରେ ପଦାରେ ପକାଇଦେବା କିମ୍ବା ନିନ୍ଦା କରିବାକୁ ବାହାରି ପଡ଼ିବା, ତେବେ ପିଲାଟିର ହୃଦୟ ମଧ୍ୟରେ ବହୁତ ଦୀର୍ଘ କାଳ ପର୍ଯ୍ୟନ୍ତ ତାହାର ଦାଗଟିଏ ନିଶ୍ଚୟ

ରହିଯିବ । ( ବେଳେ ବେଳେ ତ ସାରା ଜୀବନ ରହିଯିବ) ଭୁଲ୍‌ଟିଏ କରିଥିବା ଗୋଟିଏ ପିଲାକୁ ଯଦି ସମୂହର ସମସ୍ତଙ୍କ ସାମନାରେ ସାଧାରଣ ଭାବରେ ଲଜ୍ଜିତ କରାଯିବ, ତେବେ ସିଏ ତା' ସାଙ୍ଗମାନଙ୍କ ଠାରୁ ଆପଣାକୁ ପ୍ରତ୍ୟାହୃତ କରିନେବ ଓ ସେମାନଙ୍କ ଠାରୁ ନିଜର ସକଳ ସମ୍ବନ୍ଧ ହିଁ କାଟିଦେବ । ବିଶେଷ ଭାବରେ କ୍ଷତିକାରକ ପରିଣାମଟିଏ ହେବ ଯେ, ଯାବତୀୟ ସକାରାତ୍ମକ ଲକ୍ଷ୍ୟସାଧନ ପାଇଁ ତା'ର ଆଉ ସେପରି ପ୍ରବୃତ୍ତି ଅଥବା ଉଦ୍ୟମ ମଧ୍ୟ ରହିବନାହିଁ । ସେହି କାରଣରୁ ହିଁ, ଅନ୍ୟାନ୍ୟ ଅବାଞ୍ଛିତ କାର୍ଯ୍ୟଗୁଡ଼ିକ ମଧ୍ୟରେ, ଯଦି ପିଲାଟିଏ କେବେ କିଛି ଚୋରୀ କଲା, ତେବେ ତାହାର ସମ୍ମୁଖୀନ ହେବାଲାଗି ବିଶେଷ ସାବଧାନତା ଅବଶ୍ୟ ଆବଶ୍ୟକ ହେବ, ସେହି ପିଲାର ଭିତରେ ରହିଥିବା ଅଭିପ୍ରାୟ ଓ ଆବେଗଗୁଡ଼ିକୁ ମଧ୍ୟ ବୁଝିବାକୁ ପଡ଼ିବ । (୫,୧୩)

ପିଲାଏ ଦୋଷ କଲେ ଆଖି ବୁଜି ଦଣ୍ଡର ବିଧାନ କରିବା ଦ୍ୱାରା ପିଲାମାନଙ୍କର ସମୂହଟି ମଧ୍ୟରେ ରହିଥିବା ସଂବଦ୍ଧତାଟି ନଷ୍ଟ ହୋଇ ଯାଇଥାଏ ଏବଂ, ତାହାର ପ୍ରତିକ୍ରିୟା ସ୍ୱରୂପ ସବୁ ପିଲା ଏକମେଳ ହୋଇ ମନ୍ଦକାର୍ଯ୍ୟଟିକୁ ଲୁଚାଇ ରଖିବାକୁ ହିଁ ବାହାରି ପଡ଼ନ୍ତି । ପିଲାମାନଙ୍କର ଆପଣା ତରଫରୁ ଅନାଇ ଦେଖିଲେ ଏପରି କରି ସେମାନେ ଜଣେ ଶିକ୍ଷକଙ୍କର ଅନ୍ୟାୟ-ବିଚାର ବିରୋଧରେ ସମୂହଟିର ସମ୍ମାନର ରକ୍ଷା ହିଁ କରୁଥାଆନ୍ତି । ସମସ୍ତେ ଉତ୍ତମରୂପେ ନିଶ୍ଚୟ ଜାଣିଥିବେ ଯେ, ତଳ ଶ୍ରେଣୀ ମାନଙ୍କରେ ପିଲାମାନେ କେବେହେଲେ ସେପରି ଆଚରଣ ପ୍ରଦର୍ଶନ କରି ନଥାନ୍ତି । ସେହି ସ୍ତରରେ ତ ପିଲାମାନେ ନିଜ ଶ୍ରେଣୀପିଲା ମାନଙ୍କର ମନ୍ଦକାର୍ଯ୍ୟ ଗୁଡ଼ିକୁ ଶିକ୍ଷକଙ୍କ ପାଖରେ ଖୋଲାଖୋଲି ଆସି କହିଦିଅନ୍ତି । ସେହି କ୍ଷେତ୍ରରେ ସେମାନଙ୍କ ନିଷ୍ଠାର ଆଦୌ କୌଣସି ଅଭାବ ନଥାଏ । ତଳ ଶ୍ରେଣୀଗୁଡ଼ିକରେ ମନ୍ଦ କାର୍ଯ୍ୟଟିକୁ କରିଥିବା ପିଲା ଓ ତା' ବିଷୟରେ ଶିକ୍ଷକଙ୍କ ପାଖରେ ଆସି ସେହି ଖବର ଦେଉଥିବା ପିଲା ମଧ୍ୟରେ କୌଣସି ଶତ୍ରୁତା ନଥାଏ । ଏହିପରି ସମ୍ବାଦଗୁଡ଼ିକୁ ଆଣି ଦେଉଥିବା ପିଲାଙ୍କୁ କେହିହେଲେ "କାନକୁହା" ବା ସେହିପରି ଆଉକିଛି ଶବ୍ଦ ବ୍ୟବହାର କରି ଗାଳି ମଧ୍ୟ ଦିଏନାହିଁ । ଏସବୁ ଶବ୍ଦର ବ୍ୟବହାର ପରେ ଯାଇ କରାଯାଏ । ସେତେବେଳେ ତ ସେମାନେ ପରସ୍ପରକୁ ଲୁଚାଇ ରଖିବାର ପ୍ରୟାସ ହିଁ କରୁଥାନ୍ତି । (୫,୧୪୪)

ଅତ୍ୟନ୍ତ ଖେଦର ସହିତ ମୁଁ ସେହି ବିଶେଷ ପିଲାମାନଙ୍କ ଆଡ଼କୁ ଲକ୍ଷ୍ୟ କରି ଦେଖୁଥାଏ, ଯେଉଁମାନଙ୍କର ଦାୟିତ୍ୱ ନେବାକୁ ସମୂହ ତରଫରୁ ଆଉ ଜଣେ ଟାଣୁଆ ଓ ତଗଡ଼ା ପିଲାକୁ ନିଯୁକ୍ତ କରିଦିଆ ଯାଇଥାଏ । ଆଦୌ ଟାଣ ନଥିବା ଚରିତ୍ରର ଏହି ପିଲାଟି ନିଜକୁ ଏପରି ଅସମର୍ଥ ଓ ବଳହୀନ ବୋଲି ଭାବୁଥାଏ ଯେ, ଅନ୍ୟମାନେ ଯେତେବେଳେ ଉପହାସ କରି ତା'ପ୍ରତି ବିଶେଷ ଶବ୍ଦମାନ ପ୍ରୟୋଗ କରିବାରେ ଲାଗିଥାନ୍ତି, ସେତେବେଳେ ସିଏ କେବଳ ଦାନ୍ତ ନିକୁଟି'ଦିଏ । ଏପରି ପିଲାଙ୍କୁ ଦେଖିଲେ ହୃଦୟଟା ଭାରି କେମିତି କେମିତି ହୋଇଯାଏ । ଏବଂ, ଆମ ବିଦ୍ୟାଳୟରେ ମଧ୍ୟ ସେହିଭଳି ପିଲା ଅଛନ୍ତି । (୨୪)

ଗୋଟିଏ ଅପରଟିକୁ କ୍ରିୟାଶୀଳ ଭାବରେ ପ୍ରଭାବିତ କରୁଥିବାରୁ ଗୋଟିଏ ସମୂହ ଏବଂ ଜଣେ ବ୍ୟକ୍ତିର ବୌଦ୍ଧିକ ତଥା ଆବେଗଗତ କ୍ଷେତ୍ରଟି ସତତ ଗଠିତ ହୋଇ ଆସୁଥାଏ ଓ ଗୋଟିଏ ନିର୍ଦ୍ଦିଷ୍ଟ ଆକାର ଧାରଣ କରୁଥାଏ । ବ୍ୟକ୍ତି ତା'ର ସମୂହଠାରୁ ବହୁତ କିଛି ଶିକ୍ଷା କରେ, କିନ୍ତୁ ଯୁଗପତ୍ ଭାବରେ, ଯଦି ବ୍ୟକ୍ତିରୂପୀ ସଦସ୍ୟମାନେ ମଧ୍ୟ ଅନ୍ତର୍ଗତ ନାନା ସମ୍ପଦଦ୍ୱାରା ସମୃଦ୍ଧ ହୋଇ ରହିନଥାନ୍ତି ଓ ଯଦି ସେମାନଙ୍କର ଆଗ୍ରହଗୁଡ଼ିକର ପରିସର ବୃହତ୍ ହୋଇ ନଥାଏ, ତେବେ ସେମାନେ ବାସ କରୁଥିବା ସମୂହଟି ମଧ୍ୟ କେବେହେଲେ ଉଧେଇ ପାରେନାହିଁ । (୨୮)

## ଷଷ୍ଠ ଅଧ୍ୟାୟ

# ଜୀବନର ନୀତି ଏବଂ ପ୍ରତ୍ୟୟଗୁଡ଼ିକ

### ମନୁଷ୍ୟର ପରମ କର୍ତ୍ତବ୍ୟ

ପ୍ରତ୍ୟେକ ମନୁଷ୍ୟ ତା'ର ନିଜ ଦେଶପ୍ରତି ରହିଥିବା କର୍ତ୍ତବ୍ୟକୁ ହିଁ ପରମ କର୍ତ୍ତବ୍ୟରୂପେ ଗ୍ରହଣ କରିବ । ଆମେ ପିତାମାତା ଓ ଶିକ୍ଷକମାନେ ଅବଶ୍ୟ ଦେଖିବା ଯେ, ପ୍ରତ୍ୟେକ ତରୁଣ ନାଗରିକ ତାହାକୁ ନିଜର ଗୋଟିଏ ପ୍ରିୟ କର୍ତ୍ତବ୍ୟ ବୋଲି ହିଁ ଅନୁଭବ କରୁଛି । ଯେପରି ଜଣେ ସାଧୁ ମଣିଷ ନିଜ ପରିବାରର ସୁନାମ ଓ ପ୍ରସିଦ୍ଧିକୁ ପ୍ରିୟ ବୋଲି ଗ୍ରହଣ କରିଥାଆନ୍ତି, ଠିକ୍ ସେହିପରି । (୧୭)

କିଶୋର ଅବସ୍ଥାରେ ଯାବତୀୟ ନୈତିକ ପତନରୁ ନିଜକୁ ବଞ୍ଚାଇ ରଖିବାର ଏକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଆବଶ୍ୟକତା ହେଉଛି ଯେ, ପିଲାମାନେ ବୟସରେ ବଡ଼ ହୋଇଯିବା ପୂର୍ବରୁ ହିଁ ନିଜ ହୃଦୟ ଭିତରେ ଜନ୍ମଭୂମିର ବର୍ତ୍ତମାନ ତଥା ଭବିଷ୍ୟତର ନିୟତିଟିକୁ ଅବଶ୍ୟ ହୃଦୟଙ୍ଗମ କରିବେ । ଦେଶପ୍ରେମର ଭାବନା ତଥା ତଦନୁରୂପ ନାନା ଆବେଗ, ନିଜ ଦେଶପ୍ରତି କର୍ତ୍ତବ୍ୟ ଓ ଦାୟିତ୍ୱବୋଧ, - ଏହିଗୁଡ଼ିକ ହିଁ ଜଣେ ଜଣେ ମନୁଷ୍ୟ ହିସାବରେ ଆମ ଭିତରେ ଯଥାର୍ଥ ମର୍ଯ୍ୟାଦାବୋଧର ମୂଳଦୂଆରୂପେ କାର୍ଯ୍ୟ କରିଥାନ୍ତି । (୧୨,୧୯୭)

ବିଶ୍ୱଦୃଷ୍ଟି କହିଲେ ପୃଥିବୀ ବିଷୟରେ ଆମ ଭିତରେ ରହିଥିବା କେବଳ କେତେଟା ଦୃଷ୍ଟିକୋଣର ଏକ ସମଷ୍ଟିକୁ ଆଦୌ ବୁଝାଇବ ନାହିଁ । .... ମାତ୍ର, ଜଣେ ମନୁଷ୍ୟବ୍ୟକ୍ତିର ଏପରି ଗୋଟିଏ ଅନ୍ତର୍ଗତ ସ୍ଥିତିକୁ ବୁଝାଇବ, ଯାହାକି ତା'ର ଭାବନା, ଆବେଗ, ଇଚ୍ଛାଶକ୍ତି ତଥା କର୍ମ ମଧ୍ୟରେ ଆପଣାକୁ ପ୍ରକାଶ କରି ପାରୁଥିବ । ଜଣେ ବ୍ୟକ୍ତି ନିଜ ବିଶ୍ୱଦୃଷ୍ଟିର କ୍ଷେତ୍ରରେ ନିଜର ଚେତନା, ଧାରଣା, ଆବେଗ ଏବଂ କର୍ମକୁ ଏକତ୍ର ଯୋଡ଼ି କରି ହିଁ ରଖିଥିବ । (୧୧,୨୨୧)

ମନୁଷ୍ୟସମାଜ ସୁଦୂର ଅତୀତରେ ମଧ୍ୟ ଏହି ସତ୍ୟଟିର ଉପଲବ୍ଧି କରିଥିଲା ଯେ, ମନୁଷ୍ୟ ଭିତରେ କେବଳ ତା'ର ଶାରୀରିକ ଶକ୍ତି ହିଁ ଏକମାତ୍ର ଶକ୍ତି ନୁହେଁ,

- ତା' ମନର କ୍ଷେତ୍ରରେ ମଧ୍ୟ ଏକ ଶକ୍ତି ଅବଶ୍ୟ ରହିଛି; - ସିଏ ନିଜର ପ୍ରତ୍ୟୟଗୁଡ଼ିକ ପ୍ରତି ଦୃଢ଼ ଭାବରେ ଅନୁଗତ ହୋଇ ରହିଛି, ନିଜର ଅଧିକାରଗୁଡ଼ିକ ବିଷୟରେ ତା'ର ବିଶ୍ୱାସ ରହିଛି, ପ୍ରତିବନ୍ଧକ ଓ ବାଧାମାନେ ଆସୁଥିବା ସମୟରେ ସିଏ ତଥାପି ଅଟଳ ହୋଇ ରହିପାରୁଛି, ଭୟଶୂନ୍ୟ ହୋଇ ପାରୁଛି । ମାନସିକ ଶକ୍ତି, ସାହସ ଓ ଧୈର୍ଯ୍ୟ, - ତା'ର ସେହି ଗୁଣଗୁଡ଼ିକ ଇତିହାସର ଧାରାଟି ଭିତରେ କ୍ରମବିକଶିତ ହୋଇ ଆସିଛି, - ଧୀରେ ଧୀରେ ଏକ ଆକାର ଗ୍ରହଣ କରିବାକୁ ନିଶ୍ଚୟ ବହୁ ବର୍ଷ ଆବଶ୍ୟକ ହୋଇଛି । (୬,୯)

ଏକ ଭବିଷ୍ୟତ କୌଣସି ବାସ୍ତବ ରୂପ ଧାରଣ କରିବା ପୂର୍ବରୁ ହିଁ ହଜାର ହଜାର ବୀର ଓ ସାହସୀ ଯୋଦ୍ଧାଗଣ ସେଥିପାଇଁ ପ୍ରାଣବଳି ଯେ ଦେଇଛନ୍ତି, ସେହିଥିରୁ ହିଁ ମନୁଷ୍ୟର ପ୍ରଗତିଶୀଳ ବିଚାରଗୁଡ଼ିକ ଭିତରେ ରୂପାନ୍ତରକାରିଣୀ ବିଶାଳ ଶକ୍ତି ରହିଛି ବୋଲି ସ୍ପଷ୍ଟ ପ୍ରମାଣ ଅବଶ୍ୟ ମିଳିଯାଉଛି । ସେହି ବିଚାରଗୁଡ଼ିକର ପ୍ରେରଣାବଳରେ ହିଁ ମନୁଷ୍ୟମାନେ ଅଧିକ ବଳଶାଳୀ ହୋଇଛନ୍ତି, ନିଜକୁ ଅଜେୟ ବୋଲି ଅନୁଭବ କରିଛନ୍ତି ଏବଂ ସ୍ୱଇଚ୍ଛାରେ ମୃତ୍ୟୁର ସମ୍ମୁଖୀନ ହୋଇଛନ୍ତି । ମୃତ୍ୟୁକୁ କେବେହେଲେ ପରାଜୟ ବୋଲି ମଣିନାହାନ୍ତି । (୬,୯)

ଏହି କଥାଟି ଉପରେ ସର୍ବଦା ଅତ୍ୟନ୍ତ ମହତ୍ତ୍ୱ ଦେଇ ପାରୁଥିବା ଉଚିତ ଯେ, ନିଜ ଦେଶର ଅତୀତ ବୀରତ୍ୱକାହାଣୀ ଗୁଡ଼ିକୁ ଶ୍ରବଣ କରି, ନିଜ ଜୀବନକୁ ଉତ୍ସର୍ଗ କରି ଆମ ପରବର୍ତ୍ତୀମାନଙ୍କ ପାଇଁ ଏହି ଯାବତୀୟ ସୁଖସମୃଦ୍ଧି ଆଣି ଦେଇଥିବା ସେହି ବୀରମାନଙ୍କର କାର୍ଯ୍ୟଗୁଡ଼ିକ ସହିତ ପରିଚିତ ହୋଇ ଆମର ପିଲାମାନେ ଆଦୌ ନିଜ ମନରେ କଦାପି ଗମ୍ଭୀର ଅଥବା ନିରାଶ ହୋଇ ପଡ଼ିବେ ନାହିଁ । ଏହିସବୁ କାହାଣୀକୁ ଶ୍ରବଣ କରି ସେମାନେ ଚତୁର୍ଦ୍ଦିଗର ପୃଥିବୀ ବିଷୟରେ ବରଂ ଯେପରି ଏକ ଆଶାବାଦୀ ଦୃଷ୍ଟି ପୋଷଣ କରି ପାରିବେ ତଥା ଜୀବନର ହିଁ ଅନ୍ତିମ ବିଜୟ ବିଷୟରେ ଏକ ଦୀପ୍ତିଯୁକ୍ତ ବିଶ୍ୱାସ ହିଁ ରଖି ପାରୁଥିବେ । (୯,୮୩)

ଆମ ପିଲାମାନଙ୍କର ଜୀବନରେ ଏପରି କୌଣସି ସୁଖର ଜାଲ ସେମାନଙ୍କୁ ଉଦ୍‌ବେଗଶୂନ୍ୟ ଓ ଏକାବେଳେକେ ଶାନ୍ତ କରି ରଖିବ ନାହିଁ, ଯାହାକି ସେମାନଙ୍କର ଭାବନା ଏବଂ ଅନ୍ତର୍ବେଗକୁ ଗୋଟାସୁଦ୍ଧା ଶୀତଳ କରି ରଖିଦେବାକୁ ଚେଷ୍ଟା କରୁଥିବ । ସେମାନଙ୍କର ପୂର୍ବବର୍ତ୍ତୀ ପୁରୁଷଟି ସେମାନଙ୍କୁ ଯେତିକି ଅଧିକ ପରିମାଣର ଭୌତିକ ଏବଂ ବୌଦ୍ଧିକ ହିତଗୁଡ଼ିକୁ ଆଣି ଯୋଗାଇ ଦେଉଥିବେ, ଏକଥାଟି ମଧ୍ୟ

ସେତିକି ଅଧିକ ମହତ୍ତ୍ୱପୂର୍ଣ୍ଣ ଯେ ସେମାନେ ନିଜର ସମକାଳୀନମାନଙ୍କ ପାଇଁ ନିଜର ଜୀବନଗୁଡ଼ିକୁ ଉତ୍ସର୍ଗ କରିଥିବା ନର ତଥା ନାରୀଙ୍କର ଦୃଷ୍ଟାନ୍ତଗୁଡ଼ିକରୁ ସେତିକି ଅଧିକ ପ୍ରେରଣା ଅବଶ୍ୟ ପାଉଥିବେ । ମୁଁ ପୁନର୍ବାର କହିରଖୁବି ଯେ, ଭଲ ଓ ମନ୍ଦ, ନ୍ୟାୟ ଓ ଅନ୍ୟାୟ ଏବଂ ସମ୍ମାନ ଓ ଅସମ୍ମାନ ପ୍ରଭୃତି ବିଷୟରେ ସର୍ବପ୍ରଥମ ଧାରଣାଗୁଡ଼ିକ ତିଆରି ହୋଇ ଆସୁଥିବା ବୟସଟି ମଧ୍ୟଦେଇ ଗତି କରୁଥିବା ସାନ ପିଲାମାନଙ୍କ ପାଇଁ ତାହାର ଗୋଟିଏ ବିଶେଷ ମହତ୍ତ୍ୱ ସର୍ବଦା ହିଁ ରହିଛି । (୯,୮୨)

ଏହି ତରୁଣବର୍ଗଙ୍କର ନୈତିକ ପରିପକ୍ୱତା ଅର୍ଜନ କରିବାର ପ୍ରକ୍ରିୟାଟିରେ ସବୁଠାରୁ ଅଧିକ ମୌଳିକସତ୍ୟଟି ହେଉଛି ଯେ ସେମାନେ ନିଜର ଜନ୍ମଭୂମିକୁ ହିଁ ନିଜର ସର୍ବୋଚ୍ଚ ଆଦର୍ଶ ବୋଲି ଗ୍ରହଣ କରିବେ । ନିଜର ଦେଶପ୍ରତି ସେମାନଙ୍କର ଯେଉଁ କର୍ତ୍ତବ୍ୟ ରହିଛି, ସେଇଥିରୁ ହିଁ ନିଷ୍ପନ୍ନ ହେଉଥିବା ବିଶ୍ୱଦୃଷ୍ଟିଟିରୁ ତରୁଣମାନଙ୍କର ବିଶୁଦ୍ଧ ତଥା ଉଦାତ୍ତ ନୈତିକ ଜୀବନଟି ବିକଶିତ ହୋଇ ଆସିବ । ଆପଣା ଦେଶର ସମ୍ମାନ, ଗୌରବ, ଶକ୍ତିମତ୍ତା ତଥା ସ୍ୱାଧୀନତାକୁ ସେମାନେ ଯାବତୀୟ ଅନ୍ୟ ସବୁକିଛି ଅପେକ୍ଷା ଅଧିକ ମୂଲ୍ୟବାନ୍ ବୋଲି ଅନୁଭବ କରୁଥିବେ । (୧୨,୨୪)

ବିଦ୍ୟାଳୟରେ ଶିକ୍ଷାଦାନ କରିବାରେ ମୁଁ ଲାଭ କରିଥିବା ଦୀର୍ଘ ବହୁବର୍ଷର ଅଭିଜ୍ଞତାରୁ ମୋ'ର ଏହି ଦୃଢ଼ ବିଶ୍ୱାସ ହୋଇଛି ଯେ, ଜଣେ ବ୍ୟକ୍ତିର ଚେତନାକ୍ଷେତ୍ରରେ ତା' ଜନ୍ମଭୂମି ବିଷୟରେ ଧାରଣାଟି ଯେପରି ମୂର୍ତ୍ତ ଧାରଣ କରି ପାରିଛି, ଏବଂ, ଦେଶପ୍ରେମର ସେହି ଦୃଷ୍ଟିବୃତ୍ତଟି ଭିତରେ ସିଏ ପୃଥିବୀ ତଥା ନିଜକୁ ଯେତିକି ସ୍ପଷ୍ଟ ଭାବରେ ଦେଖି ପାରୁଛି, ତାହାରି ଉପରେ ହିଁ ତା' ଜୀବନରେ ଦେଶପ୍ରେମ ବିଷୟରେ ପ୍ରାପ୍ତ ସକଳ ଶିକ୍ଷାର ଫଳପ୍ରଦତା ଅବଶ୍ୟ ନିର୍ଭର କରୁଛି । (୧୨,୨୧୦)

ନିଜର ସହମନୁଷ୍ୟ ମାନଙ୍କ ନିମନ୍ତେ ନିଜ ଭିତରେ ଏକ ଗଭୀର ପ୍ରୟୋଜନୀୟତା ଅନୁଭବ ନକରୁଥିବା ଯାଏ ଏକ ଆଦର୍ଶ ଲାଗି ଆନୁଗତ୍ୟ ଆଦୌ ସମ୍ଭବ ହେବନାହିଁ ।

ସଂବେଦନଶୀଳତା ନଥିବା କୌଣସି ହୃଦୟହୀନ ବ୍ୟକ୍ତି କଦାପି କୌଣସି ଉଚ୍ଚ ଆଦର୍ଶର ମର୍ମକୁ ହୃଦୟଙ୍ଗମ କରି ପାରିବନାହିଁ । ହୃଦୟହୀନ ହେଲେ ହିଁ

ଅନ୍ୟ ମନୁଷ୍ୟମାନଙ୍କ ପ୍ରତି ଏକ ବିମୁଖତା ଜାତ ହୋଇଥାଏ । ବିମୁଖତା ଅହଂଙ୍କାରିତାକୁ ଜନ୍ମ ଦିଏ ଓ ଅହଙ୍କାରିତା ହିଁ ନୃଶଂସ କରିପକାଏ ।

କେତେ ମନୁଷ୍ୟ କହନ୍ତି ଯେ, ଆମ ଏ ଯୁଗରେ ସ୍ୱୟଂ ଶକ୍ତିମାନ୍, ଦୃଢ଼ ଓ ଯେକୌଣସି ଅବସ୍ଥା ସକାଶେ ପ୍ରସ୍ତୁତ ରହି ପାରିବା ସକାଶେ ହିଁ ସକଳ ଶିକ୍ଷା ଉଦ୍ଦିଷ୍ଟ ହୋଇ ରହିବା ଉଚିତ ଏବଂ ତେଣୁ, ସଦୟତା, ଆନ୍ତରିକତା ଓ ସଂବେଦନଶୀଳତା ବିଷୟରେ କିଛି କହିବାର କୌଣସି ଆବଶ୍ୟକତା ଆଉ କାହିଁକି ରହିବ ? ଏଇଟି ସମ୍ପୂର୍ଣ୍ଣ ଭାବରେ ଗୋଟିଏ ପୁରା ଭୁଲ୍ କଥା । ... ପ୍ରକୃତରେ ଆମର ବାଲ୍ୟକାଳ ଓ ଯୁବାବସ୍ଥା ଆମ ସକାଶେ ଦୟାଭାବ, ମାନବିକତା ଏବଂ ସଂବେଦନଶୀଳତା ଶିକ୍ଷା କରିବା ଗୋଟିଏ ବିଦ୍ୟାଳୟ ପରି ହୋଇ ରହିବା ଉଚିତ । (୧୨,୧୮୭)

ଜଣେ ମନୁଷ୍ୟର ମନଭିତରେ ଯେପରି ଆଦୌ କୌଣସି ଉଚ୍ଚ ବିଚାରଟିର ଅଙ୍କୁରୋଦ୍‌ଗମ ହୋଇ ପାରିବ, ସେଥିଲାଗି ସିଏ ମନୁଷ୍ୟ-ସଂସ୍କୃତିର ସର୍ବନିମ୍ନ କଥାଗୁଡ଼ିକ ବିଷୟରେ ଅବଶ୍ୟ ପରିଚିତ ରହିଥିବା ଉଚିତ । ମନୁଷ୍ୟ ନିଜ ଜୀବନରେ ଚିନ୍ତା କରିପାରୁଛି, - ଅର୍ଥାତ୍ ସିଏ ବହୁସଂଖ୍ୟକ ବିଚାର ତଥା ଭାବନାବୃତ୍ତିକୁ ନେଇ ଜୀବନ ବଞ୍ଚୁଛି ଓ ଏକ ସଂବେଦନଶୀଳ ହୃଦୟ ହିଁ ସେଗୁଡ଼ିକୁ ବାଟ ଦେଖାଉଛି । ମୋ'ର ଶିକ୍ଷାଦାନ-ପଦ୍ଧତିରେ ମୁଁ ପିଲାମାନଙ୍କର ହୃଦୟ ଓ ମନରେ ସେମାନଙ୍କର ସହମନୁଷ୍ୟମାନଙ୍କ ପ୍ରତି ଏକ ସଂବେଦନଶୀଳତାକୁ ଉତ୍ତରୋତ୍ତର ଜାଗ୍ରତ କରାଇ ଆଣିବାକୁ ହିଁ ଏକ ମୂଳ ନୀତିରୂପେ ଗ୍ରହଣ କରିଛି । ଜଣେ ବ୍ୟକ୍ତି ଯିଏ ହୋଇଥାଉ ପଛକେ, ମିତ୍ର ବା ଅମିତ ଯାହା ହେଉ ପଛକେ, ତା'ର ଆନନ୍ଦ ତଥା ଦୁଃଖ ପ୍ରତି ଯିଏ ଆଦୌ ବିମୁଖ ବା ଉଦାସୀନ ହୋଇ ନପାରୁଛି, କେବଳ ସେହି ବ୍ୟକ୍ତି ହିଁ ତା' ଦେଶର ଜୟ ତଥା ପରାଜୟକୁ ଗଭୀର ଭାବରେ ଅନୁଭବ କରି ପାରିବ । (୨୯)

ଚତୁଷ୍ପାର୍ଶ୍ୱର ପୃଥିବୀଟି ବିଷୟରେ ଜଣେ ମନୁଷ୍ୟ ଯେତିକି ଅଧିକ ଜାଣିବାକୁ ସମର୍ଥ ହେବ, ନିଜର ସହମନୁଷ୍ୟମାନଙ୍କ ବିଷୟରେ ମଧ୍ୟ ତାହାର ଜ୍ଞାନ ସେତିକି ଜାଣିବ । ସହମନୁଷ୍ୟମାନଙ୍କୁ ଜାଣିବାରେ ଏକ ଅବହେଳାପୂର୍ଣ୍ଣ ଦୃଷ୍ଟିକୋଣ ରହି ଯାଉଥିଲେ ଜ୍ଞାନ ଓ ନୈତିକତା ମଧ୍ୟରେ ପ୍ରକୃତରେ ଆଉ ଏକ ସମଞ୍ଜସତାପୂର୍ଣ୍ଣ ଭାରସାମ୍ୟ ମଧ୍ୟ ରହିବନାହିଁ । ଏହି ସ୍ଥିତିଟିକୁ ମୁଁ ଗୋଟିଏ ନୈତିକ ଅଜ୍ଞାନତା ବୋଲି ହିଁ କହିବି । ଯେଉଁ ବ୍ୟକ୍ତିମାନେ ଚତୁଷ୍ପାର୍ଶ୍ୱର ପୃଥିବୀଟି ବିଷୟରେ ପ୍ରଭୂତ

ଜ୍ଞାନ ଅର୍ଜନ କରିଥାନ୍ତି ଅଥଚ ଇତିହାସ, ରାଜନୀତିକ ଜୀବନ, ବୁଦ୍ଧିଗତ ବା ମନସ୍ତାତ୍ତ୍ୱିକ ତଥା ସୌନ୍ଦର୍ଯ୍ୟବୋଧର କ୍ଷେତ୍ରଗୁଡ଼ିକରେ ରହିଥିବା ମାନବିକ ମର୍ମଟି ବିଷୟରେ ଅଜ୍ଞ ହୋଇ ରହିଥାନ୍ତି, ସେହିଭଳି ବ୍ୟକ୍ତିମାନେ ହିଁ ଉକ୍ତ ଅଜ୍ଞାନତାର ଦୃଷ୍ଟାନ୍ତ ହୁଅନ୍ତି । ଯାହା ଆମ ମନୁଷ୍ୟମାନଙ୍କୁ ପଶୁର ସଂସାରରୁ ଊର୍ଦ୍ଧ୍ୱରେ ଅବସ୍ଥାପିତ କରି ରଖିଛି ସେହି ବିଷୟରେ କିଛି ନଜାଣି ଓ କିଛି ବିଚାର ନକରି ମନୁଷ୍ୟର ଆଦୌ କୌଣସି ଭାବଗତ ଜୀବନବିକାଶ କେବେହେଲେ ସମ୍ଭବ ହେବନାହିଁ । ଏବଂ, ଜଣେ ବ୍ୟକ୍ତିର ଯାବତୀୟ ଅନୁଭବ ଏକ ଆଦିମ ସ୍ତରରେ ହିଁ ରହିଥିବ । (୧୨, ୧୭୬)

ପୃଥିବୀ ବିଷୟରେ ଏକ ମାନବୋଚିତ କୋମଳ ଦୃଷ୍ଟିଭଙ୍ଗୀ ଆଗରୁ ନେଇ କେହି ପୃଥିବୀକୁ ଆସି ନଥାଏ । ଏହି ପୃଥିବୀରେ କର୍ମ ତଥା ମାନବିକ ସମ୍ବନ୍ଧଦ୍ୱାରା ହିଁ ତାହାକୁ ଅର୍ଜନ କରିବାକୁ ହୁଏ । କର୍ମଗୁଡ଼ିକ ମଧ୍ୟରେ ଆମର ଆବେଗମାନ ସଂଶ୍ଳିଷ୍ଟ ହୋଇ ରହିଥାନ୍ତି । ତା' ନହେଲେ ସେହି କର୍ମ ଆମକୁ ଆଦୌ କୌଣସି ଶିକ୍ଷା ଦେଇ ପାରେନାହିଁ । (୧୨,୨୭୯)

ପିଲାମାନଙ୍କର ଆବେଗଗତ ସଂବେଦନଶୀଳତା ବିକଶିତ ହୋଇ ନଥାଏ ଏବଂ ସର୍ବଦା ସେହି କାରଣରୁ ହିଁ ସେମାନେ ଅହମିକା ଦ୍ୱାରା ପୀଡ଼ିତ ହୋଇ ରହିଥାନ୍ତି । କୌଣସି ଏକ ମନ୍ଦର ସମ୍ମୁଖୀନ ହୋଇ ସିଏ ସେଇଟିକୁ କଦାପି ଜୟ କରି ପାରିବନାହିଁ ବୋଲି ଭାବେ ଏବଂ ନିଜକୁ ଶକ୍ତିହୀନ ଅନୁଭବ କରେ । ଏହିଭଳି ଶକ୍ତିହୀନତାର ଭାବଟି ଆସି ପହଞ୍ଚିବା ଫଳରେ ହିଁ ସତେଅବା ସବୁକିଛି ଠାରୁ ଛିନ୍ନ ହୋଇ ରହିଥିବା ପରି ଅନୁଭବ ହୁଏ । ଯଦି ଗୋଟିଏ ପିଲା ଗଭୀର ଭାବରେ ଅନ୍ୟ ମନୁଷ୍ୟମାନଙ୍କ ଆଡ଼କୁ ନିଜର ଆବେଗଗୁଡ଼ିକୁ ପ୍ରସାରିତ କରି ଦେଇପାରେ, ତେବେ ମନ୍ଦ ସହିତ ସଂଗ୍ରାମ କରିବାର କ୍ଷେତ୍ରରେ ସିଏ ଆଉ ଏକାକୀ ବୋଲି ଭାବେନାହିଁ ଓ ବିଚଳିତ ବି ହୁଏନାହିଁ । (୧୧,୧୮୦)

ଯଦି ନିଜପାଇଁ ନୈତିକ ସଂସ୍କୃତିର ଏକ ମୂଳଦୁଆ ପ୍ରଦାନ କରି ପାରୁଥିବା ଆବଶ୍ୟକ ଜ୍ଞାନର ଅଭାବ ଥାଏ, ତେବେ ସଂପୃକ୍ତ ବ୍ୟକ୍ତିଟିର ସଂସ୍କୃତି ଏବଂ ଶିକ୍ଷାଗତ ପୃଷ୍ଠଭୂମିରେ ପ୍ରକୃତରେ ପୂର୍ଣ୍ଣତାଟିଏ ଆସିଛି ବୋଲି ମୋଟେ କୁହା ଯିବନାହିଁ । (୧୨,୧୭୭)

ବିଦ୍ୟାଳୟର ସାମୂହିକ ଜୀବନଟି ମଧ୍ୟରେ ଯଦି ମାନବୀୟ ସମ୍ବନ୍ଧଗୁଡ଼ିକ ପ୍ରକୃତରେ ମୂଳଭୂତ ଭାବରେ ନୈତିକ ବହୁବିଧତାର ଏକ ଦୃଷ୍ଟାନ୍ତ ହୋଇ ରହିଥାଏ, ତେବେ ଯାଇ ସେଠାରେ ଥିବା ଗୋଟିଏ ଶିଶୁର ହୃଦୟ ତଥା ମନର କ୍ଷେତ୍ରରେ ଆଦୌ କୌଣସି ନୈତିକ ମୂଳସତ୍ୟର ଅଙ୍କୁରୋଦ୍‌ଗମ ସମ୍ଭବ ହେବ । ଏହି କଥାଟି ଶୁଣିବା ବେଳକୁ ଖୁବ୍ ସରଳ ପରି ଲାଗୁଛି ସତ, ମାତ୍ର ତଥାପି ଏଥିରେ ବହୁତ ଜଟିଳତା ମଧ୍ୟ ରହିଛି । ପ୍ରତ୍ୟେକ ବ୍ୟକ୍ତି ଅନ୍ୟ ପ୍ରତ୍ୟେକ ବ୍ୟକ୍ତି ସହିତ ଜଣେ ସହମନୁଷ୍ୟ ପରି ଆଚରଣ କରିବ; ସମ୍ବନ୍ଧଗୁଡ଼ିକ ମୂଳରେ ସେହି ସୂତ୍ରଟିର ବୀଜବପନ ହୋଇଥିବାରୁ କଥାଟି ସରଳ ମନେ ହୁଏ । କିନ୍ତୁ, ଅପର ପକ୍ଷରେ, ସେହି ମାନବୀୟ ସମ୍ବନ୍ଧଗୁଡ଼ିକ ଯେ ଜଣେ ବ୍ୟକ୍ତିର ଆବେଗଗତ ତଥା ବୌଦ୍ଧିକ ଜୀବନର ସକଳ କ୍ଷେତ୍ରକୁ ମଧ୍ୟ ସ୍ପର୍ଶ କରୁଥିବ ଏବଂ ସମୂହଟିର ସବୁ ବ୍ୟକ୍ତି - ଉଭୟ ଶିକ୍ଷକ ଓ ଶିକ୍ଷାର୍ଥୀମାନଙ୍କ ସହିତ ମଧ୍ୟ ଖାପ ଖୁଆଇ ରହିଥିବ, ସେହି କଥାଟି ବ୍ୟାପାରଟିକୁ ବହୁତ ଜଟିଳ ମଧ୍ୟ କରି ଦେଇଥାଏ । (୧୨,୧୦)

ତାକୁ ସେହିପରି ଶିଖାଇ ଦିଆଯାଇଛି ବୋଲି ଯେ ସ୍କୁଲରେ ପଢୁଥିବା ଗୋଟିଏ ପିଲା ସବୁବେଳେ ମନ୍ଦ କାମଗୁଡ଼ିକୁ କରିଥାଏ, ସେକଥା ଆଦୌ ନୁହେଁ । ହୁଏତ, ପ୍ରକୃତ କଥାଟି ହେଉଛି ଯେ, ଭଲ କାମଗୁଡ଼ିକୁ କରିବା ନିମନ୍ତେ ତାକୁ ଶିକ୍ଷା ଦିଆଯାଇ ନଥାଏ ବୋଲି ଅଧିକାଂଶ କ୍ଷେତ୍ରରେ ସେ ମନ୍ଦ କାମ କରେ । (୨,୧୯୨)

ନୀତିଶିକ୍ଷାର କାର୍ଯ୍ୟକ୍ରମରେ ଆମେ ପ୍ରଥମେ କେତୋଟି ଲକ୍ଷ୍ୟ ନିର୍ଦ୍ଧାରଣ କରିଥିଲୁ । ଏବଂ ତଦ୍ୱାରା ନିମ୍ନଲିଖିତ ଅଭ୍ୟାସଗୁଡ଼ିକୁ ବିକଶିତ କରାଇ ଆଣିବାଲାଗି ଚେଷ୍ଟା କଲୁ : ଯିଏ ଯେଉଁ କାର୍ଯ୍ୟ ଆରମ୍ଭ କରିବ, ସେଇଟିକୁ ମଝିରୁ ଛାଡ଼ି କଦାପି ପଳାଇବ ନାହିଁ; ସେହି କାର୍ଯ୍ୟଟିକୁ ସେ ଉତ୍ତମରୂପେ କରିବାକୁ ଚେଷ୍ଟା କରୁଥିବ, - ଯେକୌଣସି ମତେ ଯାହି ତାହି ତାହାକୁ ସାରିଦେବ ବୋଲି ଆଦୌ ଇଚ୍ଛା କରିବନାହିଁ; ନିଜ ଉପରେ ନ୍ୟସ୍ତ କାର୍ଯ୍ୟଟିକୁ ସେ ଅନ୍ୟମାନଙ୍କର କାନ୍ଧଉପରେ ନେଇ ଥୋଇ ଦେବନାହିଁ କିମ୍ବା ଅନ୍ୟମାନେ କରିଥିବା କୌଣସି କାର୍ଯ୍ୟର ଫଳଗୁଡ଼ିକୁ ଆପେ କାମରେ ଲଗାଇବାକୁ ମନ କରିବନାହିଁ; ସେମାନେ ବନ୍ଧୁ ହୋଇଥାନ୍ତୁ ଅଥବା ଅପରିଚିତ ହୋଇଥାନ୍ତୁ ପଛକେ, ବୃଦ୍ଧ, ଦୁର୍ବଳ ଏବଂ ଏକାକୀମାନଙ୍କର ସହାୟତା ଦେବ; ସର୍ବଦା ଅତ୍ୟନ୍ତ ନିଷ୍ଠିତ ଭାବରେ ଏକଥା ଦେଖୁଥିବ ଯେ, ତା'ର ବାସନାଗୁଡ଼ିକ ସେହି ବାସନାଗୁଡ଼ିକୁ ତୃପ୍ତ କରିବା ନିମନ୍ତେ

ତା'ର ନୀତିଗତ ଅଧିକାରଟି ସହିତ ପୂର୍ଣ୍ଣ ସଙ୍ଗତି ରକ୍ଷା ହିଁ କରୁଛନ୍ତି; ଏପରି କୌଣସି ପରିସ୍ଥିତିକୁ କଦାପି ଆସିବାକୁ ଦେବନାହିଁ, ଯେତେବେଳେ କି ତା'ର ବାପମାଆ ମାନଙ୍କୁ ନିଜ ପିଲାଟିର ବାସନାପୂରଣ ନିମନ୍ତେ ଆପଣାକୁ କୌଣସି ପ୍ରକାରେ ବଞ୍ଚିତ କରି ରଖିବାକୁ ପଡୁଥିବ ବା ଅସୁବିଧାମାନଙ୍କ ସହିତ ସଂଗ୍ରାମ କରିବାକୁ ବି ହେଉଥିବ; ସୁନିଶ୍ଚିତ ଭାବରେ ଦେଖୁଥିବ ଯେ, ତା' ବ୍ୟକ୍ତିଗତ ଆନନ୍ଦ, ସୁଖ ତଥା ବିନୋଦନଗୁଡ଼ିକ ଅନ୍ୟମାନଙ୍କର ଆବଶ୍ୟକତା ଗୁଡ଼ିକର ପରିପୂରଣରେ କେବେହେଲେ ପ୍ରତିବନ୍ଧକ ପରି କାର୍ଯ୍ୟ କରୁନାହାନ୍ତି ଅଥବା ଆପଣାର ଆନନ୍ଦଲାଭ ଅନ୍ୟ ବ୍ୟକ୍ତିମାନଙ୍କ ନିମନ୍ତେ ଆଦୌ ଏକ ଚିନ୍ତା କିମ୍ବା କଷ୍ଟର କାରଣ ମଧ୍ୟ ହେଉନାହିଁ; ସିଏ କୌଣସି ନିନ୍ଦନୀୟ କାର୍ଯ୍ୟକୁ ଲୁଚାଇ ରଖିବନାହିଁ, ଏବଂ, ଯେଉଁମାନେ ସେଗୁଡ଼ିକୁ ଅବଶ୍ୟ ଜାଣିବା ଉଚିତ, ସାହସର ସହିତ ସେଗୁଡ଼ିକୁ ସେମାନଙ୍କ ପାଖରେ ବ୍ୟକ୍ତ କରିଦେଇ ପାରୁଥିବ । (୧୨,୧୯୭)

ଅକ୍ଷରଗୁଡ଼ିକୁ ଜାଣିଥିବା ଜଣେ ବ୍ୟକ୍ତି ଯେପରି ଗୋଟିଏ ଗୋଟିଏ ଅକ୍ଷର ପାଖରେ ନ ଅଟକି ପୂରା ଶବ୍ଦଟିକୁ ପଢ଼ି ପାରୁଥାଏ, ଠିକ୍ ସେହିପରି ନୀତିଗୁଡ଼ିକର କ୍ଷେତ୍ରରେ ଉତ୍ତମ ମୂଳଦୁଆଟିଏ ରହିଥିବା ଜଣେ ବ୍ୟକ୍ତି ଗୋଟିଏ ଭଲ କାର୍ଯ୍ୟରେ କ'ଣସବୁ ବିଚାର ତଥା ସତ୍ୟ ଅଭିପ୍ରେତ ହୋଇ ରହିଛି, ସେଗୁଡ଼ିକର ସପକ୍ଷରେ କୌଣସି ବ୍ୟାଖ୍ୟା ଶୁଣିବା ଲାଗି ଆଦୌ ଅପେକ୍ଷା ରଖେନାହିଁ । କିନ୍ତୁ, ପୂରା ଶବ୍ଦଗୁଡ଼ିକୁ ପଢ଼ିପାରିବା ପୂର୍ବରୁ ଯେପରି ତଥାପି ଅକ୍ଷରଗୁଡ଼ିକୁ ଶିଖିବାକୁ ପଡ଼ିଥାଏ, ଠିକ୍ ସେହିପରି ଏକ ନୈତିକ ଦୃଢ଼ ପ୍ରତ୍ୟୟ ପ୍ରକୃତରେ ସମ୍ଭବ ହେବାଲାଗି କର୍ମର ମାଧ୍ୟମରେ ଅର୍ଥାତ୍ ସକାରାତ୍ମକ ନୈତିକ ଅଭ୍ୟାସଗୁଡ଼ିକର ଏକ ପ୍ରାଥମିକ ଅନୁଶୀଳନ ମଧ୍ୟ ଅବଶ୍ୟ କରିବାକୁ ହୋଇଥାଏ । (୧୧,୧୮୨)

ନୈତିକ ଅଭ୍ୟାସମାନଙ୍କୁ ବିକଶିତ କରାଇ ଆଣିବା ସକାଶେ ଆଦୌ କୌଣସି ସ୍ୱତନ୍ତ୍ର ପ୍ରଣାଳୀମାନେ ଲୋଡ଼ା ହୁଅନ୍ତି ନାହିଁ । ସାମୂହିକ ଜୀବନରେ ସେଗୁଡ଼ିକ ଏକ ଅପରିହାର୍ଯ୍ୟ ଅଂଶ ହୋଇ ରହିଥାନ୍ତି । ନୈତିକ ଶିକ୍ଷାର ଗୋଟିଏ ଅତ୍ୟନ୍ତ ପ୍ରୟୋଜନୀୟ ସର୍ତ୍ତ ହେଉଛି ଯେ, ସମୁଚିତ ଭାବରେ ଆଚରଣ ତଥା କର୍ମ କରିବା ସକାଶେ ଗୋଟିଏ ଶିଶୁର ନିଜର ସକ୍ରିୟ ଇଚ୍ଛା ଏବଂ ବିବେକ ହିଁ ସର୍ବପ୍ରଧାନ ଉତ୍‌ପ୍ରେରକ ହୋଇ ରହିଥାଏ । (୧୨,୧୯୭)

ଯଦି ଜଣେ ଶିକ୍ଷକ ଉତ୍ତମ ଆଚରଣ ବିଷୟରେ ଗୁଡ଼ାଏ କଥା କହୁଥାଏ

ଏବଂ ପିଲାମାନଙ୍କୁ ବାଧ କରିବାର ଚେଷ୍ଟା ମଧ୍ୟ କରୁଥାଏ, ଅଥଚ ନିଜର ଜୀବନରେ ସେହିଭଳି ଆଚରଣର କୌଣସି ଦୃଷ୍ଟାନ୍ତ ଦେଖାଇ ପାରେନାହିଁ, ତେବେ ଅଚିରେ ଏପରି ଗୋଟିଏ ଅବସ୍ଥା ସୃଷ୍ଟ ହୋଇ ଆସିବ ଯେ, ଶିକ୍ଷକକୁଳକୁ ମନ୍ଦ ଆଚରଣର ସମ୍ମୁଖୀନ ହେବାରେ ଏବଂ ପ୍ରତିରୋଧ କରିବାରେ ହିଁ ଅଧିକତର ଶକ୍ତି ଖର୍ଚ୍ଚ କରିବାକୁ ପଡ଼ିବ । ... କେଉଁ ପିଲା କ'ଣ ସବୁ କରିଛି ଏବଂ ପ୍ରତ୍ୟେକ ଭୂଲ୍‌କାର୍ଯ୍ୟ ପଛରେ କିଏ ପ୍ରକୃତ ଅପରାଧୀ, ସେକଥା ନିର୍ଣ୍ଣୟ କରିବାରେ ହିଁ ସେମାନଙ୍କର ମାନସିକ ଶକ୍ତି ଓ ଇଚ୍ଛାଗତ ସଂକଳ୍ପଗୁଡ଼ିକ ମଧ୍ୟ ବ୍ୟୟିତ ହେବାରେ ଲାଗିଥିବ । .... ଯେଉଁଠାରେ ପ୍ରକୃତ ଜୀବନରେ ହିଁ କେହି ନୈତିକ ସତ୍ୟଗୁଡ଼ିକୁ ବୁଝୁନଥାନ୍ତି, ସେଠାରେ ବହୁତଙ୍କୁ ବସ୍ତୁତ ଦୁଃଖ ଭୋଗ କରିବାକୁ ପଡ଼ିବ ଏବଂ କିଏ କେଉଁଟି ପାଇଁ ଦୋଷୀ, ତାହା ଅଲଗା ଅଲଗା କରି କହିଦେଇ ପାରିବା ଅତ୍ୟନ୍ତ କଷ୍ଟକର ହେବ । (୩୩)

ଆଚରଣକୁ ହିଁ ଭୂମିରୂପେ ବ୍ୟବହାର କରି କିପରି ନୈତିକ ଜୀବନର ପ୍ରତ୍ୟୟଗୁଡ଼ିକୁ ବିକଶିତ କରି ଅଣାଯାଇ ପାରିବ ଓ ଜଣେ ବ୍ୟକ୍ତିର ସ୍ୱାର୍ଥଗୁଡ଼ିକୁ ହିଁ ସମୁଚିତ ସମ୍ମାନ କରା ଯାଉଥିବ, ବର୍ତ୍ତମାନ ମୁଁ ସେହି ବିଷୟରେ କିଛି ଆଲୋଚନା କରିବି ।

ଆମ ପିଲାମାନଙ୍କୁ ଆମେ ସବୁବେଳେ ଏହି ଶିକ୍ଷା ଦେଉ ଯେ ସେମାନେ ଅନ୍ୟ ମନୁଷ୍ୟ, ଭିନ୍ନ ଭିନ୍ନ କର୍ମ, ବାସ୍ତବତା ତଥା ଘଟଣାଗୁଡ଼ିକ ବିଷୟରେ ପ୍ରକୃତରେ ଯାହା ଭାବୁଛନ୍ତି ତାହା ପ୍ରକାଶ କରି କହିଦେବେ; ତୁମେ ସେମାନଙ୍କ ସମ୍ବନ୍ଧରେ ଯାହା କହ ବୋଲି ଇଚ୍ଛା କରୁଥିବେ, ସେହିପରି ଆଦୌ କିଛି କହିବାକୁ ଚେଷ୍ଟା କରିବେନାହିଁ । କାରଣ, ସେପରି କରିବାଦ୍ୱାରା ଗୋଟିଏ ପିଲା କ୍ରମେ ଜଣେ କପଟୀ ହିଁ ହେବ, ଚାଟୁକାର ହେବ ଅଥବା ତୁଚ୍ଛା ପାଜିଟାଏ ହିଁ ହେବ ।

ଆମେ ଆମ ପିଲାମାନଙ୍କୁ ଏହିଗୁଡ଼ିକ ନିମନ୍ତେ ଉତ୍ସାହିତ କରିଥାଉ : ଯଦି ତୁମେ ନିଜର ଆଖିଆଗରେ ହିଁ କୌଣସି ଅନ୍ୟାୟ ଅଥବା ଠକପଣ କରାଯାଉ ଥିବାର ଦେଖୁଛ କିମ୍ବା କୌଣସି ସହମନୁଷ୍ୟର ଅପମାନ କରାଯାଇ ଥିବାର କୌଣସି ଦୃଷ୍ଟାନ୍ତ ତୁମ ଚକ୍ଷୁରେ ପଡ଼ିଛି, ଯଦି ସେହିପରି ଦେଖି ତୁମର କ୍ରୋଧ ଜାଗ୍ରତ ହୋଇଛି ଓ ସେହି କ୍ଷେତ୍ରରେ, ଯେପରି ପ୍ରକୃତରେ ନ୍ୟାୟର ପ୍ରତିଷ୍ଠା ହେବ, ସେଥିପାଇଁ ତୁମର ମଧ୍ୟ ହସ୍ତକ୍ଷେପ କରିବା ଉଚିତ ବୋଲି ଯଦି ତୁମେ ଅନୁଭବ କରିଛ, - ଏବଂ, ଅପର ପକ୍ଷରେ ଯଦି ତୁମର ବୁଦ୍ଧିଆ ମନଟା ଏସବୁଥିରେ ବୃଥା ହସ୍ତକ୍ଷେପ ନକରିବା

ହିଁ ଭଲ ହେବ ବୋଲି ମନ୍ତ୍ରଣା ଦେଉଛି, ତେବେ ତୁମେ ଖୁବ୍ ଭଲ ଭାବରେ ନିଶ୍ଚୟ ଜାଣିବ ଯେ, ତୁମ ଭିତରେ ରହିଥିବା ଭୀରୁତାଟା ହିଁ ସେପରି କହୁଛି; ତେବେ ତୁମେ ପ୍ରଥମ ଅଭିଳାଷଗୁଡ଼ିକ ଅନୁସାରେ କାର୍ଯ୍ୟ କରିବ, - କାରଣ, ତୁମ ଅନ୍ତର୍ଗତ ଭାବର ପ୍ରତିକ୍ରିୟାଗୁଡ଼ିକୁ ତଥା ବିବେକର ବାଣୀଟିକୁ ହିଁ ଏହି କ୍ଷେତ୍ରରେ ସବୁଠାରୁ ଅଧିକ ସକାରାତ୍ମକ ବୋଲି କୁହାଯିବ । ଯଦି ମନ୍ଦ, ଅନ୍ୟାୟ ଓ ଅସମ୍ମାନକର ଆଚରଣକୁ ଦେଖି ମଧ୍ୟ ତୁମେ ତଥାପି ଅବିଚଳିତ ଅର୍ଥାତ୍ ଶୀତଳ ରହି ଆଚରଣ କରିପାରୁଛ, - ତେବେ ତାହା ତୁମକୁ କ୍ରମେ ଅତ୍ୟନ୍ତ ଉଦାସୀନ ଏବଂ ହୃଦୟହୀନ କରି ପକାଇବ ।

ଯଦି କୌଣସି ବ୍ୟକ୍ତି, କାର୍ଯ୍ୟ କିମ୍ବା ଘଟଣା ସମ୍ବନ୍ଧରେ ତୁମେ କିଛି ଜନରବ ଶୁଣିବାକୁ ପାଇଛ, ତେବେ, ଯାହା ଶୁଣିଛ, ତାହା ବିଷୟରେ କୌଣସି ବିଚାର ନକରି ତୁଚ୍ଛା ଶୁଆ ଚଢ଼େଇ ପରି ତାହାର ପୁନରାବୃତ୍ତି କରି ବୁଲନାହିଁ । ସେହି ବିଷୟରେ ତୁମେ ନିଜର ମତ ତଥା ନିଜସ୍ୱ ବିଚାରଗୁଡ଼ିକର ମଧ୍ୟ ନିର୍ଦ୍ଧାରଣ କରିବ; ମାତ୍ର, ଅନ୍ୟ ଲୋକମାନେ ଯାହା କହୁଛନ୍ତି, ତାହା ନିଶ୍ଚୟ ସତ୍ୟ ବୋଲି ଯଦି ତୁମର ବିଶ୍ୱାସ ହେଉଥାଏ, ତେବେ ତୁମେ ତାହାକୁ ଅବଶ୍ୟ ସମର୍ଥନ କରିବ ଏବଂ ତାହାରି ସପକ୍ଷରେ ମଧ୍ୟ ଛିଡ଼ା ହେବ ।

ଯେଉଁ କାର୍ଯ୍ୟଟିକୁ ଆଜି ସମ୍ପୂର୍ଣ୍ଣ କରିବାକୁ ରହିଛି ( ଘରକୁ ଦିଆ ଯାଉଥିବା କିଛି କାର୍ଯ୍ୟ, କର୍ମଶାଳାର କିଛି ଦାୟିତ୍ୱ, ବିଦ୍ୟାଳୟର ବଗିଚାରେ କିମ୍ବା ରୁଚିଗୁଡ଼ିକର ଗୋଷ୍ଠୀରେ କୌଣସି କାର୍ଯ୍ୟ ଇତ୍ୟାଦି), ତୁମେ ସେଇଟିକୁ କଦାପି ପାସୋରି ଦେବନାହିଁ । ସକାଳେ ଉଠିବା ମାତ୍ରକେ ତୁମେ ସେହି ଦିନଟିରେ କରିବାକୁ ରହିଥିବା କାର୍ଯ୍ୟଟି ବିଷୟରେ ସବାଆଗ ଚିନ୍ତା କରିବ । ଆଜି ଯାହା କରିବାକୁ ରହିଛି, ତାହାକୁ କଦାପି କାଲି ହେବ କହି ଟାଳି ଦେବନାହିଁ । ଦୀର୍ଘସୂତ୍ରୀ ହେଲେ ଆଳସ୍ୟ ଗ୍ରାସ କରିବ ଏବଂ ନାନା ବିଶୃଙ୍ଖଳା ଉପସ୍ଥିତ ହେବ । ନିଜର ବିବେକଟିକୁ ସ୍ୱଚ୍ଛ ଭାବରେ ସକ୍ରିୟ କରି ରଖିବା ନିମନ୍ତେ ଏପରିକି କାଲି କରିବାପାଇଁ ରହିଥିବା କୌଣସି କାର୍ଯ୍ୟରୁ ମଧ୍ୟ ଆଜି ତାହାର କ୍ଷୁଦ୍ର ଅଂଶଟିଏ କରି ପକାଇବ । ତାହାହିଁ ତୁମର ଦୈନନ୍ଦିନ ଜୀବନରେ ଗୋଟିଏ ନିୟମ ହୋଇ ରହିଥାଉ ।

ପ୍ରଥମେ ନିଜର ଚେଷ୍ଟା ଉପରେ ବିଶ୍ୱାସସ୍ଥାପନ କରିବ ଓ ତା'ପରେ ଯାଇ ଜ୍ଞାନର ଆହରଣ କରିବାରେ ମନ ବଳାଇବ । ଅନ୍ୟ ବନ୍ଧୁମାନେ ଓ ଶ୍ରେଣୀପିଲାଙ୍କ

ଦ୍ୱାରା କରା ହୋଇଥିବା କାର୍ଯ୍ୟର ଫଳଗୁଡ଼ିକ ଦ୍ୱାରା ସ୍ୱୟଂ ଉପକୃତ ହେବାକୁ ମନ କରିବା, - ଏହା ହେଉଛି ଅସାଧୁତା । ଅନ୍ୟମାନେ କରିଥିବା ଗୃହପାଠରୁ ନକଲ କରି ଆଣିବା - ଏହାକୁ ତ ଏକ ହୀନ ଉପାୟ ଅବଲମ୍ବନ କରି ଆତ୍ମସାତ୍ କରିବା ବୋଲି କୁହାଯିବ ।

ଅନ୍ୟ ମନୁଷ୍ୟମାନଙ୍କୁ ସୁଖ ଓ ଆନନ୍ଦ ଆଣି ଦେବାରେ ତୁମେ ଦିନମାନ କ'ଣ ସବୁ କରିଛ, ଦିନଟି ଶେଷ ହେବା ସମୟରେ ତୁମେ ତାହା ଭାବିବ । ନିଜର ବୁଦ୍ଧିରେ ବୃଦ୍ଧି ଘଟାଇବା ନିମନ୍ତେ କ'ଣ କରିଛ, ତୁମେ ସେ ବିଷୟରେ ମଧ୍ୟ ଚିନ୍ତା କରିବ । ଏହାଦ୍ୱାରା ମଧ୍ୟ ତୁମେ ଅନ୍ୟ ବ୍ୟକ୍ତିମାନଙ୍କୁ ଆନନ୍ଦ ଦେଇ ପାରିବ । ଯଦି ମନକୁ କୌଣସି ଉତ୍ତର ନଜୁଟେ, ତେବେ ତାହାର ଅର୍ଥ ହେବ ଯେ ତୁମର ଆଜି ଦିନଟି ବୃଥା କଟିଛି ଏବଂ ତେଣୁ, ଯେପରି ପରବର୍ତ୍ତୀ ଦିନଟିରେ ବିଶେଷ ପ୍ରୟାସ କରି ଏକ କ୍ଷତିପୂରଣ ସମ୍ଭବ ହୋଇ ପାରିବ, ତୁମେ ସେହି ବିଷୟରେ ଜାଗରୂକ ହୋଇ ରହିବ ।

ପ୍ରୟୋଗଗୃହ ଅଥବା କର୍ମଶାଳାରେ ଗୋଟିଏ ମଡ଼େଲ୍ ଅଥବା ଉପକରଣକୁ ନେଇ କାର୍ଯ୍ୟ କରୁଥିବା ସମୟରେ, ତୁମର ଦ୍ରବ୍ୟଟି ଯେତେ ସୁନିର୍ମିତ ବା ତ୍ରୁଟିହୀନ ହୋଇଥାଉ ପଛକେ, ସେଇଟିକୁ ତୁମେ ଆହୁରି ଅଧିକ ଭଲ କରି ତିଆରି କରିବାକୁ ଚେଷ୍ଟା କରିବ ଓ ମନେ ରଖିଥିବ ଯେ କର୍ମକୁଶଳତା ଏବଂ ପୂର୍ଣ୍ଣତାର କ୍ଷେତ୍ରରେ ଶେଷ ସୀମା ବୋଲି ପ୍ରକୃତରେ କେଉଁଠି କିଛି ନଥାଏ ।

ଯଦି ତୁମର ଜଣେ ସାଙ୍ଗ ଅଧ୍ୟୟନ ଅଥବା କାର୍ଯ୍ୟରେ ପଛରେ ରହି ଯାଉଥାଏ, ତେବେ ସିଏ କିପରି ପୁଣି ସାଙ୍ଗକୁ ଚାଲିଆସି ପାରିବ, ତୁମେ ତାକୁ ସେକଥା ଶିଖାଇଦେବ । ସାଙ୍ଗଟି ଅସୁବିଧାରେ ପଡ଼ିଥିଲେ ମଧ୍ୟ ତୁମେ ଯଦି ତଥାପି ଉଦାସଭାବ ଦେଖାଉଛ, ତେବେ ତାହାର ଅର୍ଥ ହେବ ଯେ ତୁମ ପ୍ରକୃତି ମଧ୍ୟରେ ନିଶ୍ଚୟ ଏକ ଉଦାସୀନତା ଘର କରି ରହିଛି । ତୁମେ ତାକୁ ଯେତେ ଅଧିକ ପରିମାଣରେ ଦରଦ, ସହାନୁଭୂତି ଏବଂ ସମଦୁଃଖୀ ଭାବ ଦେଖାଇ ପାରିବ, ସେଥିରୁ ତୁମକୁ ମଧ୍ୟ ସେତିକି ଆନନ୍ଦ ନିଶ୍ଚୟ ମିଳିବ ।

ପିତାମାତାଙ୍କ ପ୍ରତି ଆପଣାର କୌଣସି କର୍ତ୍ତବ୍ୟକୁ କଦାପି ଭୁଲିବନାହିଁ । ସେମାନଙ୍କର କର୍ମ ତଥା ଫୁରସତ ସମୟକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିବ ଏବଂ ନିଜ କାର୍ଯ୍ୟଗୁଡ଼ିକର ତଥା ଆଚରଣର ମାଧମରେ ସେହି ସମ୍ମାନକୁ ପ୍ରଦର୍ଶନ

କରି ପାରୁଥିବ । ତୁମେ ପୂର୍ଣ୍ଣ ବିବେକ ସହିତ ନିଜର କର୍ମ ତଥା ଅଧ୍ୟୟନ କରୁଥିଲେ ସେମାନଙ୍କୁ ତାହାହିଁ ଆନନ୍ଦ ପ୍ରଦାନ କରିବ । ସେମାନଙ୍କୁ ସେହି ଆନନ୍ଦରୁ କଦାପି ବଞ୍ଚିତ କରିବନାହିଁ, ସେମାନଙ୍କୁ କୌଣସି ପ୍ରକାରେ ନିରାଶ କରିବନାହିଁ । ତୁମେ ଯେ ସର୍ବବିଧ ସବୁଥିରେ ସର୍ବୋତ୍ତମ ସାମାଟିରେ ଯାଇ ପହଞ୍ଚି ପାରିଛ, ସେମାନଙ୍କ ମନରେ କଦାପି ସେପରି କୌଣସି ଦୃଢ଼ ଧାରଣା ସୃଷ୍ଟି କରିବନାହିଁ । (୧୧,୧୭୭-୭୮)

ନିଜର ମାଆ, ଆଈମାଆ, ବାପାଙ୍କ ବାପା ଓ ସାନ ଭଉଣୀମାନଙ୍କର ଯତ୍ନ ନେବା, - ଏକ ସାମୂହିକ ଗ୍ରାମରେ ସମୃଦ୍ଧ ଓ ସଂପୂର୍ଣ୍ଣ ଜୀବନଟିଏ ବଞ୍ଚିବାଠାରୁ ଏଗୁଡ଼ିକ ଆଦୌ କମ୍ ମହତ୍ତ୍ୱପୂର୍ଣ୍ଣ ନୁହନ୍ତି । .... ଆମେ ସର୍ବଦା ଏହି ବିଷୟରେ ସୁନିଶ୍ଚିତ ରହିବା ନିମନ୍ତେ ଚେଷ୍ଟା କରୁଥିଲୁ ଯେ, ଆମ ସ୍କୁଲର ପିଲାମାନେ ସେମାନଙ୍କର ସର୍ବାଧିକ ସମୟକୁ କୌଣସି ପାଠପଢ଼ାରେ ବ୍ୟସ୍ତ ନରହି ନିଜର ଘରେ ହିଁ ଅତିବାହିତ କରିବେ, - ନିଜ ପରିବାର ସହିତ ବିତାଇବେ, ବିଶେଷ କରି ନିଜର ମାଆମାନଙ୍କ ସାଙ୍ଗରେ । ସାନମାନଙ୍କୁ ସବୁବେଳେ କୌଣସି ନା କୌଣସି କାମରେ ନିଯୁକ୍ତ କରି ରଖିବାର ଆଦୌ କୌଣସି ପ୍ରୟୋଜନ ନାହିଁ । ଅଥବା, ସମୂହ ଗାଆଁରେ ସେମାନଙ୍କ ନିମନ୍ତେ କୌଣସି ସଂଗଠିତ କାର୍ଯ୍ୟକ୍ରମ ସ୍ଥିର କରି ରଖିବାର ମଧ୍ୟ ପ୍ରୟୋଜନ ଆଦୌ ନାହିଁ । ଛୁଟୀଦିନ ମାନଙ୍କରେ ମଧ୍ୟ ପିଲାମାନେ ନିଜର ପିତାମାନଙ୍କ ସହିତ ଅବଶ୍ୟ ରହିବେ ଓ ଉପକୃତ ହେବେ । (୧୨, ୧୮୮)

ପିତାମାତାଙ୍କ ପାଖରେ ରହିଥିବା ସାମର୍ଥ୍ୟ ଏବଂ ସୁବିଧାର ସାମାଟି ମୁତାବକ ପିଲାମାନେ ସେମାନଙ୍କର ବାସନା ଓ ଅଭିଳାଷଗୁଡ଼ିକୁ ମଧ୍ୟ ସୀମିତ କରି ରଖିବେ, ଆମେ ସେଥିଲାଗି ମଧ୍ୟ ଆମ ପିଲାଙ୍କୁ ସାହାଯ୍ୟ କରୁଥିଲୁ । ଅନେକ ସମୟରେ ପୁତ୍ରକନ୍ୟାମାନଙ୍କ ନିମନ୍ତେ ସେମାନଙ୍କର ପିତାମାତା ଲାଗି ନାନା ଭୌତିକ ତଥା ସାଂସ୍କୃତିକ ସୁଖସୁବିଧା ଆଣି ପହଞ୍ଚାଇ ଦେଇଥାଆନ୍ତି ସତ, ମାତ୍ର ସେଥିଲାଗି ସେମାନଙ୍କୁ ବେଶ୍ ତ୍ୟାଗ କରିବାକୁ ମଧ୍ୟ ପଡ଼ିଥାଏ । ତେଣୁ, ଜୀବନକୁ ସରଳ କରିନେଇ ପିଲାଏ ସେହି ସୁବିଧାଗୁଡ଼ିକୁ ବର୍ଜନ ମଧ୍ୟ କରିପାରନ୍ତି । ପିଲାମାନଙ୍କୁ ସରଳ ଜୀବନ ଯାପନ କରିବାକୁ ଉତ୍ସାହ ପ୍ରଦାନ କରାଯିବ, - ଏଇଟି ହେଉଛି ନୈତିକ ଶିକ୍ଷାରେ ଏକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ । କିନ୍ତୁ, ଅନ୍ୟାନ୍ୟ ଗୁଣଗୁଡ଼ିକରୁ ଅଲଗା କରି ରଖି କଦାପି ସରଳ ଜୀବନର ଶିକ୍ଷା ଦିଆଯାଇ ପାରିବନାହିଁ । ଏବଂ, କର୍ମକୁ ଯେଉଁ ପିଲାମାନେ ଆପଣାକୁ ବ୍ୟକ୍ତ କରିବାର ଏକ

ମାଧମରୂପେ ବ୍ୟବହାର କରିବାର ସୁଯୋଗ ପାଇବେ, ସରଳ ଜୀବନ ଏବଂ ସଂଯମ କେବଳ ସେହିମାନଙ୍କ ଦ୍ୱାରା ହିଁ ସମ୍ଭବ ହେବ । କର୍ମ ସେମାନଙ୍କର ଆବେଗଗତ ତଥା ମାନସିକ ଅଭିଜ୍ଞତାର ଗୋଟିଏ ଅଂଶ ହୋଇ ରହିଥିବ । (୧୪,୧୨)

ଗୋଟିଏ ପିଲା ପ୍ରଥମ କରି ବିଦ୍ୟାଳୟକୁ ଆସୁଥିବା ସମୟରେ ତା'ର ଭାବନା, ଆଗ୍ରହ ଏବଂ ଅନୁଭବଗୁଡ଼ିକ ସର୍ବୋପରି ତା'ର ପରିବାରଟି ସହିତ ବାନ୍ଧି ଦିଆହୋଇ ରହିଥାଏ । ତା'ର ପିତାମାତା, ଭାଇ ଓ ଭଉଣୀମାନେ ଯାହାକିଛି କରନ୍ତି, ତା' ନିଜ ଘରର ଚତୁଷ୍ପାର୍ଶ୍ୱରେ ବଗିଚାରେ ଓ ପ୍ରତିବେଶରେ ତାକୁ ଯାହାକିଛି ଘେରି ରହିଥାଏ, ତାହାରି ଭିତରେ ପ୍ରସାମିତ ଥାଏ । ବିଦ୍ୟାଳୟକୁ ଆସି ତା'ର ମେଦିନାଦୃଷ୍ଟି କ୍ରମଶଃ ପ୍ରସାର ଲାଭ କରେ; ସିଏ ଧୀରେ ଧୀରେ ନିଜ ଦେଶକୁ ଜାଣେ, ସେହି ଦେଶର ବର୍ତ୍ତମାନ, ଅତୀତ ଏବଂ ଭବିଷ୍ୟତ ବିଷୟରେ ଅବଗତ ହୁଏ । ଏହିପରି ଭାବରେ ତା'ର ସାମାଜିକ ଚେତନା ମଧ୍ୟ ଏକ ନିର୍ଦ୍ଦିଷ୍ଟ ଆକାର ଧାରଣ କରି ଆସୁଥାଏ ।

ପିଲାଟି ସମାଜରେ ତା'ର ପିତାମାତାଙ୍କର ସ୍ଥାନଟି ବିଷୟରେ ବୁଝିବାକୁ ଆରମ୍ଭ କରେ.... ନିଜ ପରିବାରକୁ ନେଇ ଗର୍ବ ଅନୁଭବ କରେ, ପିତାମାତାଙ୍କର କାର୍ଯ୍ୟକୁ ନେଇ ବି ଗର୍ବୀତ ହୁଏ ଏବଂ ସେହି ଅନୁଭବଗୁଡ଼ିକୁ ସିଏ ନିଜର ବିଦ୍ୟାଳୟରୂପୀ ସମଷ୍ଟିଟିରେ ମଧ୍ୟ ବ୍ୟକ୍ତ କରିବାପାଇଁ ଇଚ୍ଛା କରେ । ତା'ର ଏହିସବୁ ଅନୁଭବ ଯେପରି କ୍ରମଶଃ ବୃଦ୍ଧି ପାଇବ ଓ ଗଭୀରକୁ ମଧ୍ୟ ଚେର ମଡ଼ାଇ ପାରିବ, ସେଥିଲାଗି ଏହା ଖୁବ୍ ମହତ୍ତ୍ୱପୂର୍ଣ୍ଣ ଯେ, ଜଣେ ଶିକ୍ଷକ ତା'ର ଛାତ୍ରମାନଙ୍କର ମନ ଭିତରେ ସେହି ଆଡ଼କୁ ଏକ ଗଭୀର, ସ୍ଥାୟୀ ତଥା ସଂବେଦନଶୀଳ ପ୍ରଭାବ ମଧ୍ୟ ଅବଶ୍ୟ ପକାଇ ପାରୁଥିବ । ବେଳେ ବେଳେ ଏପରି ଘଟେ ଯେ, ଗୋଟିଏ ପିଲା ଯାହା ଏକ ସାଂଘାତିକ ଦୁର୍ବଳତା ବୋଲି ବିଚାର କରୁଛି, ସେଇଟିକୁ ସିଏ ନିଜର ବାପା ଅଥବା ମାଆଙ୍କଠାରେ ଦେଖିବାକୁ ପାଏ ଓ ଅତିଶୟ ଅଶାନ୍ତ ଅନୁଭବ କରେ : ସିଏ ହୁଏତ ବିଚାର କରୁଥାଏ ଯେ, ଅନ୍ୟ ପିଲାମାନଙ୍କର ବାପାମାଆଙ୍କ ତୁଳନାରେ ତା' ନିଜ ବାପାମାଆ ଅଧିକ ଖରାପ ଏବଂ ଶିକ୍ଷକ ଏମାନଙ୍କର ନାଆଁ ଉଲ୍ଲେଖ ମାତ୍ର କରି ପକାଇଲେ ମଧ୍ୟ ଅଶାନ୍ତ ହୋଇପଡ଼େ । ତେଣୁ ଜଣେ ଶିକ୍ଷକ ପିଲାମାନଙ୍କ ପାଖରେ ସେମାନଙ୍କ ପିତାମାତାଙ୍କ ବିଷୟରେ କଥାବାର୍ତ୍ତା କରୁଥିବା ସମୟରେ ଅତ୍ୟନ୍ତ ସଂଯମ ଓ ସତର୍କତା ଅବଲମ୍ବନ କରି ପାରୁଥିବ ।.... ପ୍ରକୃତରେ ଉତ୍ତମ ଶିକ୍ଷକମାନେ ଭଲ ଭାବରେ ବୁଝିଥାନ୍ତି ଯେ, ଜଣେ ପିଲା ଆଗରେ ତା'

ପିତାମାତାଙ୍କ ବିଷୟରେ କିଛି କଥା କହିଲେ ଅନେକ ସମୟରେ ତଦ୍ଦ୍ୱାରା ନିଜ ପରିବାର ପ୍ରତି ରହିଥିବା ପିଲାଟିର ଶ୍ରଦ୍ଧାଭାବ ଅଧିକ ଶକ୍ତିଶାଳୀ ହିଁ ହୋଇଥାଏ ଏବଂ ଆଉ ବେଳେ ବେଳେ ସେହି କଥୋପକଥନ ନିଜ ପିତାମାତାଙ୍କ ସହିତ ପିଲାଟିର ସମ୍ପର୍କରେ ଦ୍ୱନ୍ଦ୍ୱ ସୃଷ୍ଟି ହେବାରେ ମଧ୍ୟ ସାହାଯ୍ୟ କରେ । ଏହା ଫଳରେ ସିଏ ସେହି ଶିକ୍ଷକଙ୍କୁ ମଧ୍ୟ ଅବିଶ୍ୱାସ କରିବାକୁ ଆରମ୍ଭ କରେ ଓ ଶିକ୍ଷକ ହୁଏତ ଯାହାକିଛି କହୁଥିଲେ ମଧ୍ୟ ତତ୍‌କ୍ଷଣାତ୍ ଖୁବ୍ ସତର୍କ ହୋଇଯାଏ । (୪,୧୧୮)

ବହୁ , ବହୁସଂଖ୍ୟକ ପରିବାରରେ ପିଲାମାନେ ସକାରାତ୍ମକ ଓ ନକାରାତ୍ମକ ଉଭୟ ପ୍ରକାର ଚରିତ୍ରଲକ୍ଷଣ ଗୁଡ଼ିକରେ 'ଆବିଷ୍କାର' କରିଥାନ୍ତି । ତାହାର ଅର୍ଥ ହେଉଛି ଯେ, ଜଣେ ପିଲାର ଆବେଗଜଗତଟି ମଧ୍ୟରେ ପ୍ରବେଶ କରିବାକୁ ଚେଷ୍ଟାମାନ କରୁଥିବା ସମୟରେ ଶିକ୍ଷକଙ୍କୁ ବହୁତ ଚିନ୍ତା କରିବାକୁ ଅବଶ୍ୟ ପଡ଼ିବ । କେଉଁଟି ଏକାନ୍ତ ଅପରିହାର୍ଯ୍ୟ ଓ କେଉଁଟି ଗୌଣ, ନିଜର ମନ ଭିତରେ ସିଏ ସେଇଟିକୁ ଅବଶ୍ୟ ନିର୍ଣ୍ଣୟ କରି ପାରୁଥିବ । .... ଜଣେ ପିଲାର ପିତାମାତା କରୁଥିବା କାର୍ଯ୍ୟର ସାମାଜିକ ତାତ୍ପର୍ଯ୍ୟଟିକୁ ହୃଦୟଙ୍ଗମ କରିବା ନିମନ୍ତେ ସର୍ବୋତ୍ତମ ଶିକ୍ଷକମାନେ ତାକୁ ସାହାଯ୍ୟ ହିଁ କରୁଥାନ୍ତି । (୪, ୧୧୯)

ଗୋଟିଏ ସୁସମଞ୍ଜସ ଏବଂ ଉତ୍ତମ ଭାରସାମ୍ୟଯୁକ୍ତ ବ୍ୟକ୍ତିତ୍ୱରୂପେ ତିଆରି ହେବାକୁ ହେଲେ ପିଲାଟିର ମନୁଷ୍ୟଜୀବନର ଦୁଃଖଯାତନାଗୁଡ଼ିକ ବିଷୟରେ ଅବଶ୍ୟ ପ୍ରତ୍ୟକ୍ଷ ଅଭିଜ୍ଞତା ରହିଥିବା ଆବଶ୍ୟକ । ତେବେଯାଇ ସିଏ ଅନ୍ୟମାନଙ୍କୁ ମଧ୍ୟ ନିର୍ଭୁଲ ଭାବରେ ବୁଝି ପାରିବ, ସେମାନଙ୍କ ସକାଶେ ମନୋଯୋଗୀ ହେବ ଏବଂ କେବଳ ତାହାରିଦ୍ୱାରା ହିଁ ଭୟମୁକ୍ତ ହୋଇପାରିବ ।... ନିର୍ଭୟ ହୋଇ ଲାଭ କରା ଯାଉଥିବା ଯାବତୀୟ ଶିକ୍ଷା, - ତାହାହିଁ ଯଥାର୍ଥ ଶିକ୍ଷା । ଯଥାର୍ଥ ସଦୟତା ଏବଂ ଦୁର୍ବଳ ତଥା ସହାୟହୀନ ମାନଙ୍କୁ ରକ୍ଷା କରିବାଲାଗି ଏକ ସମ୍ମତି, - ସେଥିଲାଗି ଆମ ଭିତରେ ଏକ ସାହସଯୁକ୍ତ ଅନ୍ତଃପ୍ରବୃତ୍ତି ସର୍ବଦା ରହିଥିବା ଉଚିତ ।

ଉପଯୁକ୍ତ ନୈତିକ ସାହସ ଦ୍ୱାରା ହିଁ ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ସଂବଳିତ କରି ଆଣିବା, ଏହି କ୍ଷେତ୍ରରେ ତାହାହିଁ ହେଉଛି ସବୁଠାରୁ ଅଧିକ ମୂଲ୍ୟବାନ୍ ମର୍ମସ୍ପର୍ଶୀ କଥା । ପିଲା କଦାପି ସତ୍ୟକୁ ବୁଲାଇ ବଙ୍କାଇ ଦେବନାହିଁ କିମ୍ବା ମିଥ୍ୟାକୁ ଘୋଡ଼ାଇ ରଖିବାର ପ୍ରୟାସ ବି କରିବନାହିଁ , - ଏହି ପନ୍ଥାଟିକୁ ପରିହାର କରି ଗୋଟିଏ ପିଲା ବରଂ ନିଜର ଜୀବନକୁ ବିପନ୍ନ କରିବାକୁ ହିଁ ଅଧିକ ଇଚ୍ଛୁକ ହୋଇ

ରହିଥିବ । ସିଏ ଅନ୍ୟାୟକୁ ବର୍ଜନ କରୁଥିବ ଏବଂ, କେବଳ ଜଣେ ବ୍ୟକ୍ତିର ଅବମାନନା ନୁହେଁ, ସମଗ୍ର ମାନବଜାତିର ଅବମାନନାକୁ ମଧ୍ୟ ପରିହାର କରି ପାରୁଥିବ । ନୈତିକ ଜୀବନରେ ଏକ ସାଲିଶ୍‌ହୀନ ସଂପୂର୍ଣ୍ଣ ଦୃଷ୍ଟି, ପିଲାମାନଙ୍କର ସେହି ପିଲାବୟସରୁ ହିଁ ତା'ର ମାନବୋଚିତ ଗୁଣଗୁଡ଼ିକୁ ବିକଶିତ ତଥା ଗଠିତ କରି ଆଣିବାଲାଗି ମୁଁ ତାହାକୁ ହିଁ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ମାର୍ଗ ବୋଲି ଅବଶ୍ୟ କହିବି । (୩୫)

ଯଦି ଶିକ୍ଷକମାନେ ସେମାନଙ୍କର ଶିକ୍ଷାର୍ଥୀମାନଙ୍କର ହୃଦୟରେ ନୈତିକ ସାଧୁତା ଏବଂ ଧୈର୍ଯ୍ୟଶୀଳତାର ଗୁଣଗୁଡ଼ିକୁ ବିକଶିତ କରାଇ ଆଣିବାରେ ସଫଳ ହେବେ, ତେବେ ସେହି ଶିକ୍ଷାର୍ଥୀମାନେ ଯେ କେବଳ ତୁମର ଭାବନା ତଥା ପ୍ରୟାସମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରି ପାରିବେ ତା' ନୁହେଁ, ସେମାନେ ସ୍ୱୟଂ ବି ତୁମର ଶିକ୍ଷକରୂପେ ତୁମକୁ ଶିକ୍ଷା ଦେଇ ପାରିବେ । ମାତ୍ର, ସେଥିରେ ଆପଣମାନେ ମୋଟେ ଆତଙ୍କିତ ହେବେ ନାହିଁ । ଯଥାର୍ଥ ଶିକ୍ଷା ବସ୍ତୁତଃ ଏପରି ଏକ ପରିବେଶକୁ ସମ୍ଭବ କରି ଆଣିଥାଏ, ଯେତେବେଳେ କି କେବଳ ଜଣେ ଶିକ୍ଷକ ହିଁ ତାକୁ ଗୋଟିଏ ଦୃଷ୍ଟାନ୍ତ ପରି ଦେଖୁଥିବା ଛାତ୍ରମାନଙ୍କୁ ହିଁ ଶିକ୍ଷା ଦିଏନାହିଁ, ମାତ୍ର, ଅନ୍ୟ ପକ୍ଷରେ ଛାତ୍ରମାନେ ମଧ୍ୟ ଶିକ୍ଷକକୁ ଶିକ୍ଷା ଦେଇ ପାରନ୍ତି । ଆପଣାର ଆବେଗଶକ୍ତିକୁ ମୁଁ ଆପଣାର ଏହି ସୃଜନାତ୍ମକ କାର୍ଯ୍ୟରେ ନିୟୋଜିତ କରେ ଏବଂ ସତେଅବା ସେହି ଶକ୍ତି ହିଁ ମୋ' ନିଜ ପାଖକୁ ଲେଉଟି ଆସିଥାଏ ।

ସାଧୁତା ତଥା ଧୈର୍ଯ୍ୟଶୀଳତାର ଶିକ୍ଷା ଏବଂ ସ୍ୱପ୍ରତ୍ୟୟଗୁଡ଼ିକ ପ୍ରତି ଅନୁଗତ ରହିବାର ଶିକ୍ଷା, - ଏହି ମାର୍ଗଟି ଦ୍ୱାରା ହିଁ ସେହି ଭାବୀ ନାଗରିକଟି ନୈତିକ ପରିପକ୍ୱତାର ଶିଖରଗୁଡ଼ିକର ଅଧିକରୁ ଅଧିକ ନିକଟବର୍ତ୍ତୀ ହେବାରେ ଲାଗି ପାରିବ । (୩୧)

କ୍ରୋଧ ଓ ରୋଷ ପ୍ରକାଶ କରି ପାରୁଥିବ, ଘୃଣା ବ୍ୟକ୍ତ କରି ପାରିବ, ମନ୍ଦ ବିଷୟରେ ଅସହିଷ୍ଣୁ ହେବ, - ଏଗୁଡ଼ିକୁ ମୁଁ ଗୋଟିଏ ଗୋଟିଏ ପ୍ରଶଂସନୀୟଗୁଣ ବୋଲି ବିଚାର କରେ । ଆମଠାରେ ଯେ ଏକ ନୈତିକ ଦୃଢ଼ତା, ସାଧୁତା ଓ ଧୈର୍ଯ୍ୟଶୀଳତା ରହିଛି, ସେହିଗୁଡ଼ିକରୁ ହିଁ ଏହାର ପ୍ରମାଣ ମିଳେ । ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯେ ସାନ ପିଲାଙ୍କର ହୃଦୟଗୁଡ଼ିକ କେବେହେଲେ ଉଦାସୀନତା ଦେଖାଇବେ ନାହିଁ । ମୁଁ ଏପରି ଏକ ଆଦୌ କୌଣସି ମୂଲ୍ୟ ରହିଥିବା ନୈତିକ

ଶିକ୍ଷାର କଳ୍ପନା ବି' କରି ପାରିବିନାହିଁ, ଯାହାକି ଉପେକ୍ଷା ଏବଂ ଉଦାସୀନତାକୁ ଦେଖି ସମଦୁଃଖିତାରେ କର୍ମି ଉଠିବାକୁ ଗୋଟିଏ ଶିଶୁ ଅଥବା ତରୁଣକୁ ଶିକ୍ଷା ଦେଇ ନଥିବ । ତା' ନିଜ ଲୋକମାନଙ୍କର ସ୍ୱାର୍ଥକୁ ବେଖାତିର କରା ଯାଉଥିବ ଏବଂ ତା'ର ସାଥୀର ଅବମାନନା ହେଉଥିବ, - ଏବଂ ସିଏ ତଥାପି କିପରି ତାହାକୁ ସହ୍ୟ କରି ଯାଉିବ ? ମନ୍ଦଟା ଆସିବ ଓ ସକଳ ସମ୍ମାନର ସହିତ ତାହାର ସାମନା କରିବା ନିମନ୍ତେ ମୁଁ ସେଥିରୁ କୌଣସି ପ୍ରେରଣା ପାଇବି ନାହିଁ ଓ ଅସହିଷ୍ଣୁତା ବି ଅନୁଭବ କରିବିନାହିଁ, ତାହା କିପରି ହେବ ?

ତେଣୁ ସତ୍ୟ, ଶୁଭ ତଥା ସୁନ୍ଦରର ବିଜୟ ନିମନ୍ତେ ମୋ'ର ପ୍ରତ୍ୟେକ ଶିକ୍ଷାର୍ଥୀ ସଂଗ୍ରାମ କରି ବାହାରିବ, - ସର୍ବପ୍ରଥମେ ମୁଁ ତାହାକୁ ହିଁ ନିଜର ଲକ୍ଷ୍ୟରୂପେ ଗ୍ରହଣ କରିଥିଲି । ଆପଣାର ଏକ ମୁହଁ ବୋଲି ଆଦୌ କିଛି ନଥିବା ତୁଚ୍ଛା ଶୂନ୍‌ଟା ଠାରୁ ମୋ'ର ଛାତ୍ରମାନେ ନିଶ୍ଚୟ ଅଧିକ କିଛି ହେବେ, ନିଜର ମଧ୍ୟ କିଛି କହିବାକୁ ରହିଛି ବୋଲି ଜାଣି ପାରୁଥିବେ ଏବଂ, ସେମାନେ ଯାହାକୁ ଠିକ୍ ବୋଲି ଜାଣନ୍ତି, ତାହାର ପକ୍ଷ ସମର୍ଥନ କରି ଛିଡ଼ା ହୋଇ ପାରୁଥିବେ, ଏଥିରେ ମୁଁ ସେମାନଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କଲି । ମୁଁ ଏତିକି ସମ୍ଭବ କରିପାରିଲେ ମୋ'ର ପ୍ରତ୍ୟେକ ଶିକ୍ଷାର୍ଥୀ ବଡ଼ ହୋଇ ଅବଶ୍ୟ ଜଣେ ଜଣେ ପ୍ରକୃତ, ବଡ଼ ମଣିଷରେ ପରିଣତ ହେବେ । ଏକ ସମୂହରେ ଜଣେ ସଭ୍ୟ ହିସାବରେ ଜଣେ ବ୍ୟକ୍ତିର ବିବେକ, ଆଦୌ କୌଣସି ପାଲିଶ୍ କରୁନଥିବା ତା'ର ସାଧୁତା ଓ ତା'ର ଦାୟିତ୍ୱବୋଧ, - ଜଣେ ମନୁଷ୍ୟର ବଡ଼ପଣିଆକୁ ସେହି ମାପକାଠି ଦ୍ୱାରା ହିଁ ବିଚାର କରାଯିବ । ସବୁ ମନୁଷ୍ୟଙ୍କ ପାଇଁ ହିଁ ସତ୍ୟର ବିଜୟଲାଭ, - ଆମେ ତାହାକୁ ହିଁ ଜଣେ ବ୍ୟକ୍ତିର ସୁଖ ତଥା କଲ୍ୟାଣର ଆଧାରଶିଳା ବୋଲି ସ୍ୱୀକାର କରିବାକୁ ହେବ, - ତା'ର ଶୈଶବ କାଳରେ ମଧ୍ୟ ସେହି ସତ୍ୟଟି ନିୟାମକ ହୋଇ ରହିଥାଏ । (୩୦)

ଆମ ବିଦ୍ୟାଳୟରେ ପାଠ ପଢ଼ି ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ବାହାରିଲେ, ସେମାନଙ୍କ ଭିତରୁ କିଏ କ'ଣସବୁ କଲେ ବା ହେଲେ, ନିମ୍ନଲିଖିତ ହିସାବଟିରୁ ତାହାର ଚିତ୍ରଟିଏ ନିଶ୍ଚୟ ମିଳିଯିବ ।

୧୯୪୯ ଓ ୧୯୬୬ ଭିତରେ ପାଭ୍‌ଲିଶ୍ ବିଦ୍ୟାଳୟରେ ୭୧୨ ଜଣ ଛାତ୍ରଛାତ୍ରୀ ସେମାନଙ୍କର ମାଧମିକ ଶିକ୍ଷା ଶେଷ କରିଥିଲେ । ସେଥିରୁ ୨୬୮ ଜଣ ଉଚ୍ଚତର ଶିକ୍ଷାନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟ ମାନଙ୍କରେ ପଢ଼ିବାକୁ ଯାଇଥିଲେ: ୯୪

ଇଞ୍ଜିନିୟର୍ ହେଲେ, ୪୫ ଡାକ୍ତର ହେଲେ ଓ ୪୯ ଜଣ କୃଷିବିଶେଷଜ୍ଞ ହେଲେ । ୫୩ ଶିକ୍ଷକତା କଲେ ଓ ୩୭ ଜଣ ଅନ୍ୟାନ୍ୟ ବିଭିନ୍ନ ବିଶେଷଜ୍ଞ ହୋଇ ବାହାରିଥିଲେ । ଆହୁରି ୧୮୩ ଜଣ ବର୍ତ୍ତମାନ ମଧ୍ୟ ଅଧିକ ଶିକ୍ଷା ଲାଭ କରୁଛନ୍ତି ( ୬୦ ଜଣ ଇଞ୍ଜିନିଅର୍ ହେବାକୁ, ୨୨ ଜଣ ଡାକ୍ତର ହେବାକୁ, ୩୮ ଜଣ ଶିକ୍ଷକ ହେବାକୁ । ୩୬ ଜଣ କୃଷିବିଶେଷଜ୍ଞ ହେବେ ଏବଂ ୨୭ ଜଣ ଆଉ ଅନ୍ୟାନ୍ୟ ଆଡ଼େ ଯିବେ । ବାକୀମାନେ ଶିଳ୍ପ ତଥା କୃଷି-ଉତ୍ପାଦନରେ କାର୍ଯ୍ୟ କରୁଛନ୍ତି ୭୩ ଜଣ ମେସିନ୍ ଚଳାଉଛନ୍ତି, ୧୧୬ ଜଣ ଟେକ୍‌ନିସିଆନ୍, ମେକାନିକ୍ ଓ ବିଶେଷ କେତେକ କୌଶଳରେ ତାଲୀମ ପାଇଥିବା ଶ୍ରମିକରୂପେ କାର୍ଯ୍ୟ କରୁଛନ୍ତି । ୬୨ ଜଣ କୃଷିକ୍ଷେତ୍ରରେ ଟେକ୍‌ନିସିଆନ୍ ଅଛନ୍ତି, ପଶୁଧନ-ପ୍ରଜନନ କାର୍ଯ୍ୟ କରୁଛନ୍ତି । ଏହି ଶେଷ ଦଳଟି ମଧ୍ୟରୁ ୬୮ ଜଣ ସ୍ଥାନୀୟ କୋଠକୃଷିରେ ମେସିନ୍ ଚଳାଉଛନ୍ତି, ମେକାନିକ୍ ଅଛନ୍ତି, ଟେକ୍‌ନିସିଆନ୍ ହୋଇଛନ୍ତି ଏବଂ ପଶୁଧନ-ପ୍ରଜନନରେ କାର୍ଯ୍ୟ କରୁଛନ୍ତି । (୧୧,୩୩୧)

## ପ୍ରତ୍ୟୟ ଓ କର୍ମ ମଧ୍ୟରେ ସମଞ୍ଜସତା

ଦୃଢ଼ ପ୍ରତ୍ୟୟ ବୋଲି ଜୀବନରେ କିଛି ସମ୍ଭବ ହେଲେ ତା'ପରେ ତୁମେ ସକ୍ରିୟ ନହୋଇ ରହିପାରିବ କିପରି ? କେବଳ ଅନୁରୂପ କ୍ରିୟାଶୀଳତା ଦ୍ୱାରା ହିଁ ପ୍ରତ୍ୟୟମାନେ ଜୀବନ୍ତ ରହିଥାନ୍ତି, ଅଧିକ ବଳଶାଳୀ ହୁଅନ୍ତି ଓ ବିକଶିତ ହେଉଥାଆନ୍ତି । ... ଆପଣାର କ୍ରିୟାଶୀଳତା ଓ ସମ୍ବନ୍ଧଗୁଡ଼ିକ ଦ୍ୱାରା ହିଁ ପ୍ରତ୍ୟେକ ତରୁଣ ବ୍ୟକ୍ତିକୁ ନିଜର ସମୂହଟି ମଧ୍ୟରେ କିଛି ପ୍ରମାଣ କରିବା ଏବଂ ସ୍ଥାୟୀ କରି ରଖିବାଲାଗି ଉଦ୍ୟମ କରିବାକୁ ହୋଇଥାଏ ଏବଂ ଏହିପରି ଭାବରେ ହିଁ ନିଜପ୍ରତି ସମ୍ମାନବୋଧ ବୋଲି ଆଦୌ କିଛି ପ୍ରତିଷ୍ଠା କରିବା ସମ୍ଭବ ହୁଏ । ଏହିପରି ଭାବରେ ବିଚାରଗୁଡ଼ିକର ଯଥାର୍ଥ ସଂଗ୍ରାମଟି ଲାଗି ରହିଥାଏ ... ଏହା ଏକାନ୍ତ ମହତ୍ତ୍ୱପୂର୍ଣ୍ଣ ଯେ, ପ୍ରତ୍ୟେକ ତରୁଣ ବ୍ୟକ୍ତିକୁ ତା' ନିଜର ବିଶ୍ୱାସ ବା ପ୍ରତ୍ୟୟଗୁଡ଼ିକୁ ପରୀକ୍ଷା କରି ଦେଖିବା ନିମିତ୍ତ ଏକ ପରିସର ପାଇବାରେ ସାହାଯ୍ୟ କରିବାକୁ ହୁଏ । ପ୍ରତ୍ୟେକ ଶିକ୍ଷକ କିପରି ଛାତ୍ରମାନଙ୍କୁ ଜଣେ ଜଣେ ବ୍ୟକ୍ତିରୂପେ ଗ୍ରହଣ କରି ନିଜର କାର୍ଯ୍ୟଟିକୁ କରୁଥାଏ, ମୁଁ ସେହି ମହତ୍ତ୍ୱପୂର୍ଣ୍ଣ ଦିଗଟିକୁ ଲକ୍ଷ୍ୟ କରି ଦେଖିଥିଲି ।

ଅଧିକାଂଶ ସମୟରେ କର୍ମଗୁଡ଼ିକ ହିଁ ସେହି ପରିସରକୁ ଯୋଗାଇ ଦେଉଥିଲେ । ଯେତେବେଳେ ଏକ କର୍ମକୁ ହିଁ ପୃଷ୍ଠଭୂମି ରୂପେ ବ୍ୟବହାର କରି ବିଚାରଗୁଡ଼ିକର ପରଖ ହୋଇଥାଏ, ସେତେବେଳେ ସେହି କର୍ମ ହିଁ ଜଣେ ମନୁଷ୍ୟର ଜୀବନରେ ଏକ ଅତ୍ୟନ୍ତ ମୌଳିକ ଅଂଶରେ ପରିଣତ ହୋଇଯାଏ । (୧୨,୨୦୬)

• ଯଥାର୍ଥ ଶିକ୍ଷା ନୈତିକ କ୍ଷେତ୍ରରେ ସ୍ୱତନ୍ତ୍ରତା ତଥା ଅଭିକ୍ରମଗୁଡ଼ିକୁ ଉତ୍ସାହିତ କରି ଆଣେ ଏବଂ ତଦ୍ୱାରା ଏପରି ଏକ ଆସ୍ପୃହା ମଧ୍ୟ ଜନ୍ମଲାଭ କରେ ଯାହାକି ଜଣେ ବ୍ୟକ୍ତିର ସ୍ୱଜୀବନରେ ମଧ୍ୟ ଉଚ୍ଚ ନୈତିକ ନାନା ମାନଦଣ୍ଡ ଆଡ଼କୁ ପରିଚାଳିତ କରି ନେଇଯାଏ । (୮,୧୦୫)

ଯଥାର୍ଥ ନୈତିକ ଜୀବନର ଗୋଟିଏ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଲକ୍ଷଣ ହିସାବରେ, ଛାତ୍ରଛାତ୍ରୀମାନଙ୍କର ଦୃଷ୍ଟିରୁ ଏକ ବିନୟଭାବକୁ ହିଁ ମନେ ରଖିବା । ସେମାନେ ସେହି ବ୍ୟକ୍ତିକୁ ହିଁ ଯଥାର୍ଥ ଭାବରେ ନୀତିଯୁକ୍ତ ବୋଲି ମନେ କରନ୍ତି, ଯିଏକି ଜଣେ ମନୁଷ୍ୟ ହିସାବରେ ନିଜର ସମ୍ମାନ ବିଷୟରେ ସଜ୍ଞାନ ଥାଏ ଓ ଯୁଗପତ୍ ଭାବରେ ଅନ୍ୟମାନଙ୍କର ସମ୍ମାନକୁ ମଧ୍ୟ ସ୍ୱୀକାର କରୁଥାଏ ଏବଂ, ଯାବତୀୟ ପରିସ୍ଥିତିରେ ଅନ୍ୟମାନଙ୍କ ସହିତ ଆପଣା ସମ୍ବନ୍ଧଗୁଡ଼ିକର କ୍ଷେତ୍ରରେ ଏକ ସ୍ୱଚ୍ଛତା ଏବଂ ସମତାଭାବର ରକ୍ଷା କରି ପାରୁଥାଏ । ଆମେ ପିଲାମାନଙ୍କ ଆଗରେ ଦୃଷ୍ଟାନ୍ତରୂପେ ପ୍ରସିଦ୍ଧ ବ୍ୟକ୍ତିମାନଙ୍କର କଥା କହିଥାଉ, - ସେମାନଙ୍କୁ ଆଦୌ କୌଣସି କପଟ ନଥିବା ଦରଦଯୁକ୍ତ ବ୍ୟକ୍ତିରୂପେ ଆଣି ଉପସ୍ଥାପିତ କରୁ, ଯେଉଁମାନଙ୍କ ଭିତରେ ଉଚ୍ଚ ମାନବୀୟ ସଂବେଦନାମାନ ପୂର୍ଣ୍ଣ ହୋଇ ରହିଥିଲା । (୮,୧୦୬)

ପ୍ରତ୍ୟେକ ସମାଜ ଯେଉଁ ସାମାଜିକ, ରାଜନୀତିକ ତଥା ନୈତିକ ଆଦର୍ଶଗୁଡ଼ିକ ଉପରେ ପ୍ରତିଷ୍ଠିତ ହୋଇ ରହିଛି, ସେଗୁଡ଼ିକୁ ସମାଜରେ ବାସ କରୁଥିବା ପ୍ରତ୍ୟେକ ବ୍ୟକ୍ତିର ସୁଖବିଧାନ ପାଇଁ ମଧ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଅବଶ୍ୟ, ଏକଥା ମଧ୍ୟ ସତ୍ୟ ଯେ, ଜଣେ ବ୍ୟକ୍ତିର ସୁଖ ନିମନ୍ତେ ଯେଉଁ ସଂପୂର୍ଣ୍ଣ ସାଂସ୍କୃତିକ, ବୌଦ୍ଧିକ ତଥା ନୈତିକ ଜୀବନ ବିଷୟରେ ସଜ୍ଞାନ ରହିବା ଅତ୍ୟନ୍ତ ଆବଶ୍ୟକ, ସେଥିପାଇଁ ଯେ ସମାଜ ନିମନ୍ତେ ଏକ ଭୌତିକ ସୁଖାବସ୍ଥାକୁ ସମ୍ଭବ କରିବାକୁ ପଡ଼େ, ତା' ନୁହେଁ, ସେଥିପାଇଁ ସେହି ସମାଜର ପ୍ରତ୍ୟେକ ବ୍ୟକ୍ତିର ଆଦର୍ଶ, ଆଗ୍ରହ, ଆବଶ୍ୟକତା, ପ୍ରବୃତ୍ତି, ସାମର୍ଥ୍ୟ ତଥା ବିଶେଷ ଉତ୍ସାହଗୁଡ଼ିକୁ ମଧ୍ୟ ସମୃଦ୍ଧ କରିବାର ପ୍ରୟୋଜନ

ରହିଥାଏ । (୯,୪)

ସତ୍ୟର ବୋଧକୁ ଶିକ୍ଷାର କେବଳ ଏକ ଆରମ୍ଭ ବୋଲି ହିଁ କୁହାଯାଇ ପାରିବ । କାରଣ, ଯାବତୀୟ ନୈତିକ ଶିକ୍ଷାର ସର୍ବମୂଳ କଥା ହେଉଛି ଯେ, ଛାତ୍ରଛାତ୍ରୀମାନେ ସେମାନଙ୍କୁ ପ୍ରଦତ୍ତ ହେଉଥିବା ନୈତିକ ଓ ରାଜନୀତିକ ଆଦର୍ଶଗୁଡ଼ିକୁ ନିଜସ୍ୱରେ ପରିଣତ କରି ପାରୁଥିବେ ଏବଂ ସେଗୁଡ଼ିକୁ ନିଜ ନିଜ ଆଚରଣର ମାନଦଣ୍ଡ ରୂପେ ଦେଖି ପାରୁଥିବେ । ଏବଂ, କେବଳ ଗୋଟିଏ ସମୁଚିତ ମୂଲ୍ୟ ବହନ କରୁଥିବା ବୁଦ୍ଧିଯୁକ୍ତ କର୍ମଦ୍ୱାରା ହିଁ ତାହା ସମ୍ଭବ ହୋଇ ପାରିବ । ତା' ନହେଲେ ଆଦର୍ଶ ଆଡ଼କୁ କୌଣସି ପ୍ରୟାସ ହିଁ ରହିବନାହିଁ ଏବଂ ତେଣୁ ସୃଜନଶୀଳ ବ୍ୟକ୍ତିମାନେ ମଧ୍ୟ ସମ୍ଭବ ହେବେନାହିଁ । (୧୨,୧୯୯)

ବୌଦ୍ଧିକ କ୍ରିୟାଶୀଳତା କହିଲେ ଆଦୌ କୌଣସି ଅନ୍ତର୍ମୁଖୀ ଆତ୍ମ-ବିଶ୍ଳେଷଣକୁ ବୁଝାଇବ ନାହିଁ ଯାହାର କି ଦୈନନ୍ଦିନ କାର୍ଯ୍ୟଟି ସହିତ କୌଣସି ସମ୍ପର୍କ ନଥିବ । ଏହା ହେଉଛି ଏକ ସୃଜନଶୀଳ କାର୍ଯ୍ୟ, ଏକ ଗତିଶୀଳ ସାମାଜିକ କ୍ରିୟାଶୀଳତା ଯାହାକୁ କି ଗୋଟିଏ ଉଚ୍ଚ ଲକ୍ଷ୍ୟସଚେତନତା ସମୃଦ୍ଧ କରି ରଖିଥାଏ । ... ସେହି ଦୃଷ୍ଟିରୁ କୌଣସି ମନୁଷ୍ୟକୁ ଶବ୍ଦଟିର ପରିପୂର୍ଣ୍ଣ ଅର୍ଥରେ ଜଣେ ପ୍ରକୃତ ବ୍ୟକ୍ତିକୁ କୁହାଯିବ, ଯାହାର ମନଭିତରେ ଯୋଗ୍ୟ ବାସନାଗୁଡ଼ିକର ଅଙ୍କୁରୋଦ୍‌ଗମ ହେବାରେ ଲାଗିଥାଏ; ସେହି ଅଭିଳାଷମାନେ ଆଚରଣକୁ ପ୍ରଭାବିତ କରନ୍ତି ଏବଂ ସେଥିରୁ ବଳବତୀ ଇଚ୍ଛାମାନେ ନିଷ୍ପନ୍ନ ହୋଇ ଆସନ୍ତି ଏବଂ ନାନାବିଧ କର୍ମରେ ବ୍ୟକ୍ତ ହୋଇ ପାରନ୍ତି । ଏବଂ, ସେହିସବୁ କର୍ମ ଆହୁରି ଅଧିକ ଅଭିଳାଷକୁ ଜନ୍ମ ଦିଏ । ଏବଂ, ଏହି ଜଟିଳ ସମୁଦାୟ ପ୍ରକ୍ରିୟାଟିକୁ ଆମେ ବାସ୍ତବ ଶିକ୍ଷାଦାନର କ୍ଷେତ୍ରରେ ଆମର ବୌଦ୍ଧିକ ଜୀବନବୋଲି ହିଁ କହିଥାଉ । ..... ଏହି କ୍ଷେତ୍ରରେ ତରୁଣ ଓ କିଶୋରମାନଙ୍କର ଶିକ୍ଷକମାନେ ଏହି ଆଦର୍ଶ ପ୍ରଣାଳୀଟିକୁ ଅବଶ୍ୟ ଗ୍ରହଣ କରିବେ ଯେ, ସେମାନେ ଉତ୍ତମ ନାନା ଅଭିଳାଷ ଦ୍ୱାରା ପ୍ରେରିତ ହୋଇ ଆସୁଥିବା କର୍ମଗୁଡ଼ିକୁ ଯଥାସମ୍ଭବ ଉତ୍ସାହିତ କରି ଆଣିବେ, - ନୈତିକ ଆଦର୍ଶ ଲାଗି ରହିଥିବା ଆସ୍ପୃହାଗୁଡ଼ିକୁ ମଧ୍ୟ ଉନ୍ମେଷିତ କରାଇ ଆଣିବେ । (୧୨,୨୦୦)

ନିଜର ଛାତ୍ରଛାତ୍ରୀମାନଙ୍କ ପାଖରେ ଆମେ ଉଚ୍ଚ ଓ ଭବ୍ୟ ଆଦର୍ଶଗୁଡ଼ିକୁ ଆଣି ପହଞ୍ଚାଇ ଦେଉଥିବୁ, ଏଇଟି ହେଉଛି ଆମ ଶିକ୍ଷକମାନଙ୍କର ସବୁଠାରୁ ଅଧିକ ସମ୍ମାନକର ବ୍ରତ । ଏହି କାର୍ଯ୍ୟଟିକୁ ଆମେ ଏପରି ଏକ ପ୍ରଣାଳୀଦ୍ୱାରା କରିବୁ

ଯେ, ତଦ୍ୱାରା ସେମାନଙ୍କର ମନ ତଥା ହୃଦୟ ଭିତରେ ସେମାନଙ୍କର ଜାତିର ଆତ୍ମାଟି ଏକ ଠୋସ ସାକାରତା ଲାଭ କରି ପ୍ରତିଫଳିତ ହୋଇଯାଇ ପାରୁଥିବ । ଯେଉଁମାନେ ଏତିକି କରିବାରେ ସଫଳତା ଲାଭ କରନ୍ତି, ସେମାନେ ଅବଶ୍ୟ ପୂର୍ଣ୍ଣ ନ୍ୟାୟର ସହିତ କହିପାରିବେ ଯେ ସେମାନେ ଜଣେ ଶିକ୍ଷାଦାତାର ଚରମ ଲକ୍ଷ୍ୟଟିକୁ ନିଶ୍ଚୟ ହାସଲ କରି ପାରିଛନ୍ତି । (୧୭)

ଶୈଶବ ଅବସ୍ଥାରୁ ହିଁ ଜଣେ ମନୁଷ୍ୟକୁ ଉତ୍ସାହ ପ୍ରଦାନ କରାଯିବ, ଯେପରିକି ସେ ଏହି ପୃଥିବୀକୁ କୌଣସି ଏକ ଆଦର୍ଶର ଆଲୋକପସ୍ଥ ଉପରେ ଅବଲୋକନ କରି ପାରିବ ଏବଂ ଏହିପରି ଭାବରେ ହିଁ ତା' ଜୀବନଟି ଉଚ୍ଚତମ ଶିଖରଦେଶଟି ଆଡ଼କୁ ଏକ କ୍ରମ-ଆରୋହରଣର ପ୍ରକ୍ରିୟାରେ ପରିଣତ ହୋଇ ପାରିବ । ଗୋଟିଏ ଆଦର୍ଶ ମୋଟେ ଏପରି ଗୋଟିଏ ଦ୍ରବ୍ୟ ନୁହେଁ ଯେ ଜଣେ ତାହାକୁ ମୁଖସ୍ଥ କରି ଆୟତ୍ତ କରିନେବ, ଯାହାକୁ କି ଆମେ ଚାହିଲା ମାତ୍ରକେ ଗଳ ଗଳ କରି କଥାଦ୍ୱାରା କହି ଦେଇହେବ । ଯଥାର୍ଥ ଆଦର୍ଶଟିଏ ତାକୁ ସତ୍ୟ, ନ୍ୟାୟ ଏବଂ ସୌନ୍ଦର୍ଯ୍ୟ ଆଡ଼କୁ ଏକ ପୂର୍ଣ୍ଣ ହୃଦୟରେ ଗତି କରିବାଲାଗି ପ୍ରେରଣା ହିଁ ଦେଉଥିବ । (୨୯)

ତରୁଣମାନଙ୍କୁ ଯେଉଁସବୁ କାର୍ଯ୍ୟ କରିବାକୁ ଦିଆଯାଏ ଅଥବା ସମ୍ପାଦିତ ହୁଏ, ସେମାନେ ସେଇଟି ବିଷୟରେ ବୁଦ୍ଧିମତ୍ତା ସହିତ ସଜ୍ଞାନ ହୋଇ ରହିଥାଆନ୍ତି । ଯଦି କୌଣସି କାଲୁଆ ଶରତ ଋତୁରେ ତୁମେ ପୁଅ ଓ ଝିଅମାନଙ୍କୁ କିଆରୀକୁ ଯାଇ ବିଟ୍‌ରୁଟ୍ ଖୋଳିବାକୁ କହିବ ଏବଂ ସେମାନେ କାହିଁକି ଏପରି ଗୋଟିଏ ଖରାପ ପାଗରେ ତାହା କରିବାକୁ ଯିବେ, ଯଦି ତୁମେ ସେବିଷୟରେ ସେମାନଙ୍କୁ କିଛି ବୁଝାଇ ଦେଇ ନଥିବ, ତେବେ ସେମାନେ ଭାରି ଅନିଚ୍ଛୁକ ହେବେ ଓ ଉଦାସୀନତା ଦେଖାଇବେ । ତେଣୁ, ଏହି କଅଁଳ ତରୁଣ ବୟସର ପିଲାଙ୍କର ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯେ, ସେମାନେ ଯେଉଁସବୁ କାମ କରିବାକୁ ଯାଉଛନ୍ତି, ତାହା ଫଳରେ ରହିଥିବା ଅଭିପ୍ରାୟ ଏବଂ ନୈତିକ ନିହିତାର୍ଥଗୁଡ଼ିକୁ ସେମାନେ ଅବଶ୍ୟ ଜାଣିବେ । ଯଦି ସେମାନେ ବୁଝୁଥିବେ ଯେ, ଆଉକିଏ ଅବହେଳା ଦେଖାଇଛି ଅଥବା ବ୍ୟବସ୍ଥାରେ କିଛି ଗଲତି ରହିଛି ବୋଲି ସେମାନଙ୍କୁ ଏକ କ୍ଷତିପୂରଣ ସମ୍ଭବ କରାଇବାର ମତଲବରେ କାମକୁ ପଠାଯାଉଛି, ତେବେ ସେହି କାର୍ଯ୍ୟଟିର ଆଉ ଶିକ୍ଷାଗତ କୌଣସି ତାତ୍ପର୍ଯ୍ୟ ରହିବନାହିଁ । (୧୧,୧୮୩)

କେତେ ଶିକ୍ଷକ ମତ ଦିଅନ୍ତି ଯେ, ନିକିମା ହୋଇ ବୁଲୁଥିବା, ନିତାନ୍ତ ଅପଦାର୍ଥଙ୍କ ପରି ଜନଗଣଙ୍କର ଧନକୁ ଠକି ନେଉଥିବା ବ୍ୟକ୍ତିମାନଙ୍କ ବିଷୟରେ ପିଲାମାନଙ୍କୁ କିଛି କହିବା ଆଦୌ ଉଚିତ ହେବନାହିଁ । କିନ୍ତୁ ମୁଁ ସେହି ମତଟିର ସମ୍ପୂର୍ଣ୍ଣ ବିରୋଧ କରିଥାଏ । ଆମେ ଗୋଟିଏ ପିଲାର ଚତୁର୍ଦ୍ଦିଗରେ ସତେଅବା ଯଦି ଏଭଳି ଗୋଟିଏ ଜୀବନହୀନ ମାଦଳା ପୃଥିବୀକୁ ତିଆରି କରି ରଖିବା, ଯେଉଁଠାରେ କି କୌଣସି ମନ୍ଦ ବିଷୟରେ କେହି କିଛି ଭାବୁନଥିବ ବା କୌଣସି ମନ୍ଦ କାର୍ଯ୍ୟ କରୁନଥିବ, ତେବେ ତଦ୍ୱାରା ତାହାର ମନଟାକୁ କେବଳ ବିକୃତ କରି ପକାଇବା ହିଁ ସାର ହେବ ।

ତେଣୁ, ଏହି ବାସ୍ତବ ପୃଥିବୀଟିକୁ ପିଲା ଆଗରେ କେବେହେଲେ ଗୋଲାପୀ-ରଙ୍ଗର କୌଣସି ଚଷମା ମଧ୍ୟଦେଇ ଦେଖାଇବାର ପ୍ରଚେଷ୍ଟା କରାଯିବା ଆଦୌ ଉଚିତ ନୁହେଁ । ଏହା ଅତ୍ୟନ୍ତ ଅନୁଚିତ ଯେ, ପିଲାମାନେ ସାଙ୍ଗମାନଙ୍କ ସହିତ ଖୋଲା ଏବଂ ସିଧା କଥା ହେଲାବେଳେ ଓ ଘରେ ଆତ୍ମୀୟସ୍ୱଜନଙ୍କ ପାଖରୁ ପୃଥିବୀ ବିଷୟରେ ଗୋଟିଏ ପ୍ରକାରର ଶୁଣୁଥିବେ ଏବଂ ସେମାନଙ୍କର ଔପଚାରିକ ପରିବେଶ ମାନଙ୍କରୁ ଆଉପ୍ରକାରେ ହିଁ ଶୁଣୁଥିବେ । ଏହିପରି ଭାବରେ କପଟୀ ହେବାକୁ ଓ ନିଜର ବିବେକ ବିରୋଧରେ କାର୍ଯ୍ୟ କରିବାକୁ ଗୋଟିଏ ଶିଶୁକୁ ଆଦୌ ଉତ୍ସାହିତ କରା ଯିବନାହିଁ । ... ( ୧୧,୨୦୮ )

କେତେ ପିଲାଙ୍କ ଭିତରେ ହୁଏତ ସେପରି କିଛି ବିଶେଷ ସମର୍ଥତା ନଥାଏ ଏବଂ, ବିଦ୍ୟାଳୟ ଛାଡ଼ିବାର ବହୁପୂର୍ବରୁ ସେମାନେ ବେଶ୍ ବୁଝିଯାଇ ଥାଆନ୍ତି ଯେ, ସେମାନେ ବଡ଼ ହୋଇ ବୈଜ୍ଞାନିକ ଓ ଇଞ୍ଜିନିଅର୍ ପ୍ରଭୃତି ମୋଟେ କିଛି ହେବେନାହିଁ; ତଥାପି ସେମାନେ ସେହି କାରଣରୁ ଆପଣାକୁ ମାମୁଲି ଅଥବା ସେପରି କିଛି ନୁହନ୍ତି ବୋଲି ଅନୁଭବ କରିବାକୁ ଛାଡ଼ିଦେବା ଆଦୌ ଉଚିତ ହେବନାହିଁ । ଜଣେ ବ୍ୟକ୍ତିର ପ୍ରତିଭା ଓ ସାମର୍ଥ୍ୟଗୁଡ଼ିକ ଯେତେ ସାଧାରଣ ସ୍ତରର ହୋଇଯାଉ ପଛକେ, ସିଏ ମଧ୍ୟ ଆମ ସମାଜରେ ଜଣେ ସୃଜନଶୀଳ ବ୍ୟକ୍ତିରୂପେ ନିଜର ପରିଚୟ ଦେଇପାରିବ । (୯,୧୦୭)

ଗୋଟିଏ ପିଲା ଶିକ୍ଷା କରୁଥିବା ସମୟରେ ନିଜ ଯୋଗ୍ୟତାର ପ୍ରମାଣ ଦେଉଥିବ ଏବଂ ନିଜ ଯୋଗ୍ୟତାର ପ୍ରମାଣ ଦେଉଥିବା ସମୟରେ ଶିକ୍ଷା ମଧ୍ୟ କରୁଥିବ, - ତା'ର ଜୀବନରେ ଏହିପରି ଭାବରେ ହିଁ ଭାବନା ଏବଂ କର୍ମର

ସମନ୍ୱୟନ ଘଟିବ ଏବଂ ସେହି ଆୟତନଟି ଉପରେ ସିଏ ଆପଣାର ବୌଦ୍ଧିକ ପ୍ରଶିକ୍ଷଣ ଓ ନିଜର ପୃଥିବୀଦୃଷ୍ଟିକୁ ପରସ୍ପର ସହିତ ଏକତ୍ର ସମ୍ମିଳିତ କରି ରଖିଥିବ । ନିଜେ କରୁଥିବା କାର୍ଯ୍ୟଟିର ଫଳଗୁଡ଼ିକରୁ ଜଣେ ଶିଶୁ କେବଳ ସେଥିରୁ ପ୍ରାପ୍ତ ଭୌତିକ ମୂଲ୍ୟଗୁଡ଼ିକୁ ନୁହେଁ, ନିଜକୁ ମଧ୍ୟ ଅବଶ୍ୟ ଦେଖି ପାରୁଥିବ । ନିଜ ଅଧ୍ୟବସାୟ ତଥା ଇଚ୍ଛାଶକ୍ତିର ପରିଚୟ ମଧ୍ୟ ପାଉଥିବ । ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯେ, ଖୁବ୍ ଅଳ୍ପ ବୟସରେ ହିଁ ସିଏ ପୃଥିବୀ ସମ୍ବନ୍ଧରେ ଏହି କ୍ରିୟାସଚଳ ଦୃଷ୍ଟିଟିକୁ ଲାଭ କରିବ, ଯେପରିକି ଆପଣାର କିଶୋର ବୟସରେ ପ୍ରବେଶ କଲା ବେଳକୁ ତା' ବିଶ୍ୱାସଗୁଡ଼ିକ ମଧ୍ୟ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇ ସାରିଥିବ । (୧୧,୨୨୫)

କର୍ମରେ ବ୍ୟକ୍ତ ହୋଇ ନଥିବା ପ୍ରତ୍ୟୟଗୁଡ଼ିକର ପ୍ରକୃତରେ କୌଣସି ସତ୍ତା ହିଁ ସମ୍ଭବ ହୁଏନାହିଁ । ( ୭,୧୬୬)

## କିଶୋରାବସ୍ଥାରେ ପ୍ରବେଶ ପରେ ହିଁ ପିଲାମାନଙ୍କ ଆଗରେ ବିଚାରର ପୃଥିବୀଟି ଉନ୍ମୋଚିତ ହୋଇଯାଏ ।

କାମ କରିବାର ସମୟଟି ପରେ ମୁଁ ଯେତେବେଳେ ମୋ'ର ଛାତ୍ରଛାତ୍ରୀମାନଙ୍କ ବିଷୟରେ ଚିନ୍ତା କରୁଥିଲି, ସେତେବେଳେ ଅଧିକାଂଶ ସମୟରେ ଭାବୁଥିଲି ଯେ ମନୁଷ୍ୟର ଏହି କିଶୋରବୟସଟିକୁ ପ୍ରକୃତରେ ଗୋଟିଏ ଦ୍ୱିତୀୟ ଜନ୍ମ ବୋଲି କୁହାଯାଇ ପାରିବ । ପ୍ରଥମ ଜନ୍ମବେଳେ ତ ମନୁଷ୍ୟପ୍ରାଣୀଟିଏ ହିଁ ପୃଥିବୀକୁ ଆନୀତ ହୋଇଥାଏ; କିନ୍ତୁ ଦ୍ୱିତୀୟ ଜନ୍ମଟି ଦ୍ୱାରା ହିଁ ସିଏ ଏକ ନାଗରିକ ରୂପେ ତିଆରି ହୋଇଯାଏ; ଜଣେ କର୍ମରତ ଓ ଭାବନାସମର୍ଥ ବ୍ୟକ୍ତିରେ ପରିଣତ ହୁଏ, ଯିଏକି କେବଳ ତା'ର ଚତୁର୍ଦ୍ଦିଗରେ ରହିଥିବା ପୃଥିବୀ ବିଷୟରେ ନୁହେଁ, ନିଜ ବିଷୟରେ ମଧ୍ୟ ସଜ୍ଞାନ ହୋଇ ଯାଇଥାଏ । ପ୍ରଥମେ ଏହି ପୃଥିବୀରେ ପ୍ରବିଷ୍ଟ ହେଉଥିବା ସମୟରେ ଏକ କ୍ରନ୍ଦନଦ୍ୱାରା ସେ ନିଜ ଆଗମନର ଘୋଷଣା କରେ । କହୁଥାଏ : ହେଇ, ମୁଁ ଆସିଲି, ମୋ'ର ଯତ୍ନ ନିଅ, ହେପାଜତ କର, ମୋ' ପାଖରେ ନିଜର କୌଣସି ସହାୟ ନାହିଁ । ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ମୋ' କଥା ଭୁଲିଯିବ ନାହିଁ ଟି ! ମୋତେ ସୁରକ୍ଷା ଦେବ, ମୋ' ଶଯ୍ୟା ପାଖରେ ଗୋଟିଏ ଲୟରେ ବସି ରହିଥିବ । ମାତ୍ର, ଦ୍ୱିତୀୟ ଜନ୍ମଟି ସମୟରେ ସିଏ ଅନ୍ୟପ୍ରକାରେ ପୃଥିବୀ ଆଗରେ ଯାହାକିଛି କହିଥାଏ : ମୋତେ ଆଦୌ ଅଲଗା କରି ଘୋଡ଼ାଇ ରଖନାହିଁ, ମୋ' ପଛରେ ଆସନାହିଁ ବା ମୋ' ପଦକ୍ଷେପଗୁଡ଼ିକ

କେଉଁଠାରେ ପଡୁଛନ୍ତି, ତାହା ଜାଣିବାକୁ ଇଚ୍ଛା କରନାହିଁ । ମୋ' ଉପରେ ପହରା ଦିଅନାହିଁ ଅଥବା ମୋତେ ଅବିଶ୍ୱାସ କରନାହିଁ । ମୁଁ କେବେ ଖାଲି ବିଛଣାଟି ଉପରେ ପଡ଼ି ରହିଥିଲି ବୋଲି ମୋ'ର ମନେ ପକାଇ ଦିଅନାହିଁ । ବର୍ତ୍ତମାନ ମୁଁ ହେଉଛି ଜଣେ ସ୍ୱାଧୀନ ବ୍ୟକ୍ତି । ମୋ' ହାତ ଧରି ବାଟ ଦେଖାଇ ଦେବାର କୌଣସି ପ୍ରୟୋଜନ ନାହିଁ । ମୋ' ଆଗରେ ତ ଉଚ୍ଚ ପର୍ବତଟିଏ ଛିଡ଼ା ହୋଇ ରହିଛି । ସେଇଟା ହେଉଛି ମୋ' ଜୀବନର ଲକ୍ଷ୍ୟ; ମୁଁ ସେଇଟି ଉପରେ ଦୃଷ୍ଟି ରଖିଥିବି, ତା' ବିଷୟରେ ଚିନ୍ତା କରିବି । ମୁଁ ସେଠାରେ ଯାଇ ପହଞ୍ଚିବାକୁ ଇଚ୍ଛା କରୁଛି; ଏବଂ ଆପଣା ଚେଷ୍ଟାରେ ହିଁ ମୁଁ ତାହାକୁ ଆରୋହଣ କରିବି... ହଁ, ଜଣେ ଅଧିକ ବୟସ୍କ ବନ୍ଧୁର ସାହାଯ୍ୟ ଅବଶ୍ୟ ଦରକାର ହେବ । ଜଣେ ବଳବାନ୍ ଏବଂ ପ୍ରଜ୍ଞାସମ୍ପନ୍ନ ବ୍ୟକ୍ତିର କାନ୍ଧରେ ଭରା ଦେଇ ପାରିଲେ ମୁଁ ନିଶ୍ଚୟ ଶିଖରରେ ଯାଇ ପହଞ୍ଚି ପାରିବି । ମାତ୍ର, ଏଭଳି କହିବାକୁ ମୋତେ ଭୟ ଲାଗୁଛି, ଲଜ୍ଜା ମଧ୍ୟ ଲାଗୁଛି । ଆପଣମାନେ ସମସ୍ତେ ଭାବନ୍ତୁ ବୋଲି ମୋ'ର ଇଚ୍ଛା ଯେ, ମୁଁ ଆପେ ଆପେ, ନିଜର ବଳ ଉପରେ ନିର୍ଭର କରି ଶିଖରଟିରେ ଯାଇ ପହଞ୍ଚି ପାରିବି । ତା'ର ନିଜର ଦୁରନ୍ତ ଅଭିଳାଷଗୁଡ଼ିକ ବିଷୟରେ ଶବ୍ଦର ସାହାଯ୍ୟ ନେଇ କିଛି କହିପାରିଲେ ଜଣେ ବାଳୁତ କିଶୋର ଏହି କଥାଗୁଡ଼ିକ ହିଁ କହନ୍ତା । ଏବଂ, ଆହୁରି ଏକ ଅଧିକ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି, ଯଦି ସିଏ ନିଜର ମନ ଖୋଲିଦେଇ ସେଗୁଡ଼ିକୁ କହିବାଲାଗି ଇଚ୍ଛା କରନ୍ତା । (୧୨,୬୫)

ଗୋଟିଏ ପିଲା ଅତି ସାନ ହୋଇଥିବା ସମୟରେ ବସ୍ତୁ ବା ଦ୍ରବ୍ୟମାନଙ୍କର ପୃଥିବୀଟି ଜଣେ ପିଲାର ବୌଦ୍ଧିକ ତଥା ଭାବଗତ ଅନୁଭବଟିକୁ ପ୍ରମୁଖ ଉପାଦାନ ଆଣି ଜୁଟାଇ ଦିଅନ୍ତି, ତେବେ କିଶୋର ବୟସରେ ବିଚାରର ଓ ଭାବନାର ପୃଥିବୀଟି ହିଁ ତା' ଆଗରେ ଆସି ଉଦ୍‌ଘାଟିତ ହୋଇ ଯାଇଥାଏ । ବାପା ଓ ମାଆମାନଙ୍କୁ ସେତେବେଳେ ଏକଥା ଅତ୍ୟନ୍ତ ବିଚିତ୍ର ଲାଗୁଥାଏ, - ଅବୋଧ ମନେହୁଏ । ସେମାନେ ଏପରିକି ଏପରି ଅନୁମାନ କରି କିଛି ଆଘାତ ମଧ୍ୟ ପାଆନ୍ତି ଯେ, ପିଲାଟି ଆଉ ତା ଦୋଳିରେ ଝୁଲୁଥିବା ବେଳର କଥା ପୁରା ଭୁଲିଯାଉଛି । ସେହି ଦୋଳିରୁ ହିଁ ତ ତା'ର ସୂର୍ଯ୍ୟ ତଥା ଆକାଶ ସହିତ ପ୍ରଥମ ଦର୍ଶନ ଘଟିଥିଲା । ପିଲାଟା ମାଆର ସ୍ତନକୁ ହିଁ ଭୁଲିଗଲା, ଯେଉଁଠୁ ସିଏ ସେତେବେଳେ ସ୍ତନ୍ୟପାନ କରିଥିଲା । କିଶୋର ସମୟର ମନଟି ଯେ ପ୍ରକୃତରେ ଏକ ଜଟିଳ ପ୍ରକ୍ରିୟାର ଚିତ୍ରକୁ ପ୍ରକଟ କରିଥାଏ, ଏଥିରୁ ତାହାହିଁ ସ୍ପଷ୍ଟ ହୋଇ ଯାଉଛି । ସେତେବେଳେ ପୃଷ୍ଠଭୂମିଟି

ପ୍ରଶସ୍ତ ହୋଇ ଯାଇଥାଏ ଓ ସମାଜ-ଜୀବନ, ପରିବାର, ଘର, ସ୍କୁଲିବାର ସେହି ଦୋଳି ଓ ମାଆର ଭଲ ପାଇବା, - କିଶୋରଟି ନିମନ୍ତେ ଏହି ସବୁକିଛି ହଠାତ୍ ନିତାନ୍ତ କ୍ଷୁଦ୍ର ତଥା ତାତ୍ପର୍ଯ୍ୟଶୂନ୍ୟ ବୋଲି ମନେହୁଏ । ଏପରିକି ତା' ନିଜର "ଅପରାଧଗୁଡ଼ିକ' - ସ୍ୱୀକୃତ ଆଚରଣଗୁଡ଼ିକୁ ଅମାନ୍ୟ କରିବା - ସେଗୁଡ଼ିକର ଆଉ ସେତେ ମହତ୍ତ୍ୱ ରହିଥିବା ପରି ଆଦୌ ମନେ ହୁଏନାହିଁ । ନୂଆ ପୃଥିବୀଟାର ସମସ୍ୟାଗୁଡ଼ିକ ତୁଳନାରେ ସେସବୁର କୌଣସି ମହତ୍ତ୍ୱ ନଥାଏ ।

କିଶୋର ବୟସର ପିଲାମାନେ କିଛି ଦାର୍ଶନିକତା ମଧ୍ୟ ଆରମ୍ଭ କରିଦିଅନ୍ତି - ଅଧିକ ପ୍ରଶସ୍ତ ସାମାଜିକ-ରାଜନୈତିକ ତଥା ନୈତିକ ମୂଲ୍ୟାଦର୍ଶର ଭୂମି ଉପରେ ଭାବିବାକୁ ମନ କରନ୍ତି । ପୃଥିବୀରେ ଘଟୁଥିବା ସବୁକିଛିର ଜଣେ ଜଣେ ବ୍ୟକ୍ତି ହିସାବରେ ସେମାନଙ୍କ ନିମନ୍ତେ ଏକ ମହତ୍ତ୍ୱ ରହେ । ଏଥିରେ ଆପଣମାନେ ଆଦୌ ବିସ୍ମିତ ହୋଇ ପଡ଼ିବେ ନାହିଁ । ଏହି ବୟସର ପିଲାମାନଙ୍କ ସହିତ ରହିଥିବା ଶିକ୍ଷକମାନେ ଅବଶ୍ୟ ଜାଣି ରଖିବେ ଯେ, ଅନ୍ୟ ମନୁଷ୍ୟମାନଙ୍କ ବିଷୟରେ ଗଭୀର ଆଗ୍ରହ ପ୍ରକାଶ କରିବା ହେଉଛି ଏହି ବୟସର ପିଲାମାନଙ୍କର ହିଁ ଏକ ସ୍ୱତନ୍ତ୍ର ଲକ୍ଷଣ । (୧୨,୧୭୨)

କିଶୋର ବୟସର ଗୋଟିଏ ପିଲା ପାଇଁ ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯେ, ନିଜର ମନ ଭିତରେ ସିଏ ପୃଥିବୀ ସମ୍ବନ୍ଧରେ ଯେଉଁଭଳି ଏକ ଚିତ୍ରକୁ ପ୍ରକୃତ ବୋଲି ଗ୍ରହଣ କରି ନେଇଥିବ, ତାହା ଯେପରି କଦାପି ଏକ ଅଳ୍ପ ପରିସର ଆଶ୍ରୟସ୍ଥଳ ସଦୃଶ ହୋଇ ନଥିବ ବା କେବଳ ତା' ନିଜ ଘରଟି ମଧ୍ୟରେ ହିଁ ସୀମାବଦ୍ଧ ହୋଇ ରହିନଥିବ । ସେହି ପୃଥିବୀର ଗାରଗୁଡ଼ିକ ଯେତିକି ଅଧିକ ଦୂରଯାଏ ସଂପ୍ରସାରିତ ହୋଇ ରହିଥିବେ, ଶିଶୁଟି ମଧ୍ୟରେ ସେତିକି ଅଧିକ ସଂଖ୍ୟାର ଭାବନା ଓ ଭାବାବେଗ ମଧ୍ୟ ଉନ୍ମେଷ ଲାଭ କରି ପାରୁଥିବେ; ନିଜ ଦୈନନ୍ଦିନ ଜୀବନରେ ସେ ଆଦୌ କୌଣସି ସଂସ୍ପର୍ଶରେ ଆସୁନଥିବା ଦୂରସ୍ଥ କେତେ କେତେ ବସ୍ତୁ ମଧ୍ୟ ତାକୁ ଆନ୍ଦୋଳିତ କରି ପାରୁଥିବେ । ତା' ନିଜ ଗାଆଁଟି ପ୍ରତି ତା' ଅଙ୍ଗୀକାରବଦ୍ଧତାର ଦୃଷ୍ଟିପରିସରଟି ମଧ୍ୟ ସେତିକି ସୂକ୍ଷ୍ମ, ବିସ୍ତାରଯୁକ୍ତ ଓ ସଂବେଦନଶୀଳ ବି ହୋଇଥିବେ । ତା'ର ଯାବତୀୟ କାର୍ଯ୍ୟ, ବନ୍ଧୁ ପରିଧି, ଆତ୍ମୀୟ ସ୍ୱଜନ ତଥା ପ୍ରିୟଜନଙ୍କର ବୃତ୍ତଟି ମଧ୍ୟ ଅନୁରୂପ ଭାବରେ ପ୍ରଭାବିତ ଅବଶ୍ୟ ହେବ । ସୁଦୂର ପାମୀର୍ ପର୍ବତଭୂମିର ପାଦଦେଶରେ ଘଟୁଥିବା କୌଣସି ଘଟଣା ତା' ଭିତରେ ଉଦ୍‌ବେଳନ ସୃଷ୍ଟି କରୁଥିବା

ସଙ୍ଗେ ସଙ୍ଗେ ତା' ନିଜ ଗାଆଁଟିରେ କୌଣସି ଘଟଣା ତା' ଭିତରେ ଉଦ୍‌ବେଳନ ସୃଷ୍ଟି କରୁଥିବା ସଙ୍ଗେ ସଙ୍ଗେ ତା' ନିଜ ଗାଆଁଟିରେ ଘଟୁଥିବା ଘଟଣାଗୁଡ଼ିକ ବିଷୟରେ ମଧ୍ୟ ସିଏ ପ୍ରଗାଢ଼ ଭାବରେ ପ୍ରଭାବିତ ହୋଇ ପାରୁଥିବ । (୧୨,୨୧୧)

କିଶୋର ବୟସଟି ପ୍ରକୃତରେ ଏହି କାରଣରୁ ସ୍ୱତନ୍ତ୍ର ଭାବରେ ଉଲ୍ଲେଖଯୋଗ୍ୟ ଯେ, ଏହି ଅବସ୍ଥାଟିରେ ଜଣେ ବ୍ୟକ୍ତି କେବଳ ନିଜର ସହମନୁଷ୍ୟମାନଙ୍କୁ ଆବିଷ୍କାର କରିଥାଏ ତା' ନୁହେଁ (ଏପରି ତ ସାନ ପିଲାମାନେ ମଧ୍ୟ କରିଥାନ୍ତି ), ମାତ୍ର ସେମାନଙ୍କୁ ଆବିଷ୍କାର କରିବା ନିମନ୍ତେ ସିଏ ନିଜେ ମଧ୍ୟ ସର୍ବଦା ଏକ ତଲାଶରେ ରହିଥାଏ । (୧୨, ୨୧୫)

ଦେଖୁଥିବା କଥାଗୁଡ଼ିକ ସେମାନଙ୍କ ମନଉପରେ କ'ଣ ସବୁ ପ୍ରଭାବ ପକାଇଲେ, କିଶୋର ବୟସର ପିଲାମାନେ ନିଜର ସାଙ୍ଗମାନଙ୍କୁ ମଧ୍ୟ ଯେ ସେକଥା କହିବାକୁ ଇଚ୍ଛା କରନ୍ତି, କେବଳ ସେତିକି ନୁହେଁ (ଏକଥା ତ ନିତାନ୍ତ ସାନ ପିଲାମାନେ ମଧ୍ୟ କରନ୍ତି), ଦେଖୁଥିବା କଥାଗୁଡ଼ିକର ଅନୁଭବରୁ ସେମାନେ ଯେଉଁସବୁ ସିଦ୍ଧାନ୍ତ ଓ ଉପସଂହାରରେ ଆସି ପହଞ୍ଚି ଥାଆନ୍ତି, ଏଗୁଡ଼ିକ ବିଷୟରେ ମଧ୍ୟ ସେସବୁ ଚର୍ଚ୍ଚା କରି ଥାଆନ୍ତି, ନିତାନ୍ତ ସାନ ପିଲାମାନେ ମୁଖ୍ୟତଃ ଖେଳ ଓ କାମ ସମୟରେ ସେସବୁ କଥା ପକାନ୍ତି, ପରସ୍ପରକୁ ପରୀଗଳ୍ପ ଓ ବହିମାନଙ୍କର ପଢ଼ିଥିବା ବହୁ ଦୁଃସାହସର କାହାଣୀମାନ ମଧ୍ୟ କୁହାକୁହି ହୁଅନ୍ତି; କିଶୋର ବୟସର ପିଲାମାନଙ୍କର କଥାବାର୍ତ୍ତା ମଧ୍ୟରେ ଭାବନା ତଥା ବିଚାରର ଆଦାନପ୍ରଦାନକୁ ହିଁ ଅଧିକ ମହତ୍ତ୍ୱ ଦିଆ ଯାଇଥାଏ । (୬,୧୩୦)

ସୁଯୋଗ ପାଇବା ମାତ୍ରକେ ବିତର୍କଟିଏ ଆରମ୍ଭ କରିଦେବା, - କିଶୋର ବୟସର ବହୁ ଛାତ୍ରଛାତ୍ରୀଙ୍କ ଭିତରେ ସେହିଭଳି ଅଭ୍ୟାସଟିଏ ବିକାଶଲାଭ କରିଥାଏ । ମଉକାଟିଏ ଦେଖିଲେ ହିଁ ସେମାନେ ଯୁକ୍ତି କରିବା ଆରମ୍ଭ କରି ଦିଅନ୍ତି । ଏଥିରେ ଶୋଚନା କରିବାର କୌଣସି କାରଣ ହିଁ ନାହିଁ । ସେମାନଙ୍କର କହିବାର ଅଭ୍ୟାସଟିକୁ ସେମାନଙ୍କର ଚିନ୍ତନ-ପ୍ରକ୍ରିୟାଗୁଡ଼ିକୁ ସମୁଚିତ ମାର୍ଗଗୁଡ଼ିକରେ ସଚଳ ହେବକୁ ଦେବାଦ୍ୱାରା ହିଁ ସମୃଦ୍ଧ କରିନେବାକୁ ହୋଇଥାଏ । ପ୍ରଥମ କାଳର ଅପରିପକ୍ୱ ତଥା ଅପୂର୍ଣ୍ଣ ଭାବପ୍ରକାଶର ରୀତିକୁ ଏକ ସମୁନ୍ନତ ଅଭିବ୍ୟକ୍ତିସ୍ତରକୁ ଏହିପରି ଭାବରେ ହିଁ ପରିଚାଳିତ କରିନେବାକୁ ହୋଇଥାଏ । (୬,୧୩୧)

ପୂର୍ବର ରୀତିଗୁଡ଼ିକୁ ଲଂଘନ କରି ମୁଁ ଅନେକ ସମୟରେ ମୋ ଶ୍ରେଣୀରେ ବିତର୍କର ପରିବେଶଟିଏ ସ୍ଥାୟୀ କରି ରଖିବାକୁ ଚେଷ୍ଟା କଲି । ..... ପିଲାମାନେ ତଥ୍ୟଗୁଡ଼ିକ ବିଷୟରେ ଚିନ୍ତା କରି ଏକ ବିଶ୍ଳେଷଣ କରୁଥିବା ସମୟରେ ସତେଅବା ବିଶ୍ଳେଷଣରୁ ଓହରି ଆସି ଅସଲ ସମସ୍ୟାଟିକୁ ଦେଖିବାରେ ସମର୍ଥ ହୋଇ ଯାଆନ୍ତି । .... ଏହି କିଶୋର ବୟସରେ ସେମାନେ ବିରୋଧଗୁଡ଼ିକୁ ମଧ୍ୟ ପରୀକ୍ଷା କରି ଦେଖନ୍ତି ଏବଂ ଅତୀବ ଆଗ୍ରହ ସହିତ ନିଜସ୍ୱ ଦୃଷ୍ଟିକୋଣ ନାମକ ଏକ ବିନ୍ଦୁରେ ଆସି ଉପନୀତ ହୋଇଥାନ୍ତି । ଜ୍ଞାନ କହିଲେ ସେମାନେ ନିରାସକ୍ତ ଭାବରେ ସଂଗ୍ରହ କରା ଯାଉଥିବା ଆଦୌ କୌଣସି ସାମଗ୍ରୀକୁ ବୁଝନ୍ତି ନାହିଁ । ସେମାନଙ୍କ ସମ୍ମୁଖରେ ସ୍ପଷ୍ଟ ହୋଇ ଏକ ଲକ୍ଷ୍ୟ ରହିଥାଏ ଓ ସେମାନେ ତାହାକୁ ହାସଲ କରିବା ନିମନ୍ତେ ସଂଗ୍ରାମ କରୁଥାନ୍ତି । ସେମାନଙ୍କର ଶିକ୍ଷକ ହିସାବରେ ମୁଁ ଯାବତୀୟ ବିରୋଧ ସମେତ ତଥ୍ୟଗୁଡ଼ିକୁ ନେଇ ଉପସ୍ଥାପିତ କରିଦେବାକୁ ହିଁ ମୋ'ର ପ୍ରକୃତ ଭୂମିକା ବୋଲି ଉପଲବ୍ଧି କରିଥିଲି । ଅର୍ଥାତ୍, ଏକ ବିତର୍କକୁ ହିଁ ଉତ୍ସାହିତ କରୁଥିଲି । ଭିନ୍ନ ଭିନ୍ନ ମତଦ୍ୱାରା ସମ୍ବଳିତ ଆଲୋଚନା ପିଲାମାନଙ୍କର ଚିନ୍ତା ପ୍ରକ୍ରିୟାରେ ଭାବଗତ ବହୁ ସମୃଦ୍ଧି ଆଣି ଦେଇଥାଏ । (୧୨, ୨୦୪)

ଦେଖୁଥିବା ପୃଥିବୀଟିର ପ୍ରତ୍ୟେକ ବିଷୟରେ ପିଲାଟିଏ ଆପଣାର ଗୋଟିଏ ମତ ନିର୍ମାଣ କରି ଆଣିବାର ସାମର୍ଥ୍ୟ ହାସଲ କରିବ, - ବିଶେଷତଃ ଅନ୍ୟ ମନୁଷ୍ୟମାନଙ୍କ ବିଷୟରେ, - ଆମେ ତାହାକୁ ଜଣେ କିଶୋରର ମାନସିକ ବିକାଶରେ ଏପରି ଏକ ପର୍ଯ୍ୟାୟ ବୋଲି କହିବା, ଯାହାକି ତା' ମଧ୍ୟରେ ବହୁ ନୂତନ ବିଚାର, ଅନୁଭୂତି, ଆବେଗ ଆଦିର ଉଦ୍ରେକ କରି ଆଣିଥାଏ । ଏହି ଘଟଣା ବସ୍ତୁତଃ ପିତାମାତା ଏବଂ ଶିକ୍ଷକମାନଙ୍କ ଲାଗି ନିତାନ୍ତ ଅପ୍ରତ୍ୟାଶିତ ବୋଲି ମନେ ହୋଇପାରେ । ଗୋଟିଏ ଉପନ୍ୟାସ ପଢୁଥିବା ସମୟରେ କିଶୋରଟି ହୁଏତ ଜୀବନ ତଥା ମୃତ୍ୟୁ ବିଷୟରେ ମଧ୍ୟ କେତେ ନା କେତେ କ'ଣସବୁ ଚିନ୍ତା କରି ପକାଉଥାଏ । ସିଏ ମଧ୍ୟ ଦିନେ ମରିବ ବୋଲି ଏକ ଧାରଣା ହୁଏତ ସେଇଥିରୁ ଆସି ତା' ଭିତରେ ପ୍ରବେଶ କରିଥାଏ । ଫଳରେ ବହୁତ କିଛି ଗଣ୍ଡଗୋଳ ହୋଇଯାଏ, ମନ ଭିତରେ ବହୁ ସନ୍ତାପ ଜାତ କରେ । ଗୋଟିଏ ପୁଅପିଲାକୁ ମୁଁ ଜାଣିଥିଲି, ଯିଏକି ସେହି ଜ୍ଞାନଟି ଅର୍ଜନ କରିବାଦ୍ୱାରା ସାଂଘାତିକ ଭାବରେ ବିବଶ ହୋଇ ପଡ଼ିଥିଲା । ବଡ଼ ଉଦାସୀନ ହୋଇ ସିଏ ଶ୍ରେଣୀଗୃହରେ ବସି

ରହୁଥିଲା । ତା'ର ପରିଚିତ ଏହି ଚତୁର୍ଦ୍ଦିଗର ଲୋକମାନେ ସେମାନେ ବି ଦିନେ ମରିବେ ବୋଲି ସୁନିଶ୍ଚିତ ସତ୍ୟଟିକୁ କିପରି ଯେ ପାଶୋରି ଦେଲେ, ସେ କଥା ତାକୁ ବଡ଼ ବିଚିତ୍ର ହିଁ ମନେ ହେଉଥିଲା । ସେମାନେ କେଡ଼େ ନିଶ୍ଚିନ୍ତ ହୋଇ ନିଜର କାମଗୁଡ଼ିକ ମଧ୍ୟରେ ଧାବମାନ ହୋଇ ରହିଥିଲେ, କେତେ କ'ଣ ଉପଭୋଗ କରୁଥିଲେ ଏବଂ ପ୍ରତି ଦିନର ନିତାନ୍ତ ମାମୁଲି ବ୍ୟାପାରଗୁଡ଼ିକରେ ନିମଗ୍ନ ହୋଇ ରହିଥିଲେ । (୧୨,୬୯)

ଏହି କିଶୋର ବୟସରେ ସେମାନଙ୍କୁ ନିତାନ୍ତ ସାନ ପିଲାମାନଙ୍କ ଭଳି ଆକଟ କରିବା, - ଡେ଼ରିରେ କାହିଁକି ଆସିଲେ ବୋଲି ଗାଳି ଦେବା, ଯନ୍ତ୍ର ସହକାରେ ଘରକୁ ଦିଆ ଯାଉଥିବା ପାଠଗୁଡ଼ିକୁ ପ୍ରସ୍ତୁତ କରି ରଖିବା ପ୍ରଭୃତି, - ନିତାନ୍ତ ଅନୁଚିତ । ବିଦ୍ୟାଳୟର ଗୋଟିଏ ପିଲା ନିମନ୍ତେ କେତେ କେତେ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟମାନ ଧାର୍ଯ୍ୟ ହୋଇ ରହିଥାଏ ସତ, ମାତ୍ର ବିଚାରରୂପୀ ସମ୍ପଦଗୁଡ଼ିକ ଲାଗି କୌଣସି ମୂଳଦୁଆ ପଡ଼ିନଥାଏ ଏବଂ ପ୍ରେରଣା ପାଇବାଲାଗି କୌଣସି ଉତ୍ସଟିଏ ନଥାଏ । ଏହିସବୁ କର୍ତ୍ତବ୍ୟ କିଶୋରମାନଙ୍କୁ ନିଜର ନୂତନଭାବେ ଆବିଷ୍କୃତ ବଳକୁ ପରୀକ୍ଷା କରି ଦେଖିବାକୁ ଆଦୌ ଯଥେଷ୍ଟ ହେବାଭଳି ପରିସରଟିଏ ଯୋଗାଇଦେଇ ପାରିନଥାନ୍ତି, - ନିଜ ବାଧାଗୁଡ଼ିକୁ ଅତିକ୍ରମ କରିବାଲାଗି ଓ ଆଖର ନିଜର ବିଶ୍ୱାସଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବା ଲାଗି ଯଥେଷ୍ଟ ଅବସର ମଧ୍ୟ ଦିଅନ୍ତିନାହିଁ । ସେହି ବିଶ୍ୱାସମାନେ ଯେପରି ସାକାର ହେବେ, ସେଥିଲାଗି ଏହି ଛାତ୍ରଛାତ୍ରୀମାନଙ୍କ ପାଇଁ ଅନୁରୂପ ଖାଦ୍ୟର ହିଁ ପ୍ରୟୋଜନ ରହିଥାଏ । ସେହି ବୟସରେ ଯଦି ଗୋଟିଏ ପୁଅ ବା ଝିଅ ନିଜର ଅଧ୍ୟୟନ ପ୍ରତି ଦାୟିତ୍ୱହୀନ ହୋଇ ରହିଯାଏ, ତାହାର ଅର୍ଥ ହେଉଛି ଯେ, ତା' ଜୀବନରେ ସେପରି କୌଣସି ପ୍ରେରଣାସ୍ଫୁଲିଙ୍ଗର ସ୍ପର୍ଶ ଆସି ବାଜିନାହିଁ, - ତେଣୁ ତା'ର ପ୍ରାତ୍ୟହିକ ଜୀବନକ୍ଷେତ୍ରଟି ଏପରି ବର୍ଣ୍ଣହୀନ ହୋଇ ରହିଯାଇଛି ଏବଂ ଜଣେ ଯଥାର୍ଥ ବୟସ୍କ ସଦୃଶ ସିଏ ଆଦୌ କୌଣସିଥିରେ ଆପଣାକୁ ସଂଶ୍ଳିଷ୍ଟ କରି ରଖିବାକୁ ଶିକ୍ଷା ମଧ୍ୟ କରିନାହିଁ । (୧୨, ୨୨୫)

ନିଜ ଗୁରୁଜନମାନେ ସେମାନଙ୍କର ମର୍ଯ୍ୟାଦାବୋଧ ପ୍ରତି ଅସମ୍ମାନ ପ୍ରଦର୍ଶନ କରୁଛନ୍ତି ବୋଲି କିଞ୍ଚିତ୍ ଗନ୍ଧ ପାଇଲେ କିଶୋର ବୟସର ପିଲାମାନେ ଅଧିକାଂଶ ସମୟରେ ଅତ୍ୟନ୍ତ ରୂକ୍ଷ ତଥା କୁପିତ ଭାବରେ ଆପଣାର ପ୍ରତିକ୍ରିୟା ବ୍ୟକ୍ତ କରନ୍ତି ।

ସେତେବେଳେ ସେମାନଙ୍କର ଏହି ଅନମନୀୟତା ତଥା ଅମାନ୍ୟ କରିବାର ଆଚରଣକୁ ଭାଙ୍ଗି ଦେବାର ଉଦ୍ୟମଗୁଡ଼ିକର ପରିଣାମ ପ୍ରକୃତରେ ଅତ୍ୟନ୍ତ ଅନିଷ୍ଟକାରକ ହୋଇଥାଏ । ଏସବୁ ଉଦ୍ୟମ କଲାବେଳେ ପିଲାଟି ଅପମାନିତ ବୋଧ କରେ, ତାକୁ ଅତ୍ୟନ୍ତ ତିକ୍ତ କରିପକାଏ ଏବଂ ହୁଏତ ଏପରି ନାନା ଅବସ୍ଥାକୁ ସୃଷ୍ଟି କରେ, ଯେତେବେଳେ କି ସିଏ ଜାଣି ଜାଣି ଶୃଙ୍ଖଳାକୁ ଭାଙ୍ଗେ ଏବଂ ଅମାନିଆ ହୁଏ । ବାପାମାଆ ଏବଂ ଶିକ୍ଷକମାନେ ଯଦି ସେମାନଙ୍କର ଚରିତ୍ର ମଧ୍ୟରେ ଦେଖା ଯାଉଥିବା ଦୁର୍ବଳତାଗୁଡ଼ିକୁ ଅଙ୍ଗୁଳିନିର୍ଦ୍ଦେଶ କରି ଦେଖାଇ ଦେବାକୁ ବାରବାର ଚେଷ୍ଟା କରନ୍ତି, ତେବେ ସେମାନେ ସେଥିରେ କ୍ରୋଧ ହିଁ ପ୍ରକାଶ କରିଥାନ୍ତି । ସେମାନେ ସ୍ୱୟଂ ସେହି ବିଷୟରେ କିଛି ପରିମାଣରେ ହୁଏତ ଜାଣିଥାନ୍ତି ଏବଂ ଏପରିକି ସେଗୁଡ଼ିକୁ ଦୂର କରିବାକୁ ଚେଷ୍ଟା ମଧ୍ୟ କରୁଥାନ୍ତି । ଏହି ଦୋଷଗୁଡ଼ିକ ଉପରକୁ ସତେଅବା ଜାଣି ଶୁଣି ଦେଖାଇ ଦେବାକୁ ଇଚ୍ଛା କରାଗଲେ ଏବଂ ବିଦ୍ରୂପର ସହିତ ଆଚରଣ କରାଗଲେ କିଶୋରଚିତ୍ତଟି ଅତ୍ୟନ୍ତ ଦୁଃଖୀ ହୋଇପଡ଼େ, ବେଳେବେଳେ ଖୁବ୍ ନିରାଶ ମଧ୍ୟ ହୋଇଯାଏ । ମାତ୍ର, ଅନ୍ୟ ପକ୍ଷରେ, ଯଦି ସହନଶୀଳତା ସହିତ ଯଦି ଏହି ଦୁର୍ବଳତାଗୁଡ଼ିକର ସାମନା କରାଯାଏ, ତେବେ ସେହି କିଶୋରମାନେ ହିଁ ସମ୍ଭବତଃ ନିଜେ ଉଚିତ ପ୍ରୟାସଟିଏ କରି ନିଜର ଭିତରୁ ହିଁ ବଳ ଆହରଣ କରନ୍ତି ଏବଂ ଆପଣା ଚରିତ୍ରରୁ ଏହିସବୁ ଅକାମ୍ୟ ବ୍ୟାପାରଗୁଡ଼ିକୁ ବିଲୋପ କରିବାରେ କ୍ରିୟାଶୀଳ ହୁଅନ୍ତି । ( ୬,୧୩୨)

ଶିକ୍ଷକ ଏବଂ ପିତାମାତା ଯାହାକିଛି କହନ୍ତି, ସାନ ଛୁଆଙ୍କ ପରି କିଶୋରମାନେ କୌଣସି ପ୍ରଶ୍ନ ନକରି ସେଗୁଡ଼ିକୁ କଦାପି ଗ୍ରହଣ କରି ନିଅନ୍ତି ନାହିଁ । ଯାହାସବୁ ଶୁଣନ୍ତି, ସେଗୁଡ଼ିକୁ ଆଦୌ ମାନି ନିଅନ୍ତିନାହିଁ । ବରଂ, ସେଗୁଡ଼ିକର ଖଣ୍ଡନ କରିବା ନିମନ୍ତେ ଜାଣିଜାଣି ଯୁକ୍ତି ଖୋଜୁଥିଲା ପରି ବୋଧ ହୁଅନ୍ତି । ... ଜଣେ କିଶୋରର ଜିଜ୍ଞାସା ତଥା ଜ୍ଞାନପିପାସାକୁ ଆମେ କେବଳ ସନ୍ତୁଷ୍ଟ କରିବାନାହିଁ, ମାତ୍ର ପ୍ରୋତ୍ସାହିତ ବି କରିବା, ସମ୍ଭବତଃ ତାହାରିଦ୍ୱାରା ହିଁ ଆମେ ଜଣେ କିଶୋରର ସମୀକ୍ଷାପ୍ରଧାନ ଦୃଷ୍ଟିଟିକୁ ସକାରାତ୍ମକ ଭାବରେ କ୍ରମବିକଶିତ କରି ଆଣିପାରିବା....। ( ୬,୧୧୯-୨୦)

କେତେ ଶିକ୍ଷକ ଏପରି କହିଥାନ୍ତି ଯେ କିଶୋରବୟସ୍କ ପୁଅ ଓ ଝିଅମାନେ

ନିୟମତଃ ଆପଣାର ଦୋଷଗୁଡ଼ିକୁ ମୋଟେ ସ୍ୱୀକାର କରନ୍ତିନାହିଁ କିମ୍ବା ନିଜ ଭୁଲଗୁଡ଼ିକୁ ମଧ୍ୟ ସଂଶୋଧନ କରନ୍ତି ନାହିଁ । ମାତ୍ର, ଏପରି ଧାରଣାଟା ଖୁବ୍ ଉପରଠାଉରିଆ ବୋଲି ମୁଁ ଭାବୁଛି । ସେହିସବୁ କ୍ଷେତ୍ରରେ ଛାତ୍ର ଓ ଛାତ୍ରୀମାନେ କେବଳ ଏତିକି ଦର୍ଶାଇ ଦେବାକୁ ଇଚ୍ଛା କରୁଥାନ୍ତି ଯେ, ସେମାନେ କେବଳ ନିଜର ନୀତିଗୁଡ଼ିକରେ ହିଁ ଅଟଳ ରହିବାକୁ ଚେଷ୍ଟା କରୁଛନ୍ତି । ଏବଂ, ଏଣେ ପ୍ରକୃତ କ୍ଷେତ୍ରରେ ସେମାନଙ୍କର ମନଟି ମଧ୍ୟ ନିର୍ଭୁଲ ଉତ୍ତରଗୁଡ଼ିକୁ ପାଇବାଲାଗି ଖୁବ୍ ଚେଷ୍ଟା କରୁଛି । ଯତ୍ନର ସହିତ କରା ଯାଉଥିବା ପର୍ଯ୍ୟବେକ୍ଷଣରୁ ସୂଚନା ମିଳିଛି ଯେ, କିଶୋରମାନେ ମଧ୍ୟ ନିଜ ଭୁଲ୍‌ଗୁଡ଼ିକୁ ଗମ୍ଭୀର ଭାବରେ ଅନ୍ତର ଭିତରକୁ ନେଇଛନ୍ତି ଏବଂ, ଏହି ବୟସରେ ନିଜ ମର୍ଯ୍ୟାଦା ବିଷୟରେ ସେମାନଙ୍କର ଏକ ବୃହତ୍ ସଚେତନତା ରହିଥିବାରୁ, ସେମାନଙ୍କର ନିଜ ମତଗୁଡ଼ିକ ସେମାନେ ଯଥାର୍ଥ ଓ ସୁଚିନ୍ତିତ ଭାବରେ ଅବଶ୍ୟ ଟୀକା କରି ପାରନ୍ତୁ ବୋଲି ସେମାନଙ୍କର ଠାରୁ ଦାବୀ କରିବା ଆଦୌ ଉଚିତ ହେବନାହିଁ ।

ନିଜ ମାନସିକ କ୍ରିୟାଶୀଳତାର ମାଧମରେ ଜଣେ କିଶୋର ବେଳେ ଯେ ସିଏ ନିଜେ କ'ଣସବୁ ଚିନ୍ତା କରୁଛି ଓ କେଉଁଭଳି ମତଗୁଡ଼ିକୁ ତିଆରି କରି ରଖୁଛି, ସେଗୁଡ଼ିକୁ ଦର୍ଶାଇ ଦେବାପାଇଁ ଚେଷ୍ଟା କରେ ତା' ନୁହେଁ, ମାତ୍ର, - ଏଇଟି ପ୍ରକୃତରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ, ସିଏ ନିଜକୁ ମଧ୍ୟ ତା ମତଗୁଡ଼ିକର ଯଥାର୍ଥତା ବିଷୟରେ ପ୍ରତ୍ୟୟଟିଏ ଦେବାର ପ୍ରୟାସ କରୁଥାଏ । .... ଏଥିରୁ ଜଣାଯିବ ସିଏ ନିଜେ ମଧ୍ୟ ଏହି ବୟସରେ ନିଜର କଥା ଏବଂ କାର୍ଯ୍ୟ ମଧ୍ୟରେ ଏକ ପୂର୍ଣ୍ଣ ସାମଞ୍ଜସତା ରହିଛି ବୋଲି ପ୍ରମାଣ ପାଇବାର ଏକ ପ୍ରୟୋଜନ ରହିଛି ବୋଲି ହୃଦୟଙ୍ଗମ କରୁଥାଏ (ଏବଂ, ସେହି କାରଣରୁ ଅନେକ ସମୟରେ ନାନା ଭୁଲ୍ କରିବାକୁ ମଧ୍ୟ ପ୍ରବୃତ୍ତ ହୋଇଥାଏ), ତଥା ସିଧା ସିଧା ନାନା ତାଖ ଯୁକ୍ତିକୁ ଆଣି ବାଢ଼ି ଦେଉଥାଏ । ( ୬,୧୨୩)

## ଏହି ପୃଥିବୀରେ ସ୍ୱୟଂ ମନୁଷ୍ୟ ଅପେକ୍ଷା ଅଧିକ ଆଗ୍ରହୋଦ୍ଦୀପକ ଆଦୌ କିଛି ନାହିଁ ।

ସତୀର୍ଥ ଅନ୍ୟ ଶିକ୍ଷକମାନଙ୍କ ସହିତ ଏକ ଆଲୋଚନାରେ ଶ୍ରୀଯୁକ୍ତ ମାକାରେଙ୍କୋ ଏକଦା କହିଥିଲେ ଯେ, ସବୁ ଯୁଗରେ ତଥା ସବୁ ଜାତିରେ

ଶିକ୍ଷକମାନେ ସବୁବେଳେ ଭଲ ପାଇବାକୁ ଘୃଣା ହିଁ କରିଛନ୍ତି । ତାଙ୍କର ସେହି ବିନୋଦପୂର୍ଣ୍ଣ ମନ୍ତବ୍ୟଟିରେ ତଥାପି କଣାଏ ସତ୍ୟ ଅବଶ୍ୟ ରହିଛି : ବିଦ୍ୟାଳୟର ଉପର ଶ୍ରେଣୀଗୁଡ଼ିକରେ ପଢୁଥିବା ଛାତ୍ରଛାତ୍ରୀମାନେ ଯେ ଇତିମଧ୍ୟରେ ପୁରୁଷ ଓ ନାରୀ ହୋଇ ସାରିଲେଣି ଏବଂ ପରସ୍ପର ପ୍ରତି ଏକ ଯୌନାକର୍ଷଣ ଯେ ସେମାନଙ୍କ ଜୀବନରେ ଗୋଟିଏ ସ୍ୱାଭାବିକ ଅଂଶରେ ପରିଣତ ହୋଇଗଲାଣି, କେତେକ ଶିକ୍ଷକ ସେହି କଥାଟିର ତାତ୍ପର୍ଯ୍ୟକୁ ଆଦୌ ବୁଝି ପାରନ୍ତିନାହିଁ । ସେମାନେ ଏହି କଥାଟି ଉପରେ ଦୃଷ୍ଟି ଦେଇ ନଥାନ୍ତି ଯେ, କିଶୋର ବୟସର ଏହି ନୂତନମାନେ ଯେଉଁସବୁ ଯୌନଗତ ଆକର୍ଷଣ ଅନୁଭବ କରନ୍ତି, ସେଗୁଡ଼ିକ ଦୁଇଜଣ ବୟସ୍କ ଅନୁଭବ କରୁଥିବା ଯୌନ-ଆକର୍ଷଣ ପରି ସେହି ଗୋଟିଏ ରଙ୍ଗ ଓ ଧରଣର ବି ହୋଇନଥାଏ । ଏହି ତରୁଣ ପୁଅଝିଅ ମାନଙ୍କର ଉକ୍ତ ସମ୍ବନ୍ଧଗୁଡ଼ିକର କ୍ଷେତ୍ରରେ ଆଦର୍ଶଗତ ଶୁଦ୍ଧ ଓ ଉଦାତ୍ତ ଆବେଗ ଓ ପ୍ରେରଣାମାନ ଅବଶ୍ୟ ରହିଥାଏ । ... ପାରସ୍ପରିକ ଆକର୍ଷଣର ବାସ୍ତବ ଭୂମିରୂପେ ଯୌନ ବାସନାଟିଏ ରହିଥାଏ ସତ, ତଥାପି ସେବିଷୟରେ ଏହି ପୁଅ ଓ ଝିଅମାନଙ୍କୁ କହି ଆସି ସିଧା ସିଧା କିଛି କହିଥିଲେ ତଦ୍ୱାରା ସେମାନେ ଖୁବ୍ ଆଘାତ ହିଁ ପାଆନ୍ତି । (୧୨,୨୩୩)

ମୋ' ମତରେ, ଛାତ୍ରଛାତ୍ରୀ ମାନଙ୍କ ଭିତରେ ରହିଥିବା ପ୍ରେମସମ୍ପର୍କ ଗୁଡ଼ିକ ବିଷୟରେ ଅତ୍ୟନ୍ତ ଅସାବଧାନ ଓ ଅନାବଶ୍ୟକ ଭାବରେ କଥୋପକଥନକୁ ପ୍ରଶ୍ରୟ ଦେବାଟା ସମ୍ପୂର୍ଣ୍ଣ ଭାବରେ ବନ୍ଦ ହୋଇଯିବା ଉଚିତ ହେବ । ସ୍କୁଲରେ କେଉଁ ପିଲା କାହାର ପ୍ରେମରେ ପଡ଼ିଛି, ସେବିଷୟ ଆଦୌ କୌଣସି ଚର୍ଚ୍ଚା ହେବା ହିଁ ଅନୁଚିତ । ... ଏହି ଭଲ ପାଇବା ନାମକ ବ୍ୟାପାରଟି ତ ଜୀବନଯାକ ଏପରି ଗୋଟିଏ ବସ୍ତୁ ହୋଇ ରହିବ, ଯାହାକୁ ଜଣେ ବ୍ୟକ୍ତି ଏକ ପବିତ୍ର ଦ୍ରବ୍ୟ ପରି ଦେଖୁଥିବ, - ଯାହାକୁ ସେ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ମୂଲ୍ୟବାନ୍ ବୋଲି ଅନୁଭବ କରୁଥିବ । (୧୨,୨୨୩)

## ଆତ୍ମ-ଶିକ୍ଷାର କ୍ଷେତ୍ରରେ ନିର୍ଦ୍ଦେଶନା

ଶିକ୍ଷାଲାଭ କରିଥିବାର ସୁଫଳମାନ ଠିକ୍ କେଉଁ ଜାଗାରେ ସବୁଠାରୁ ଅଧିକ ସ୍ପଷ୍ଟ ଭାବରେ ପରିଦୃଷ୍ଟ ହୋଇଥାଏ, ଏବେ ବହୁ ବର୍ଷ ଧରି ମୁଁ ଆପଣାକୁ ସେହି କଥାଟିକୁ ହିଁ ପଚାରି ଆସିଛି । ମୋ'ର ପ୍ରଚେଷ୍ଟାଗୁଡ଼ିକ ଫଳବତୀ ହୋଇଛନ୍ତି ବୋଲି ମୁଁ ପ୍ରକୃତରେ କେଉଁ କ୍ଷେତ୍ରରେ ପୂର୍ଣ୍ଣ ନ୍ୟାୟର ସହିତ କହି ପାରିବି ?

ଅନୁଭୂତି ହିଁ କହିଛି ଯେ, ଜଣେ ବ୍ୟକ୍ତି ନିଜେ ନିଜେ ଚିନ୍ତା କରିପାରୁଛି ଓ ନିଜ ଭିତରେ ରହିଥିବା ଭଲ ତଥା ମନ୍ଦର ହିସାବଟିଏ କରିପାରୁଛି, ତାହାକୁ ହିଁ ପ୍ରାପ୍ତ ଯାବତୀୟ ଶିକ୍ଷାର ମୂର୍ତ୍ତ ଫଳ ବୋଲି କୁହାଯାଇ ପାରିବ । ଜଣେ ବ୍ୟକ୍ତି ଯଦି ଯଥାର୍ଥ ଆତ୍ମ-ଅବଲୋକନ କରିବାର ସମର୍ଥ ହୋଇ ନଥିବ ଓ ନିଜ ଜୀବନ ବିଷୟରେ ନିଜର ଭାବନାକୁ ଖଟାଇ ପାରୁନଥିବ, ତେବେ ଯେଉଁ କାହାର ଶିକ୍ଷାପଦ୍ଧତିକୁ ପ୍ରୟୋଗ କରି ତୁମେ ଯାହାକିଛି କରିଥାଅ ପଛକେ, ସେହି ସବୁକିଛି କେବଳ ନିରର୍ଥକ ହୋଇ ହିଁ ରହିବ । (୨୯)

ଜଣେ ବ୍ୟକ୍ତିର ବିବେକକୁ ଜାଗ୍ରତ କରି ଆଣିବାର ମହତ୍ତ୍ୱ ତଥା ଅସୁବିଧାଗୁଡ଼ିକ ବିଷୟରେ ଶ୍ରୀ ମାକାରେଙ୍କୋ ଆମର ଦୃଷ୍ଟି ଆକର୍ଷଣ କରିଥିଲେ : " ଆଉଜଣେ ମନୁଷ୍ୟ ମୋ" ଆଗରେ ଉଚିତ ଭାବରେ ବ୍ୟବହାର କରିବ, ସମୂହର ଅନ୍ୟମାନଙ୍କର ଉପସ୍ଥିତିରେ ମଧ୍ୟ ସେହିପରି କରି ପାରୁଥିବ, - ତାକୁ ଏହି କଥାଟି ବିଷୟରେ ଶିକ୍ଷା ଦେବା ପ୍ରକୃତରେ ଖୁବ୍ ସହଜ । କିନ୍ତୁ, ଯେତେବେଳେ ଶୁଣିବାକୁ, ଦେଖିବାକୁ ତା' ପାଖରେ କେହି ନଥିବେ, ସିଏ ଏପରି କରୁଛି କି ସେପରି କରୁଛି ବୋଲି କେହି ଜାଣିବାର କୌଣସି ସମ୍ଭାବନା ନାହିଁ, ସେତେବେଳେ ମଧ୍ୟ ସିଏ ଠିକ୍ କାର୍ଯ୍ୟଟିକୁ ଅବଶ୍ୟ କରିବ ବୋଲି ତାକୁ ଶିକ୍ଷା ଦେବା ପ୍ରକୃତରେ ଖୁବ୍ କଷ୍ଟ । .... (୮,୭୧)

ଅନ୍ୟ ମନୁଷ୍ୟମାନଙ୍କୁ ଅଧିକ ଗଭୀର ଭାବରେ ବୁଝିବା ତଥା ମନୁଷ୍ୟର ଜୀବନ ସହିତ ଯାବତୀୟ ସବୁକିଛିକୁ ଠିକ୍ ସେହିପରି ନିବିଡ଼ ଭାବରେ ଜାଣିବାର ବାଟଟି ମିଳିଯିବା ପରେ ବ୍ୟକ୍ତି ନିଜକୁ ଶିକ୍ଷିତ କରାଇ ଆଣିବାରେ ଅଧିକରୁ ଅଧିକ ପରିମାଣରେ ସମର୍ଥ ହୋଇଥାଏ । (୧୪,୪)

ମୁଁ ଅତ୍ୟନ୍ତ ଦୃଢ଼ତାର ସହିତ ବିଶ୍ୱାସ କରୁଛି ଯେ, ଯେଉଁ ଶିକ୍ଷା ଆତ୍ମଶିକ୍ଷାକୁ ଉନ୍ମେଷିତ ଏବଂ ଉତ୍ସାହିତ କରି ଆଣିଥାଏ, ତାହାହିଁ ଯଥାର୍ଥ ଶିକ୍ଷା । ପିଲାମାନଙ୍କୁ ରବିବାର ଦିନ ବାହାରକୁ ବୁଲାଇନେବା ତୁଳନାରେ ସେମାନଙ୍କୁ ଆତ୍ମଶିକ୍ଷାର ଶିକ୍ଷା ଦେବା ହେଉଛି ଅନେକ ଅନେକ ଗୁଣରେ ଏତେ କଷ୍ଟକର ଯେ ତାହାକୁ ମାପି କରି କଦାପି କୁହାଯାଇ ପାରିବନାହିଁ । (୩୨)

# ଉତ୍ସ ପୁସ୍ତକମାଳା

ଭାସିଲି ସୁଖୋମ୍ଲିନସ୍କିଙ୍କର ନିମ୍ନଲିଖିତ ରଚନାଗୁଡ଼ିକରୁ ଏହି ପୁସ୍ତକର ଅଂଶଗୁଡ଼ିକ ଉଦ୍ଧୃତ କରି ଅଣାଯାଇଛି :


୧ *Fostering the Collective Spirit among Schoolchildren*, RSFSR Academy of Pedagogical Sciences, Moscow, 1956.

2 *The Teaching Body in the Secondary School*, Uchpedgiz Publishers, Moscow, 1958.

3 Fostering a Communist Attitude to Work, RSFSR Academy of Pedagogical Sciences, Moscow, 1959.

4 Fostering Soviet Patriotism among Schoolchildren, Uchpedgiz Publisher, Moscow, 1959

5 *Have Faith in Man*, Molodaya Gvardiya Publishers, Moscow, 1960.

6 *The Inner World of the Schoolchild*, Uchpedgiz Publishers, Moscow, 1960.

7 *Nurturing Communist Convictions in the Younger Generation*, RSFSR Pedagogical Sciences, Moscow, 1963.

8 *The Moral Ideal of the Younger Generation*, RSFSR Academy of Pedagogical Sciences, Moscow, 1963.

9 *Moulding of Personality in Soviet Schools*, Radyanska Shkola Publishers, Kiev, 1965.

**10 *I Give My Heart to Children*, Radyanska Shkola Publishers, Kiev, 1969.

11 *The Pavlysh Secondary School*, Prosveshcheniye Publishers, Moscow, 1969.

12 *The Birth of a Citizen*, Molodaya Gvardiya Publishers, Moscow, 1971.

13 "Dialogue with a Young Headmaster", in the coumal *Narodnoye Obrazovaniye*, 1965-66.

14 "Studies in Communist Education" in the journal *Narodnoye Obrazovaniye*, 1967.

15 "Reward for Goodness", *Pravda*, February 20, 1967.

16 "Education without Punishment", *Pravda*, March 25, 1968.

17 "The Heart's Sacred Treasure", *Pravda*, October 8, 1968.

18 " A Word to Fathers", *Pravda*, January 5, 1970.

19 "A Word to Pupils", *Pravda*, September 1, 1970.

20 "Taking a Look at Ourselves", *Komsomolskaya Pravada*, December 26,1969.

21 "Work of the Heart", *Komsomolskaya Pravda*, July 4,1971.

22 "ABC of the Heart", *Komsomolskaya Pravda*, July 27,1971.

23 "Allowing for the Hypothetical Pupil", *Literaturnaya Gazeta*, January 27,1966.

24 "Man Ahoy!", *Literaturnaya Gazeta*, September 27, 1968.

25 "To My Young Friend", *Literaturnaya Gazeta*, March 27,1967.

26 "Pupils at the Bottom of the Class", *Literaturnaya Gazeta*, August 19, 1970.

27 * "Life-Giving Water", *Literaturnaya Gazeta*, October 28,1970.

28 "From Teacher Through Collective to Individual", *Literaturnaya Gazeta*, October 28, 1970.

29 "My Teacher's Creed", *Yunost* No. 9, 1968.

30 "Family of the Stanuchest", *Yunost* No. 7, 1969; No. 1, 1970.

31 "Accord of Three Principles", *Journalist* No.8, 1970.

32 "Education and Self-Education", *Sovietskaya Pedagogika* No. 12, 1969.

33 "Behaviour", *Sovietskaya Pedagogika* No. 11, 1970.

34 "A Letter on the Ethics of Teaching", *Narodnoye Obrazovaniye* No. 11, 1970.

35. G. Medynsky, "A Brave Heart", *Literaturnaya Gazeta*, June 30, 1971.

** ଏହି ତାଲିକାର ୧୦ ନମ୍ବର ବହିଟି I Give My Heart to Childrenର ଓଡ଼ିଆ ଅନୁବାଦ "ଶିକ୍ଷାସନ୍ଧାନ" ଦ୍ୱାରା ପୂର୍ବରୁ ପ୍ରକାଶିତ ହୋଇଛି । ତେଣୁ, ସେଥିରୁ ଏହି ପୁସ୍ତକଟିରେ ପ୍ରଦତ୍ତ ରଚନାଗୁଡ଼ିକୁ ଆଉ ଅନ୍ତର୍ଭୁକ୍ତ କରା ଯାଇନାହିଁ ।

***

